# ଅଟଳନାମା

(ଅଟଳବିହାରୀ ବାଜପେୟୀ: ଏକ ଅନନ୍ୟ ଜୀବନାଲେଖ୍ୟ)

ଭଗବାନ ନାୟକ ବର୍ମା

ଭାରତୀୟ ସାହିତ୍ୟ କେନ୍ଦ୍ର

# ଅଟଳନାମା

ରଚନା

ଭଗବାନ ନାୟକବର୍ମା

ପ୍ରକାଶକ

ଭାରତୀୟ ସାହିତ୍ୟ କେନ୍ଦ୍ର,

ଏଲ୍ / ୩୮୨, ବରମୁଣ୍ଡା ହାଉସିଂ କଲୋନୀ,

ଭୁବନେଶ୍ୱର - ୭୫୧ ୦୦୩

ପ୍ରଥମ ସଂସ୍କରଣ

ଅଗଷ୍ଟ ୧୯୯୮

ମୂଲ୍ୟ

ଷାଠିଏ ଟଙ୍କା

ମୁଦ୍ରଣ

ସାହିତ୍ୟସିନ୍ଧୁ, ଭୁବନେଶ୍ୱର - ୩



---

ATALNAMA (Odia)
by Bhagaban Nayakverma

Publisher : Bharatiya Sahitya Kendra,
L / 382, Baramunda Housing Colony,
Bhubaneswar - 751 003

First Edition : August 1998

Price : Rs. 60.00

# ହେ ମହାନାୟକ !

ରାଷ୍ଟ୍ରବାଦର ହେ ମହାନାୟକ, ହେ କବି, ହେ ନେତା ପ୍ରିୟ !
ନବ ନିର୍ମାତା ହେ ବିଜୟୀ ବୀର ! ଅଭିନନ୍ଦନ ନିଅ ।
ଜନଗଣମନ ଅଧିନାୟକର ଶୁଭାଶିର୍ବାଦ ନେଇ
ଭାରତଭାଗ୍ୟବିଧାତାର ଶତ ସୁମନାସ ଶିରେ ବହି ।
ମାତୃଭୂମିର କଲ୍ୟାଣ, କୋଟି ଜନତାର ନେଇ ସ୍ନେହ-
ଉଭା ଆଜି ତୁମେ ଆଶା-ଆଲୋକର ନୂତନ ବାର୍ତ୍ତାବହ ।
ନବଯୁଗ ଆଉ ନୂତନ ଭାରତ ଗଢ଼ିବାକୁ ନେଇ ବ୍ରତ
ଆଗାମୀ ଶତକ ଦ୍ୱାରଦେଶେ ତୁମେ ହୋଇଅଛ ଉପଗତ ।
କୋଟି କଣ୍ଠରେ ନିନାଦିତ ତେଣୁ ଆଜି ତୁମ ଜୟଗାନ
ଦିଗେ ଦିଗେ ଶୁଭେ ପ୍ରତିଧ୍ୱନି ତାର, ଆକାଶ କମ୍ପମାନ ।
ସବୁଠି ତୁମରି ସ୍ୱାଗତ-ପର୍ବ, ମହା ଉତ୍ସବ ଆଜି,
ଅଂଧାରଘେରା ଷଡ଼ଯନ୍ତ୍ରର ଦୁର୍ଗ ପଡ଼ିଛି ଭାଜି ।
ସଂଗ୍ରାମ ସିନା ସରିନାହିଁ, ତେବେ ଆସିଛି ପ୍ରଥମ ଜୟ
ଯୁଦ୍ଧ ଭୂମିରେ ମିଳିଛି ମିତ୍ର-ଶକ୍ତିର ପରିଚୟ ।
ତୁଟିଛି ତନ୍ଦ୍ରା, ହଟିଛି ତିମିର, ଉଠିଛି ତପନ ନୂଆ
ଆସିଛି ସକାଳ, ହସିଛି କମଳ, ଦିଶିଛି ନୂତନ ରାହା ।
ଉଡ଼ାଅ ପତାକା, ବଜାଅ ଶଂଖ, ଜାଳିଦିଅ ଦୀପାବଳି
ଭାରତମାତାର ବନ୍ଦନା-ଗୀତି ଗାଅ ହେ କଣ୍ଠ ମେଳି ।
ଲାଲ୍‌କିଲ୍ଲାର ହେ ନବନାୟକ, ହେ ବିଜୟୀ ସେନାପତି !
ଜାତୀୟ ଜୀବନ-ନନ୍ଦିଘୋଷର ଦୁର୍ବାର ମହାରଥୀ !
ଏ ଯୁଗର ମହାଭାରତ ସମରେ ବୀର ଅର୍ଜୁନ ତୁମେ,
ବିଶ୍ୱରୂପର ଦ୍ରଷ୍ଟା-ପୁରୁଷ ରାଜନୀତି-ରଣଭୂମେ ।
ଏ ମହାଜାତିର ପ୍ରିୟତମ ନେତା, କୋଟି ହୃଦୟର ରାଜା
ଅଟଳ ତୁମର କଥା ଓ କରଣୀ, ଦୁର୍ଦ୍ଦମ ମହାତେଜା !
ନାମରେ ଅଟଳ, କାମରେ ଅଟଳ, ଅଟଳ ସ୍ୱଦେଶ-ପ୍ରେମେ,
ନୀତିରେ ଅଟଳ, ପ୍ରୀତିରେ ଅଟଳ, ସ୍ଥିତିରେ ଅଟଳ ତୁମେ ।
ଏକଇ ଆଧାରେ ସନ୍ନ୍ୟାସୀ ତୁମେ, ମହାସଂଗ୍ରାମୀ ପୁଣି
ଭାରତମାତାର ବୀର ସନ୍ତାନ, ଜନତା-ମଉଡ଼ମଣି ।

'ଅଟଳ' ତୁମର ବିଚାର, କିନ୍ତୁ ଭାବରେ 'ବିହାରୀ' ତୁମେ,
ସେଥିଲାଗି ପରା ବଂଧା ପଡ଼ିଛ କୋଟି ହୃଦୟର ପ୍ରେମେ ।
କବିତା-କୁଂଜେ ଆତ୍ମା ତୁମର କରୁଥାଏ ବିଚରଣ
ରାଜନୀତି-ରଣେ ବ୍ୟାପୃତ ଥାଏ ଦେହ, ମନ ଆଉ ପ୍ରାଣ ।
ଯୁଗ-ଯଜ୍ଞର ଋତ୍ୱିକ ତୁମେ ସ୍ଥିତଧୀ କର୍ମଯୋଗୀ
ସିଂହାସନ ବା ରଣଭୂମି ସବୁ ସମାନ ତ ତୁମ ଲାଗି ।
କ୍ଷମତାର ଗାଦୀ ପାଇବା ଅଥବା ହରାଇବା ଏକା କଥା,
ସୁଖ ଲାଗି ନାହିଁ ବ୍ୟାକୁଳତା ଅବା ଦୁଃଖରେ ନାହିଁ ବ୍ୟଥା ।
ସାରା ଜୀବନକୁ ଲଗାଇଛ ବାଜି ଦେଶ-ମାତୃକା ଲାଗି
ମାତୃଭୂମିର ଦୁଃଖ ମୋଚନେ ରହିଛ ସତତ ଜାଗି ।
ରାଜସ୍ଥାନର ଶକ୍ତିପୀଠରୁ ଦେଇ ଅଛ ପରିଚର୍ଯ୍ୟ
ମହାଭାରତୀୟ ମହାଶକ୍ତିର, ଦୁର୍ଦ୍ଦମ-ଦୁର୍ଜ୍ଜୟ !
ଅନନ୍ୟ ତୁମ ଜୀବନ-ସାଧନା, ସାର୍ଥକ ତୁମ ନାମ
ଧନ୍ୟ ତୁମର କବିତ୍ୱ ଆଉ ବୀରତ୍ୱ ଅନୁପମ ।
ତୁମେ ଏ ମାଟିର ପ୍ରିୟ ବିଂଧାଣୀ, ଏ ମାଟି ତୁମର ପ୍ରିୟ
ଜୟ ହେଉ ତୁମ ସାଧନାର, ପୁଣି ଏ ମାଟିର ହେଉ ଜୟ ।
ଅଠାନବେ ମଇ ଏଗାର-ତେରରେ ରଚିଲ ଯେ ଇତିହାସ
ସାରା ବିଶ୍ୱରେ ଦେଖାଇଲ ଯେଉଁ ଅନନ୍ୟ ପଉରୁଷ
ଏ ମହାଜାତିର ମହାଶକ୍ତିର ଦେଲ ଯେଉଁ ପରିଚୟ
ସେଥିଲାଗି କୋଟି କଣ୍ଠରେ ଆଜି ନିନାଦିତ ତୁମ ଜୟ ।
ଆଗାମୀ ଶତକ ଡାକେ ହାତ ଠାରି, ଡ଼ାକେ ସାଧନାର ପଥ
ଚାଲ ହେ ଆଗେଇ ବୀର ସେନାପତି ସଜାଇ ବିଜୟ-ରଥ ।
ତୁମ ପଛେ ଅଛି ଦେଶ-ଜନନୀର ଅମୃତ ବରଦାନ
କୋଟି ଜନତାର ସୁମନାସଭରା ଦୁର୍ବାର ଅଭିଯାନ ।
ଅଭିନଂଦନ ନିଅ ମହାରଥୀ, ଅଭିନଂଦନ ନିଅ
ଅନୁଗାମୀ ଯେତେ ସେନା-ସାମନ୍ତ, ସାଥୀ ଓ ସାରଥୀ ସହ ।

(ରଚନା କାଳ: ତା ୨୮/୩/୯୮, ଶନିବାର, ରାତି ୯।୧୦)

# ନ ଭୀତୋ ମରଣାଦସ୍ମି...

''ନ ଭୀତୋ ମରଣାଦସ୍ମି କେବଳମ୍ ଦୂଷିତୋ ଯଶଃ''

''ଭଗବାନ ଶ୍ରୀରାମ କହିଥିଲେ 'ମୁଁ ମୃତ୍ୟୁକୁ ଭୟ କରୁନାହିଁ, ଭୟ କରୁଛି କେବଳ ଦୁର୍ନାମ ବା· ଲୋକାପବାଦକୁ ।'

ଅଧ୍ୟକ୍ଷ ମହୋଦୟ !

ଗତ ଚାଳିଶ ବର୍ଷବ୍ୟାପୀ ମୋର ରାଜନୀତିକ ଜୀବନ ଏକ ଖୋଲା ବହି । ଆଜି ମୁଁ ଆପଣଙ୍କୁ ଏକ ଚେତାବନୀ ଦେବାକୁ ଚାହୁଁଛି । ଦେଶର ଅବସ୍ଥା କଣ ହେବ ? ଆମେ ତ ବିରୋଧୀ ପକ୍ଷରେ ବସିବା ଲାଗି ସର୍ବଦା ପ୍ରସ୍ତୁତ ଅଛୁଁ ।

ଅଧ୍ୟକ୍ଷ ମହୋଦୟ ! ଯେତେବେଳେ ମୁଁ ରାଜନୀତିକୁ ଆସିଲି, ମୁଁ କେବେ ବି ଭାବି ନଥିଲି ଯେ ମୁଁ ଜଣେ ଏମ. ପି. ହେବି । ମୁଁ ଥିଲି ଜଣେ ପତ୍ରକାର (ସାଂବାଦିକ) । ଏବେ ଯେପ୍ରକାର ରାଜନୀତି ଚାଲିଛି, ତାହା ମୋତେ ଭଲ ଲାଗୁନାହିଁ । ମୁଁ ତାକୁ ଛାଡ଼ି ଦେବାକୁ ଚାହୁଁଛି; କିନ୍ତୁ ରାଜନୀତି ମୋତେ ଛାଡୁନାହିଁ । ମୁଁ ବିରୋଧୀ ଦଳର ନେତା ଥିଲି, ଏବେ ପ୍ରଧାନମନ୍ତ୍ରୀ ହୋଇଛି । ଆଉ ଅଳ୍ପ ସମୟ ପରେ ପ୍ରଧାନମନ୍ତ୍ରୀ ପଦରେ ବି ରହିବି ନାହିଁ । ପ୍ରଧାନମନ୍ତ୍ରୀ ହେବା ସମୟରେ ମୋର ହୃଦୟ ଆନନ୍ଦରେ ଉଛୁଳି ଉଠି ନଥିଲା । ଏବେ ମୁଁ ଯେତେବେଳେ ସବୁ କିଛି ଛାଡ଼ି ଛୁଡ଼ି ଦେଇ ଚାଲିଯିବି, ସେତେବେଳେ ମଧ ମୋ ମନରେ କୌଣସି ପ୍ରକାର ଖେଦ କି ଗ୍ଳାନି ରହିବ ନାହିଁ ।

ଆପଣଙ୍କ ପ୍ରତି ଆମର ସମସ୍ତ ଶୁଭ କାମନା ରହିଛି । ଆମେ ଦେଶ ସେବା କାର୍ଯ୍ୟରେ ବ୍ୟାପୃତ ଅଛୁଁ ଓ ରହିବୁଁ । ଆମେ ଆଜି ସଂଖ୍ୟାବଳ ସମକ୍ଷରେ ନତି ସ୍ୱୀକାର କରୁଛୁଁ ଏବଂ ଆପଣଙ୍କୁ କଥା ଦେଉଛୁଁ ଯେ ଯେଉଁ କାର୍ଯ୍ୟ ଆମେ ହାତକୁ ନେଇଛୁଁ, ଯେପର୍ଯ୍ୟନ୍ତ ତାକୁ ସଂପୂର୍ଣ୍ଣ ନ କରିଛୁଁ ସେପର୍ଯ୍ୟନ୍ତ ଆମେ ବିଶ୍ରାମ ନେବୁ ନାହିଁ କି ଆରାମରେ ବସିଯିବୁଁ ନାହିଁ । ଅଧ୍ୟକ୍ଷ ମହୋଦୟ, ମୁଁ ବର୍ତ୍ତମାନ ନିଜର ତ୍ୟାଗପତ୍ର ରାଷ୍ଟ୍ରପତି ମହୋଦୟଙ୍କୁ ଦେବାପାଇଁ ଚାଲିଲି ।''

— ଅଟଳ ବିହାରୀ ବାଜପେୟୀ

(ଲୋକସଭାର ୨୮.୫.୯୬ ତାରିଖର କାର୍ଯ୍ୟ ବିବରଣୀରୁ ଉଦ୍ଧୃତ)

## ॥ ପ୍ରସ୍ତାବନା ॥

ଭାରତୀୟ ରାଜନୀତି ବର୍ତ୍ତମାନ ଏକ ନୂଆ ଯୁଗର ଦ୍ୱାରଦେଶରେ ଉପନୀତ । ଚଳିତ ବିଂଶ ଶତାବ୍ଦୀ ସରି ସରି ଆସୁଛି; ଏକବିଂଶ ଶତାବ୍ଦୀ ଆଗତପ୍ରାୟ । ଆଉ ମାତ୍ର ଦୁଇ ବର୍ଷ ପରେ ଆମେ ସମସ୍ତେ ଏକ ନୂତନ ଶତାବ୍ଦୀର ଜୟଯାତ୍ରାରେ ସାମିଲ ହେବା । ବର୍ତ୍ତମାନ ଜୀବନର ସବୁ କ୍ଷେତ୍ରରେ ଚାଲିଛି ତାର ପ୍ରସ୍ତୁତି; ଏକବିଂଶ ଶତାବ୍ଦୀର ସ୍ୱାଗତ-ପର୍ବ । ରାଷ୍ଟ୍ରନୀତି, ସମାଜନୀତି, ଅର୍ଥନୀତି, ଶିକ୍ଷା, ଜ୍ଞାନ-ବିଜ୍ଞାନ, କଳା-ସାହିତ୍ୟ- ସଂସ୍କୃତି ଓ ଆଧାତ୍ମିକତା ଇତ୍ୟାଦି ଜୀବନର ସବୁ ବିଭାବରେ ବର୍ତ୍ତମାନ ସମଗ୍ର ବିଶ୍ୱବ୍ୟାପୀ ଯେଉଁ ପରିବର୍ତ୍ତନର ସଂକେତ ମିଳୁଛି, ରାଜନୀତି ବା ସେଥିରୁ ବାଦ୍ ଯା'ନ୍ତା କାହିଁକି ? ବର୍ତ୍ତମାନର ଅବକ୍ଷୟମୁଖୀ ମୂଲ୍ୟବୋଧର ଶେଷ ପାହାଚରେ ଉପନୀତ, ଘୋର ମିଥ୍ୟାଚାର, ସ୍ୱାର୍ଥପରତା ଓ ଛଳନା ଦ୍ୱାରା କଳୁଷିତ ଆମର ଭାରତୀୟ ରାଜନୀତିରେ ମଧ୍ୟ ଯେ ଉପଯୁକ୍ତ ସୁଧାର ବା ସଂସ୍କାର ସାଧିତ ହୋଇପାରିବ, ସେ ପ୍ରକାର ଶୁଭ ସମ୍ଭାବନାର ଇଙ୍ଗିତ ଏବେ ଆମକୁ ମିଳିଛି । ପଙ୍କରୁ ଯେମିତି ପଦ୍ମ ଫୁଟେ, ଠିକ୍ ସେଇମିତି ଆଜିର ଏଇ ପଙ୍କିଳ ଓ କୁତ୍ସିତ ରାଜନୀତି ଭିତରୁ ହିଁ ଫୁଟିବାକୁ ଯାଉଛି ନୂତନ ଆଶା ଆଉ ଆଶ୍ୱାସନାର ପବିତ୍ର ପଦ୍ମଫୁଲ : ଶତାବ୍ଦୀର ଶୁଭ୍ର ଶତଦଳ ।

ଆମ ଦେଶର ରାଜନୀତିରେ ସଂପ୍ରତି ଭାରତୀୟ ଜନତା ପାର୍ଟି (ଭାଜପା ବା ବିଜେପି) ଯେଉଁ ସ୍ଥିତିରେ ଉପନୀତ ହୋଇଛି, ଏପର୍ଯ୍ୟନ୍ତ ଯେଉଁ ଭୂମିକା ତୁଲାଇ ଆସୁଛି ଏବଂ ସଂପ୍ରତି ଯେଉଁ ନୂତନ ଦାୟିତ୍ୱ ଗ୍ରହଣ କରିଛି, ତାକୁ ପର୍ଯ୍ୟାଲୋଚନା କଲେ ଯେକେହି ଅନୁଭବ କରିପାରିବ ସେହି ଶୁଭ୍ର-ସତେଜ ଶତଦଳର ରୂପ-ରସ-ଗନ୍ଧ ।

ସେଦିନ, ଭାରତୀୟ ଜନତା ପାର୍ଟିର ସଂସ୍ଥାପନା ଅଧିବେଶନରେ ମୁମ୍ବାଇର 'ସମତାନଗର' ଠାରେ ୧୯୮୦ମସିହା ଡିସେମ୍ବର ୧୯ତାରିଖ ଦିନ ଭାଜପାର ତାତ୍କାଳୀନ ସଭାପତି ଏବଂ ଆଜିର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀ ତାଙ୍କର ଅଧ୍ୟକ୍ଷୀୟ ଅଭିଭାଷଣରେ ଯାହା କହିଥିଲେ, ତାହାହିଁ ଏବେ ସତ୍ୟ ହୋଇଛି । ସେ କହିଥିଲେ :

''ଭାରତକେ ପଶ୍ଚିମୀ ଘାଟକୋ ମଣ୍ଡିତ କରନେବାଲେ ମହାସାଗର କେ କିନାରେ ଖଡ଼େ ହୋକର ମୈଁ ଆଜ୍ ୟହ୍ ଭବିଷ୍ୟତ୍‌ବାଣୀ କରନେ କା ସାହସ କରତା ହୁଁ କି ଅନ୍ଧେରା ଛଁଟେଗା, ସୁରଜ ନିକଲେଗା କମଲ ଖିଲେଗା'' ଅର୍ଥାତ୍-

ହଟିବ ତିମର, ତୁଟିବ ତଂନ୍ଦ୍ରା
ଉଠିବ ତପନ ନୂଆ
ଆସିବ ସକାଳ, ହସିବ କମଳ,
ଦିଶିବ ନୂତନ ରାହା ।

ଅଟଳଜୀଙ୍କ ସ୍ୱରରେ ସେଦିନ ପ୍ରତିଧ୍ୱନିତ ହୋଇଥିବା ଭାରତ-ଆତ୍ମାର ବାଣୀ, ଭାରତୀୟ ଜନତାର ବହୁପୋଷିତ ଆଶା ଓ ଅଭୀପ୍‌ସା ଆଜି ସଂପୂର୍ଣ୍ଣ ଭାବେ ନହେଲେ ମଧ୍ୟ ଆଂଶିକ ଭାବରେ ସଫଳ ହୋଇ ପାରିଛି। ବାସ୍ତବିକ୍ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ଏହି ଘଟଣା। ଶ୍ରୀଯୁକ୍ତ ବାଜପେୟୀଙ୍କ ପ୍ରଧାନମନ୍ତ୍ରିତ୍ୱରେ ସଂପ୍ରତି ଗଠିତ ହୋଇଥିବା ଦ୍ୱିତୀୟ କେନ୍ଦ୍ର ମନ୍ତ୍ରିମଣ୍ଡଳର ସ୍ଥାୟିତ୍ୱ ସଂପର୍କରେ ଯେତେ ଯାହା ସଂଶୟ ଓ ଆଶଙ୍କା ପୋଷଣ କରାଯାଉଥିଲେ ମଧ୍ୟ, ଭାରତୀୟ ରାଜନୀତିର ବହୁବାଂଛିତ ରୂପାନ୍ତର ଓ ପୁନର୍ବିନ୍ୟାସ ଦିଗରେ ଏହା ଏକ ନୂତନ ଦିଗ୍‌ଦର୍ଶନ ଦେଇ ପାରିବ ବୋଲି ସଦିଚ୍ଛାସଂପନ୍ନ ସୂକ୍ଷ୍ମଦର୍ଶୀ ପର୍ଯ୍ୟବେକ୍ଷକମାନେ ଗଭୀର ଆଶା ଓ ବିଶ୍ୱାସ ପୋଷଣ କରୁଛନ୍ତି।

ପ୍ରାୟ ବାଇଶ ମାସର ବ୍ୟବଧାନରେ ଭାରତୀୟ ଜନମାନସର ମୁକୁଟବିହୀନ ସମ୍ରାଟ ଅଟଳଜୀ ସଂପ୍ରତି ଫେରି ପାଇଛନ୍ତି ତାଙ୍କର ଅପହୃତ ସିଂହାସନ। ସବୁ ଦ୍ୱନ୍ଦ୍ୱ, ଆଶଙ୍କା, ସଂଶୟ ଓ ଷଡ଼ଯନ୍ତ୍ରର ଅବସାନ ଘଟାଇ ଏ ଦେଶର ପ୍ରଧାନମନ୍ତ୍ରୀ ଆସନକୁ ଏବେ ପୁଣି ଥରେ ଅଳଂକୃତ କରିଛନ୍ତି ଆମ ସମୟର ଅବିକଳ୍ପ ରାଷ୍ଟ୍ରନାୟକ, ଅପ୍ରତିଦ୍ୱନ୍ଦ୍ୱୀ ଜନନାୟକ, ଅନନ୍ୟ ଚିନ୍ତାନାୟକ, ରାଷ୍ଟ୍ରବାଦୀ ଚେତନାର ମହାନାୟକ, ଜାତୀୟ ସ୍ୱାଭିମାନର ପ୍ରତୀକ ପ୍ରବାଦ-ପୁରୁଷ କବି। ରାଜନେତା ଶ୍ରୀ ଅଟଳ ବିହାରୀ ବାଜପେୟୀ।

ଏଥର କିନ୍ତୁ ବାର ଦିନ କି ବାର ମାସ ପାଇଁ ନୁହେଁ; ଅନ୍ତତଃ ପାଞ୍ଚ ବର୍ଷ ପାଇଁ ସେ ତାଙ୍କର ଏହି ଆସନରେ ବସିବା ଲାଗି ଅଭିପ୍ରେତ। ଜଣେ ସଂଖ୍ୟାତତ୍ତ୍ୱବିତ୍ (ଶ୍ରୀ ଏସ୍.ଏସ୍.ରାଓ) ଦ୍ୱାଦଶ ଲୋକସଭା ନିର୍ବାଚନର ଅବ୍ୟବହିତ ପୂର୍ବରୁ ଭବିଷ୍ୟତ୍‌ବାଣୀ ପ୍ରକାଶ କରିଥିଲେ ଯେ, ୧୯୮୦ରେ ଗଠିତ ଏକ ରାଜନୀତିକ ଦଳ (ଉଲ୍ଲେଖ୍ୟ : ଭାଜପା ଗଠିତ ହୋଇଥିଲା ୧୯୮୦ ଏପ୍ରିଲ୍‌ରେ) ୧୯୯୮ରେ ଲୋକସଭା ନିର୍ବାଚନ ପରେ ଯେଉଁ ସରକାର ଗଢ଼ିବ, ତାହା ଅନ୍ତତଃ ବାରବର୍ଷ ପାଇଁ କ୍ଷମତାସୀନ ରହିବ ଏବଂ ତାର ଏହି ଶାସନ କାଳ ମଧ୍ୟରେ ଭାରତର ପ୍ରାଚୀନ ସଂସ୍କୃତି ଓ ପରମ୍ପରାର ପୁନରୁଦ୍ଧାର ପାଇଁ ଉଦ୍ୟମ ହେବା ସହିତ ବିଶ୍ୱ ଦରବାରରେ ଭାରତର 'ଗୁରୁତ୍ୱ' ବୃଦ୍ଧି ପାଇବାକୁ ଆରମ୍ଭ କରିବ। ତାଙ୍କର ଏହି ଭବିଷ୍ୟତବାଣୀ EXPRESS STARTELLER ପତ୍ରିକାରେ ଏବଂ THE ASIAN AGE ପ୍ରଭୃତି କେତେକ ସମ୍ବାଦପତ୍ରରେ ମଧ୍ୟ ପ୍ରକାଶ ପାଇଥିଲା। ସେହି ଭବିଷ୍ୟତବାଣୀ ଏବେ ହୁଏତ ସତ ହେବାକୁ ଆରମ୍ଭ କରିଛି।

ଅତଏବ ଅଟଳଜୀଙ୍କର ୨୨ମାସ ତଳର ସେହି ବାରଦିନିଆ ପ୍ରଧାନମନ୍ତ୍ରିତ୍ୱ (୧୯୯୬ ମେ ୧୫ରୁ ୨୭ ତାରିଖ ପର୍ଯ୍ୟନ୍ତ)ର ଅବଧି ହୁଏତ ଥିଲା ତାଙ୍କର ସାଂପ୍ରତିକ ପ୍ରଧାନମନ୍ତ୍ରିତ୍ୱରୂପକ ପୂର୍ଣ୍ଣାଙ୍ଗ ନାଟକର ଏକ ଷ୍ଟେଜ୍-ରିହର୍ସାଲ !

ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ରାଜନୈତିକ ଦଳର ବରିଷ୍ଠତମ ନେତା ନୁହନ୍ତି, ସେ ହେଉଛନ୍ତି ଭାରତ ବର୍ଷର ସାଂପ୍ରତିକ ରାଜନୀତିକ ଚେତନା ଓ ଚିନ୍ତାଧାରାର ପ୍ରତିଭୂ ତଥା ଜନମାନସର କେନ୍ଦ୍ର ବିନ୍ଦୁ। କେବଳ ସେତିକି ନୁହେଁ, ସେ ହେଉଛନ୍ତି ଆମର ରାଷ୍ଟ୍ରୀୟ ସ୍ୱାଭିମାନ ତଥା ସାଂସ୍କୃତିକ ପରମ୍ପରାର ସର୍ବୋତ୍ତମ ପ୍ରତୀକ। ତା'ଛଡ଼ା, ଜଣେ ଯଶସ୍ୱୀ କବି, ବଳିଷ୍ଠ ପତ୍ରକାର, ବିଚକ୍ଷଣ ବକ୍ତା, ପ୍ରଭାବଶାଳୀ ଚିନ୍ତାନାୟକ ଲୋକପ୍ରିୟ ସମାଜସେବୀ ଓ ଉଦାରଚେତା ରାଷ୍ଟ୍ରନାୟକ ରୂପେ ସେ ସର୍ବତ୍ର ପରିଚିତ। ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷରେ ସମ୍ଭବତଃ ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ପରେ ହିଁ ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀଙ୍କ ସ୍ଥାନ। ନିଜେ ପଣ୍ଡିତ ନେହେରୁ ମଧ୍ୟ ଏକଦା ତାଙ୍କୁ ଦେଶର ଭାବୀ ପ୍ରଧାନମନ୍ତ୍ରୀ ରୂପେ ଅଭିହିତ କରିଥିଲେ।

ଶ୍ରୀଯୁକ୍ତ ବାଜପେୟୀ ସଂପ୍ରତି ଦ୍ୱିତୀୟ ଥର ପାଇଁ ଦେଶର ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରିଛନ୍ତି। ପ୍ରଥମେ ୧୯୯୬ ମସିହା ମେ' ମାସ ୧୫ ତାରିଖରେ ସେ ଦେଶର ପ୍ରଥମ ବି.ଜେ.ପି. ମନ୍ତ୍ରିମଣ୍ଡଳର କର୍ଣ୍ଣଧାର ରୂପେ ଶପଥ ଗ୍ରହଣ କରିଥିଲେ; ମାତ୍ର ଘଟଣାଚକ୍ରରେ ମାତ୍ର ୧୩ ଦିନ ପରେ ତାଙ୍କ ମନ୍ତ୍ରିମଣ୍ଡଳକୁ ପଦ ତ୍ୟାଗ କରିବାକୁ ପଡ଼ିଥିଲା। ତେବେ ସେ ଯାହା ହେଉ, ସାଂପ୍ରତିକ ନିର୍ବାଚନ ପରେ ସେ ପୁଣି ସେହି ଆସନକୁ ପ୍ରତ୍ୟାବର୍ତ୍ତନ କରିବା, କେବଳ ତାଙ୍କ ପାଇଁ ବା ତାଙ୍କ ଦଳ ପାଇଁ ନୁହେଁ, ସମଗ୍ର ଭାରତ ବର୍ଷ ପାଇଁ ଏକ ଅତ୍ୟନ୍ତ ଆନନ୍ଦଦାୟକ ଓ ସୌଭାଗ୍ୟଜନକ ବିଷୟ ଏବଂ ଭାରତୀୟ ରାଜନୀତିର ବହୁବାଂଛିତ ପୁନର୍ବିନ୍ୟାସ ଲାଗି ମଧ୍ୟ ଏହା ଏକ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଘଟନା।

ସାଂପ୍ରତିକ ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ଏବଂ ଶ୍ରୀଯୁକ୍ତ ବାଜପେୟୀ ଭାଜପା ସଂସଦୀୟ ଦଳର ନେତା ନିର୍ବାଚିତ ହେବା ପରେ ପରେ ସାଂବାଦିକମାନଙ୍କ ସହିତ ବାର୍ତ୍ତାଳାପ କାଳରେ ଯେଉଁ ପ୍ରକାର ମହତ୍ତ୍ୱପୂର୍ଣ୍ଣ ମନୋଭାବ ଓ ଅଭିବ୍ୟକ୍ତି ପ୍ରକାଶ କରିଥିଲେ ଏବଂ ପ୍ରଧାନମନ୍ତ୍ରୀ ହେବା ପରେ ଦେଇଥିବା ତାଙ୍କର ଉଦ୍‌ବୋଧନୀ ଅଭିଭାଷଣରେ ଯାହା ସବୁ କହିଛନ୍ତି, ତାହା ଆମ ସମସ୍ତଙ୍କ ପାଇଁ ବିଶେଷ ପ୍ରଣିଧାନଯୋଗ୍ୟ। ଚିରାଚରିତ ବିଦ୍ୱେଷମୂଳକ, ମିଥ୍ୟାଚାରଭିତ୍ତିକ ଓ ସ୍ୱାର୍ଥପ୍ରଣୋଦିତ ରାଜନୀତି ପରିହାର କରି ଦେଶମାତୃକାର ସେବା ଓ ଭୂୟୋବିକାଶ ଲାଗି ପାରସ୍ପରିକ ସଦ୍‌ଭାବ ଓ ସହଯୋଗର ଏକ ନୂତନ ଅଧ୍ୟାୟ ଆରମ୍ଭ କରିବା ଲାଗି ସେ ଯେଉଁ

ଆହ୍ୱାନ ଜଣାଇଛନ୍ତି, ତାହା ବାସ୍ତବିକ୍ ଏକାନ୍ତ ସ୍ୱାଗତଯୋଗ୍ୟ । ଅନ୍ୟାନ୍ୟ ଦଳର ଉଦାରବାଦୀ ରାଜନୀତିକ ନେତୃବୃନ୍ଦଙ୍କ ହୃଦୟରେ ଏହାର ଅନୁକୂଳ ପ୍ରଭାବ ପଡ଼ିବା ଆରମ୍ଭ କରିବ ବୋଲି ଆଶା କରାଯାଏ ।

ସମସ୍ତେ ଜାଣନ୍ତି ଶ୍ରୀଯୁକ୍ତ ବାଜପେୟୀ ହେଉଛନ୍ତି ବର୍ତ୍ତମାନ ଆମ ଦେଶର ସର୍ବାଧିକ ଲୋକପ୍ରିୟ ତଥା ସର୍ବମାନ୍ୟ ରାଜନେତା । ଦଳ-ମତ-ନିର୍ବିଶେଷରେ ତାଙ୍କ ପ୍ରତି ସବୁରି ଶ୍ରଦ୍ଧା ଓ ସମ୍ମାନ ରହି ଆସିଛି । ଗତ ନିର୍ବାଚନ ପୂର୍ବରୁ ବିଭିନ୍ନ ଗଣମାଧ୍ୟମ ଓ ଗବେଷଣା ସଂଗଠନ ପକ୍ଷରୁ କରାଯାଇଥିବା ପ୍ରାକ୍-ସର୍ବେକ୍ଷଣ ଓ ମତଗଣନାରୁ ସୂଚିତ ହୋଇଥିଲା ଯେ, ଦେଶର ଶତକଡ଼ା ୭୦ରୁ ୯୫ ଭାଗ ପର୍ଯ୍ୟନ୍ତ ଲୋକ ଶ୍ରୀ ବାଜପେୟୀଙ୍କୁ ହିଁ ଦେଶର ପ୍ରଧାନମନ୍ତ୍ରୀ ରୂପେ ଦେଖିବାକୁ ଚାହାନ୍ତି । ପ୍ରାୟ ସବୁ ମତ-ଗଣନାରେ ଶ୍ରୀ ବାଜପେୟୀଙ୍କ ବ୍ୟକ୍ତିତ୍ୱହିଁ ସର୍ବାଧିକ ସମର୍ଥନ ଲାଭ କରିଥିଲା । ତାଙ୍କ ବ୍ୟକ୍ତିତ୍ୱର ଏହି ଯାଦୁକରୀ ପ୍ରଭାବ ବଳରେ ହିଁ ଭାରତୀୟ ଜନତା ପାର୍ଟି ଆଜି ସର୍ବାଧିକ ଲୋକଙ୍କ ଶ୍ରଦ୍ଧା ଓ ଆସ୍ଥାଭାଜନ ହୋଇ ଦେଶର ବୃହତ୍ତମ ରାଜନୈତିକ ସଂଗଠନରେ ପରିଣତ ହୋଇ ପାରିଛି ଏବଂ ଏଥର ନିର୍ବାଚନରେ ଦେଶର ସବୁ ଶ୍ରେଣୀ, ସବୁ ସ୍ତର, ସବୁ ସଂପ୍ରଦାୟ ଓ ସବୁ କୋଣ-ଅନୁକୋଣରୁ ନିଜର ପ୍ରତିନିଧିଙ୍କୁ ପାର୍ଲିଆମେଣ୍ଟରେ ଉପସ୍ଥିତ କରାଇ ପାରିଛି ।

ଶ୍ରୀଯୁକ୍ତ ବାଜପେୟୀ ଭାରତର ସଂସଦୀୟ ରାଜନୀତିରେ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସକ୍ରିୟ ଭାବେ ସଂଶ୍ଳିଷ୍ଟ ରହି ଆସିଛନ୍ତି । ପ୍ରଥମ ସାଧାରଣ ନିର୍ବାଚନ (୧୯୫୨)ରେ ସେ ନିର୍ବାଚନ ଲଢ଼ି ନଥିଲେ ମଧ୍ୟ, ଜନସଂଘର ପ୍ରତିଷ୍ଠାତା ସ୍ୱର୍ଗତ ଶ୍ୟାମା ପ୍ରସାଦ ମୁଖାର୍ଜୀଙ୍କର ସଚିବ ରୂପେ ସେହି ସମୟରୁହିଁ ଦେଶର ରାଜନୀତିକ ପ୍ରକ୍ରିୟା ସହିତ ସେ ଜଡ଼ିତ ରହି ଆସିଛନ୍ତି । ୧୯୫୭ରେ ତାଙ୍କର ସାଂସଦ ଜୀବନ ଆରମ୍ଭ ହୋଇ ଏଯାବତ୍ ଅବ୍ୟାହତ ରହିଛି । ମଝିରେ କେବଳ ଗୋଟିଏ ବର୍ଷ (୧୯୮୫) ବ୍ୟତୀତ କ୍ରମାଗତ ଭାବରେ ସେ ଲୋକସଭା ଅଥବା ରାଜ୍ୟସଭାର ସଭ୍ୟ ରୂପେ, କେନ୍ଦ୍ର ମନ୍ତ୍ରିମଣ୍ଡଳର ବରିଷ୍ଠ ସଦସ୍ୟ (ବିଦେଶ ମନ୍ତ୍ରୀ) ରୂପେ, ବିରୋଧୀ ଦଳ ନେତା ରୂପେ ଏବଂ ପ୍ରଧାନମନ୍ତ୍ରୀ ରୂପେ ବିଭିନ୍ନ ପ୍ରକାର ଦାୟିତ୍ୱ ନିର୍ବାହ କରି ଦେଶର ଅପ୍ରତିଦ୍ୱନ୍ଦ୍ୱୀ, ଅବିକଳ୍ପ ରାଜନେତାର ଅନନ୍ୟ ପ୍ରତିଷ୍ଠା ଅର୍ଜ୍ଜନ କରିଛନ୍ତି । ଏଥିଲାଗି ତାଙ୍କୁ ଦେଶର ସର୍ବଶ୍ରେଷ୍ଠ ସାଂସଦ ସମ୍ମାନ ସହିତ 'ପଦ୍ମ ବିଭୂଷଣ' ସମ୍ମାନ ମଧ୍ୟ ମିଳି ସାରିଛି । ଏହା ବ୍ୟତୀତ ତାଙ୍କର ବ୍ୟକ୍ତିତ୍ୱର ଅନ୍ୟାନ୍ୟ ସବୁ ଦିଗକୁ ଦୃଷ୍ଟି ଦେଲେ ଯେ କେହି ସ୍ୱୀକାର କରିବ ଯେ, ଶ୍ରୀଯୁକ୍ତ ବାଜପେୟୀ ହେଉଛନ୍ତି ଏକ ସ୍ୱୟଂସଂପୂର୍ଣ୍ଣ ବ୍ୟକ୍ତିତ୍ୱର ଅଧିକାରୀ । ସେହି ଅନନ୍ୟ ବ୍ୟକ୍ତିତ୍ୱର ଏକ ପରିଚୟ ଦେବା ଉଦ୍ଦେଶ୍ୟରେ ହିଁ ଆଜି ଏହି ପ୍ରୟାସ ।

ତେବେ ତାଙ୍କ ଜୀବନର ବିଭିନ୍ନ ଘଟଣାର ବୟାନ ଦେବା ପୂର୍ବରୁ କେଉଁ ପରିସ୍ଥିତିରେ ବର୍ତ୍ତମାନ ସେ ଦ୍ୱିତୀୟ ଥର ପାଇଁ ଦେଶର ପ୍ରଧାନମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଛନ୍ତି, ସେ ସମ୍ବନ୍ଧରେ ଏକ ଚିତ୍ର ଦେବା ଆବଶ୍ୟକ ମନେହୁଏ ।

॥ ପୃଷ୍ଠଭୂମି ॥

ଭାରତର ଦ୍ୱାଦଶ ଲୋକସଭା ନିର୍ବାଚନ ପରେ, ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏବଂ ଭାରତୀୟ ଜନତା ପାର୍ଟିର ନେତୃତ୍ୱରେ ସଂପ୍ରତି ଯେଉଁ ମିଳିତ ସରକାର ଗଠନ କରାଯାଇଛି, ତାହା କେବଳ ଦେଶର ରାଜନୀତି ଓ ପ୍ରାଶାସନିକ କ୍ଷେତ୍ରରେ ନୁହେଁ, ଅନ୍ୟ ବହୁ କ୍ଷେତ୍ରରେ ବହୁବାଂଛିତ ଶୁଭଙ୍କର ପୁନର୍ବିନ୍ୟାସ ବା ରୂପାନ୍ତର ପ୍ରକ୍ରିୟାର ଅୟମାରମ୍ଭ କରିପାରିବ ବୋଲି ବିଶ୍ୱାସ କରାଯାଉଛି । ଏ ନିର୍ବାଚନରେ କୌଣସି ଗୋଟିଏ ଦଳ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ କରି ନ ଥିଲେ ମଧ୍ୟ, ଦେଶର ଜନସାଧାରଣ ସ୍ପଷ୍ଟ ବହୁମତ ପ୍ରକାଶ କରି ନାହାନ୍ତି ବୋଲି କହିଲେ ଭୁଲ ହେବ । କେବଳ ସ୍ଥୂଳ ସଂଖ୍ୟାତ୍ମକ ଦୃଷ୍ଟିକୋଣରୁ ନୁହେଁ, ସୂକ୍ଷ୍ମ ଭାବାତ୍ମକ ଦୃଷ୍ଟିରୁହିଁ ଏହି ବିଷୟକୁ ବିଚାର କରାଯିବା ଆବଶ୍ୟକ । ଏହି ତାତ୍ପର୍ଯ୍ୟପୂର୍ଣ୍ଣ ଜନାଦେଶର ଅର୍ନ୍ତର୍ନିହିତ ସଂକେତ ଓ ସନ୍ଦେଶକୁ ହିଁ ପ୍ରଥମେ ହୃଦୟଙ୍ଗମ କରିବାକୁ ହେବ । ଅବଶ୍ୟ ଏ ସଂକ୍ରାନ୍ତରେ ବିସ୍ତାରିତ ବିଶ୍ଳେଷଣର ଆବଶ୍ୟକତା ରହିଛି । ଯଥାସ୍ଥାନରେ ଓ ଯଥା ସମୟରେ ତାହା କରାଯିବ । ତେବେ ପ୍ରଥମରୁ ମନେ ରଖିବାକୁ ହେବ ଯେ, ଦେଶରେ ବର୍ତ୍ତମାନ ସଂଖ୍ୟାତ୍ମକ ଦୃଷ୍ଟିରୁ କ୍ରମାଗତ ଚତୁର୍ଥ ଥର ପାଇଁ ଏକ ଝୁଲା ବା ତ୍ରିଶଙ୍କୁ ଲୋକସଭା ଗଠିତ ହୋଇଛି । ପ୍ରଥମେ ୧୯୮୯ ମସିହାରେ ଅନୁଷ୍ଠିତ ନବମ ଲୋକସଭା ନିର୍ବାଚନରେ କୌଣସି ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରିବାକୁ ସମର୍ଥ ହୋଇ ନ ଥିଲା । ଏକ ସଂଖ୍ୟାଗରିଷ୍ଠ ଦଳର ନେତା ସ୍ୱର୍ଗତ ରାଜୀବ ଗାନ୍ଧି ସରକାର ଗଢ଼ିବାକୁ ରାଜି ନ ହେବା ଫଳରେ ବି.ଜେ.ପି.ର ସମର୍ଥନରେ ଦ୍ୱିତୀୟ ବୃହତ୍ତମ ଜନତା ଦଳ ପକ୍ଷରୁ ଭି.ପି. ସିଂହଙ୍କ ନେତୃତ୍ୱରେ ସରକାର ଗଢ଼ାଯାଇଥିଲା । କିନ୍ତୁ ଏହି ସରକାର ଉପରେ ହଠାତ୍ ମଣ୍ଡଳ-ଭୂତ ସବାର ହେବା ଯୋଗୁ ଦେଶରେ ଜାତିଆଣ ବିଭେଦର ଭୟାବହ ବହ୍ନିଶିଖା ଜଳି ଉଠିବାରୁ ମାତ୍ର ୧୧ମାସ ପରେ ସେ ସରକାରର ପତନ ହେଲା । ତା' ପରେ କଂଗ୍ରେସ ଦଳର ସମର୍ଥନରେ ଚନ୍ଦ୍ର ଶେଖରଜୀ ସରକାର ଗଠନ କଲେ ଓ ୪ ମାସ ମଧ୍ୟରେ କଂଗ୍ରେସର ସମର୍ଥନ ପ୍ରତ୍ୟାହାର ଯୋଗୁଁ ତାର ପତନ ଘଟିଲା ଏବଂ ୧୯୯୧ରେ ଦଶମ ଲୋକସଭା ପାଇଁ ନିର୍ବାଚନ କରାଗଲା । ଏଥିରେ ମଧ୍ୟ କୌଣସି ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରି ନ ପାରିବାରୁ ଏକକ ସଂଖ୍ୟାଗରିଷ୍ଠ ଦଳ କଂଗ୍ରେସର ନେତା (ରାଜୀବଙ୍କ ମୃତ୍ୟୁ ପରେ) ରୂପେ ଶ୍ରୀ ପି.ଭି. ନରସିଂହ ରାଓ ଏକ ସଂଖ୍ୟାଲଘୁ ସରକାର ଗଠନ କଲେ, ଯାହା କି ପରେ କୌଣସି ମତେ ସଂଖ୍ୟାଗରିଷ୍ଠ ହୋଇ ପାରିଥିଲା ଏବଂ ପୂରା ପାଞ୍ଚ ବର୍ଷ ତିଷ୍ଠି ରହିଥିଲା ।

୧୯୯୬ରେ ଅନୁଷ୍ଠିତ ଏକାଦଶ ଲୋକସଭା ନିର୍ବାଚନରେ ମଧ୍ୟ କୌଣସି ଦଳ ସଂଖ୍ୟାଗରିଷ୍ଠତା ହାସଲ କରି ପାରି ନଥିଲା । ତେଣୁ ଏକକ ସଂଖ୍ୟାଗରିଷ୍ଠ ଦଳ ରୂପେ ପ୍ରଥମ ଥର ପାଇଁ ନିର୍ବାଚିତ ଭାରତୀୟ ଜନତା ପାର୍ଟିର ସଂସଦୀୟ ଦଳ ନେତା ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀଙ୍କୁ ତାତ୍କାଳୀନ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମା ସରକାର ଗଢ଼ିବାକୁ ନିମନ୍ତ୍ରଣ କଲେ । ମାତ୍ର ଏହି ସରକାରକୁ ଚାଲିବାକୁ ନ ଦେବା ଲାଗି କଂଗ୍ରେସ ଓ ତଥାକଥିତ ମିଳିତ ସାମ୍ମୁଖ୍ୟ ଓ ବାମ ସାମ୍ମୁଖ୍ୟର ଜିଦ୍‌ଖୋର ମନୋଭାବ ତଥା କେତେକ ନ୍ୟସ୍ତସ୍ୱାର୍ଥ ଶକ୍ତିଙ୍କ ଷଡ଼ଯନ୍ତ୍ର ଯୋଗୁ ମାତ୍ର ୧୩ ଦିନ ପରେ ଏ ସରକାର ଇସ୍ତଫା ଦେବାକୁ ବାଧ ହୋଇଥିଲେ ଏବଂ ତା' ପରେ ପରେ ଯଥାକ୍ରମେ ଶ୍ରୀ ଏଚ୍.ଡ଼ି. ଦେବଗୌଡ଼ା ଓ ଶ୍ରୀ ଇନ୍ଦ୍ରକୁମାର ଗୁଜରାଲଙ୍କ ପ୍ରଧାନମନ୍ତ୍ରିତ୍ୱରେ ମିଳିତ ସାମ୍ମୁଖ୍ୟର ଦୁଇଟି ସରକାର ଗଢ଼ା ଯାଇଥିଲା । ମାତ୍ର ଅନ୍ତର୍ନିହିତ ଦୁର୍ବଳତା ଓ ପାରସ୍ପରିକ ସ୍ୱାର୍ଥର ସଂଘର୍ଷ ଯୋଗୁଁ ଏ ଦୁଇଟି ଯାକ ସରକାରର ପତନ ଘଟିବା ଫଳରେ ଚଳିତ ବର୍ଷ ଫେବୃଆରୀ ମାସର ଦ୍ୱିତୀୟାର୍ଦ୍ଧରେ ସଦ୍ୟଗଠିତ ଲୋକସଭାର ନିର୍ବାଚନ କରାଯାଇଥିଲା, ଯାହାର ଫଳାଫଳ ସମସ୍ତେ ଜାଣନ୍ତି ।

କୌଣସି ପ୍ରକାର ମତାନ୍ଧତା, ପୂର୍ବାନୁମାନ ଓ ଆସକ୍ତିରୁ ମୁକ୍ତ ହୋଇ ସଂପୂର୍ଣ୍ଣ ନୈର୍ବ୍ୟକ୍ତିକ ଭାବରେ ଯଦି କେହି ଦେଶର ସାଂପ୍ରତିକ ରାଜନୀତିକ ସ୍ଥିତି ଓ ଘଟନାବଳୀକୁ ବିଚାର କରେ, ତେବେ ସେ ବୁଝି ପାରିବ ଯେ, ଏହି ପ୍ରକାର ବ୍ୟବସ୍ଥାହିଁ ଆମ ପାଇଁ ବର୍ତ୍ତମାନ ଏକାନ୍ତ ଆବଶ୍ୟକ ଥିଲା । ପ୍ରଥମତଃ ଅଟଳଜୀଙ୍କ ପରି ଜଣେ ଉଦାରଚେତା, ପ୍ରାଜ୍ଞ, ଅଭିଜ୍ଞ ଓ ବଳିଷ୍ଠ ଜନନେତାଙ୍କୁ ଆମେ ଦେଶର ପ୍ରଧାନମନ୍ତ୍ରୀ ଆସନରେ ପାଇଛୁଁ । ଦ୍ୱିତୀୟତଃ ପୂର୍ବରୁ ପାଇ ସାରିଛୁଁ କେ.ଆର.ନାରାୟଣନ୍‌ଙ୍କ ପରି ଜଣେ ବିଜ୍ଞ, ଦୃଢ଼ମନା ଓ ନିଷ୍ପକ୍ଷ ରାଷ୍ଟ୍ରପତି । ତୃତୀୟତଃ ମନ୍ତ୍ରିମଣ୍ଡଳରେ ଅଛନ୍ତି ବହୁ ନୀତିନିଷ୍ଠ, ଅଭିଜ୍ଞ ଓ ବିଜ୍ଞ ନେତୃବର୍ଗ । ଚତୁର୍ଥତଃ ବିରୋଧୀ ପକ୍ଷରେ ଅଛନ୍ତି ତିନିଜଣ ପୂର୍ବତନ ପ୍ରଧାନମନ୍ତ୍ରୀଙ୍କ ସମେତ ବହୁ ଅଭିଜ୍ଞ ଓ ବିଜ୍ଞ ନେତା । ପଞ୍ଚମତଃ ଏକଦଳୀୟ ଶାସନ ପରିବର୍ତ୍ତେ ବହୁଦଳୀୟ ସରକାର ଗଠିତ ହେବା ଯୋଗୁ ପାରସ୍ପରିକ ସହଯୋଗିତା ବୃଦ୍ଧି ଓ ଜାତୀୟ ସଂହତି ତଥା ରାଜନୈତିକ ପୁନର୍ବିନ୍ୟାସ ପାଇଁ ଅଧିକ ସୁଯୋଗ ସୃଷ୍ଟି ହେବାର ସମ୍ଭାବନା ରହିଛି । ଷଷ୍ଠତଃ ଦେଶର ସର୍ବବୃହତ୍ ଦଳକୁ ସଂସଦରେ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ମିଳି ନଥିବାରୁ ସେ ଦଳର ନେତାମାନେ ବେପରୁଆ ବା ଖାମଖିଆଲ୍ ରୀତିରେ କୌଣସି ନିଷ୍ପତ୍ତି ନେଇ ପାରିବେ ନାହିଁ, ସତର୍କତା ସହ କାର୍ଯ୍ୟ କରିବେ । ବି.ଜେ.ପି ମୁଖ୍ୟତଃ ଏକ ରାଷ୍ଟ୍ରବାଦୀ, ନୀତିନିଷ୍ଠ ଓ ସଂସ୍କୃତିସଂପନ୍ନ ଦଳ ହୋଇଥିବାରୁ ଏବଂ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଭଳି ଏକ କ୍ଷମତାମୁକ୍ତ, ସୁଶୃଙ୍ଖଳ ଓ ରାଷ୍ଟ୍ରବାଦୀ ସଂଗଠନ ଏହାର ପ୍ରଧାନ ପରାମର୍ଶଦାତା ରୂପେ ରହିଥିବାରୁ ଏ ସରକାର ସହଜରେ ଭୁଲ ମାର୍ଗରେ ପରିଚାଳିତ ହେବାର ଆଶଙ୍କା ନାହିଁ । ମୋଟ ଉପରେ ଶ୍ରୀଯୁକ୍ତ

ବାଜପେୟୀଙ୍କ ପ୍ରଧାନମନ୍ତ୍ରିତ୍ୱ ଏବଂ ତାଙ୍କ ସରକାରର ସ୍ୱାଗତଯୋଗ୍ୟ ତଥା ଭ୍ରଷ୍ଟାଚାରବିରୋଧୀ ପଦକ୍ଷେପ ଏବଂ ବିଭିନ୍ନ କଲ୍ୟାଣମୂଳକ କାର୍ଯ୍ୟ ଫଳରେ ଏହି ସରକାର ଖୁବ୍ ଶୀଘ୍ର ନିଜର ଏକ ସ୍ୱତନ୍ତ୍ର ପରିଆରା ସ୍ଥାପନ କରିବା ସଙ୍ଗେ ସଙ୍ଗେ ଏକ ନୂତନ ରାଜନୈତିକ ସଂସ୍କୃତିର ଶୁଭାରମ୍ଭ କରି ପାରିବ ଏବଂ ବିଭିନ୍ନ କ୍ଷେତ୍ରରେ ପ୍ରଶଂସାଜନକ ଅଗ୍ରଗତି ପାଇଁ ପଥ ପ୍ରସ୍ତୁତ କରିପାରିବ ବୋଲି ବିଶ୍ୱାସ କରାଯାଉଛି । ବିରୋଧୀ ପକ୍ଷ ପ୍ରତି ସରକାରୀ ପକ୍ଷର ଆଚରଣରେ ପରିବର୍ତ୍ତନ ହେବା ଯୋଗୁ ସଂସଦର ପରିସ୍ଥିତି ମଧ୍ୟ ବଦଳିବାକୁ ଆରମ୍ଭ କରିବ ବୋଲି ଆଶା କରାଯାଉଛି । ଏହା ଯଦି ବାସ୍ତବରେ ଫଳବତୀ ହୋଇପାରେ, ତେବେ ଆଗାମୀ ଏକବିଂଶ ଶତାବ୍ଦୀ ସଂପର୍କରେ ଦେଶବାସୀ ଯେଉଁ ସବୁ ସ୍ୱପ୍ନ ଦେଖି ଆସିଛନ୍ତି, ଆମର ଏଇ ଜନ୍ମଭୂମି ଭାରତବର୍ଷ ବିଶ୍ୱ ଦରବାରରେ ମୁଣ୍ଡ ଟେକି ଠିଆ ହେବା ସହିତ ସାରା ଜଗତର ଗୁରୁ ବା ଆଦର୍ଶ ସ୍ଥାନୀୟ ହେବ ବୋଲି ମହାପୁରୁଷମାନେ ଯେଉଁ ଆଶା ଓ ଅଭୀପ୍ସାର ବାଣୀ ଶୁଣାଇ ଆସିଛନ୍ତି, ସେଥିପାଇଁ ଆମେ ଆମର ଅଭିଯାନ ଆରମ୍ଭ କରିପାରିବା । ସୁତରାଂ ଏହି ସରକାରର ସ୍ଥାୟିତ୍ୱ ସଂପର୍କରେ ବିରୋଧୀ ପକ୍ଷର ନେତାମାନଙ୍କ ଶତ ଆଶଙ୍କା ପ୍ରଚାର ସତ୍ତ୍ୱେ ଦେଶର ସାଧାରଣ ଜନତା ଉପରେ ତାର କୌଣସି ପ୍ରଭାବ ରହିବ ନାହିଁ । ପ୍ରଥମରୁ ହିଁ ଏହି ପ୍ରକାର ଏକ ଶୁଭେଚ୍ଛାମୂଳକ ଓ ସକାରାତ୍ମକ ମନୋଭାବ ପୋଷଣ କରିବା ନିମିତ୍ତ ପାଠକମାନଙ୍କୁ ବିନୀତ ନିବେଦନ ।

-- **ଲେଖକ**

# ॥ ଜୀବନର ନୂତନ ସଂଗୀତ ॥

"ଯୋ କାଲ୍ ଥେ
ଓହ ଆଜ୍ ନହିଁ ହେଁ ।
ଯୋ ଆଜ୍ ହେଁ
ଓହ୍ କାଲ୍ ନହିଁ ହୋଙ୍ଗେ ।
ହୋନେ ନ ହୋନେ କା କ୍ରମ୍
ଐସି ତରହ ଚଲ୍‌ତା ରହେଗା ।
ହମ୍ ହେଁ, ହମ୍ ରହେଙ୍ଗେ-
ୟହ୍ ଭ୍ରମ୍ ଭି ସଦା ପଲ୍‌ତା ରହେଗା ।"

ଏହା ହେଉଛି କବି ଅଟଳବିହାରୀ ବାଜପେୟୀଙ୍କର ଏକ କବିତାର ଅଂଶ । ଠିକ୍ କେବେ ସେ ଏହି କବିତାଟି ଲେଖିଥିଲେ, ଆଜି ତାହା ଆଉ ତାଙ୍କର ମନେ ନାହିଁ। କିନ୍ତୁ ସାରା ଜୀବନ ଧରି ସେ ଲେଖି ଚାଲିଛନ୍ତି ଏଇ କବିତା । ଜଣେ ରାଜନେତା ରୂପେ ଅଟଳଜୀ ଆଜି ଯେତେ ତୁଙ୍ଗ-ସ୍ତରକୁ ଯାଇଥିଲେ ମଧ୍ୟ, ପ୍ରଥମତଃ ଓ ପ୍ରଧାନତଃ ସେ ଜଣେ କବି, ସଚ୍ଚା କବି ! ସେଇଥିପାଇଁ ତ ନିଜର ଆଉ ଏକ କବିତାରେ ସେ କହିଛନ୍ତି :

"ମେରେ ପ୍ରଭୁ !
ମୁଝେ ଇତ୍‌ନୀ ଉଁଚାଇ କଭି ମତ୍ ଦେନା ।
ଗୈରୋଁ କୋ ଗଲେ ନ ଲଗା ସକୁଁ-
ଇତ୍‌ନୀ ରୁଖାଇ କଭି ମତ୍ ଦେନା ॥"
(ଅନ୍ୟତ୍ର ପ୍ରକାଶିତ ସଂପୂର୍ଣ୍ଣ କବିତାଟି ଦ୍ରଷ୍ଟବ୍ୟ)

ସାରା ଜୀବନ ଧରି ସେ ପରମେଶ୍ୱରଙ୍କୁ ପ୍ରାର୍ଥନା କରି ଆସିଛନ୍ତି : "ମୋତେ ବରଫ-ଚୂଡ଼ାର ଉଚ୍ଚତା କେବେ ବି ଦିଅନା ପ୍ରଭୁ, ଯେଉଁଠାରୁ ସବୁଜ ଉଦ୍ଭିଦକୁ ମୁଁ ବୁକୁରେ ଜଡ଼ାଇ ଧରି ପାରିବି ନାହିଁ।"

ଅଟଳଜୀଙ୍କର ବୟସ ଏବେ ୭୪ ବର୍ଷ । ୧୯୨୪ ମସିହା ଡିସେମ୍ବର ୨୫ (ବଡ଼ଦିନ)ରେ ତାଙ୍କର ଜନ୍ମ । ଅତୀତର ସ୍ମୃତିଚାରଣ କରିବାକୁ ଯାଇ ସେ କହିଛନ୍ତି: "ଜୀବନର ବହୁତ ଗୁଡ଼ାଏ ବର୍ଷ ଅତିକ୍ରମ କରି ଆସିଲିଣି । ମଥାର ଚୂଳ ସବୁ ଧଳା ହୋଇ ଗଲାଣି । ମୁଁ ତେବେ କ'ଣ ବୁଢ଼ା ହୋଇ ଗଲିଣି ? କେଜାଣି ! ତା'ଛଡ଼ା ସେ କଥା ବୁଝିବାକୁ ବା ଭାବିବାକୁ ମୁଁ ସମୟ ପାଇଲି କେତେବେଳେ ? ଆଜି ବି ଜୀବନର

ନୂତନ ଗୀତ ଗାଇବାକୁ ଇଚ୍ଛା କରୁଛି ମୁଁ। ନିଜର ଏକ କବିତାରେ କହୁଚି : "ହାର ନହିଁ ମାନୁଙ୍ଗା/ରାର୍ ନହିଁ ଠାନୁଙ୍ଗା/କାଲ୍ କେ କପାଲ୍ ପର ଲିଖତା-ମିଟାତା ହୁଁ/ଗୀତ୍ ନୟା ଗାତା ହୁଁ.../ମୈଁ ଗୀତ ନୟା ଗାତା ହୁଁ।"

॥ ନିଜ କଥା ଓ ବାପା-ମା'ଙ୍କ କଥା ॥

ପ୍ରାୟ ନଅ ମାସ ତଳେ ପ୍ରକାଶିତ ଏକ ସଂକ୍ଷିପ୍ତ ଲେଖାରେ ଅଟଳଜୀ ଲେଖିଥିଲେ : "ଆଜି ନିଜ କଥା ଲେଖିବାକୁ ବସିଲା ବେଳେ ବାପାଙ୍କର କଥା ଖୁବ୍ ମନେ ପଡୁଛି। ମୋ ବାପାଙ୍କର ନାମ କୃଷ୍ଣବିହାରୀ ବାଜପେୟୀ। ତାଙ୍କଠାରୁ ଶୁଣିଛି; ଗ୍ୱାଲିୟରର ଆମ ଘର ପାଖରେ ଥିଲା ଏକ ଗୀର୍ଜା। ଯୀଶୁ ଖ୍ରୀଷ୍ଟଙ୍କ ଜନ୍ମଦିନ ଉପଲକ୍ଷେ ସେଠାରୁ ଘଣ୍ଟାଧ୍ୱନି ଓ ତୋପଧ୍ୱନି ଶୁଭୁଥିବା ବେଳେ ହିଁ ମୁଁ ଭୂମିଷ୍ଠ ହୋଇଥିଲି। ସେ ଯାହା ହେଉ, ଗ୍ୱାଲିୟରରେ ମୋର ଜନ୍ମ ହୋଇଥିଲେ ମଧ୍ୟ, ଆମର ଆଦି ନିବାସ ଥିଲା ଉତ୍ତରପ୍ରଦେଶର ଆଗ୍ରା ନିକଟବର୍ତ୍ତୀ ବଟେଶ୍ୱର ନାମକ ଏକ ଗ୍ରାମରେ। ଆମର ଥିଲା ସନାତନ ବୈଦିକ କାଣ୍ୟକୁବ୍ଜ-ବ୍ରାହ୍ମଣ ପରିବାର। ମୋର ଜେଜେବାପା ଶ୍ୟାମଲାଲ ବାଜପେୟୀ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଏହିଠାରେ ହିଁ ରହିଥିଲେ। ସେ ଥିଲେ ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ। ତାଙ୍କରି ପରାମର୍ଶରେ ହିଁ ବାପା ନିଜର ଚାକିରୀ ସ୍ଥଳ ଗ୍ୱାଲିୟରରେ ନିଜର ଘର ତିଆରି କରି ବସବାସ କରିଥିଲେ। ବାପା ସେଠାରେ ଶିକ୍ଷକତା କରୁଥିଲେ। ଜେଜେଙ୍କ ପରି ବାପା ମଧ୍ୟ ଥିଲେ ଭାରତୀୟ-ଦର୍ଶନ, ଶାସ୍ତ୍ର-ପୁରାଣ, ଗୀତା-ଭାଗବତ, ରାମାୟଣ-ମହାଭାରତ ଇତ୍ୟାଦିରେ ଜଣେ ଧୂରୀଣ ପଣ୍ଡିତ। କବିତା ବି ଲେଖୁଥିଲେ। ବାପାଙ୍କର କେତେକ କବିତାର ଅଂଶ ମୋତେ ଖୁବ୍ ପ୍ରଭାବିତ କରିଥିଲା। ପରବର୍ତ୍ତୀ କାଳରେ କବିତା ଲେଖା ପ୍ରତି ମୋର ଯେଉଁ ତୀବ୍ର ଆବେଗ ସୃଷ୍ଟି ହୋଇଥିଲା ଏବଂ ବକ୍ତୃତା ଦେବା ଓ ବିତର୍କ କରିବା ଇତ୍ୟାଦି କ୍ଷେତ୍ରରେ ମୋର ଯେଉଁ ସ୍ୱାଭାବିକ ଆଗ୍ରହ ସୃଷ୍ଟି ହୋଇଥିଲା, ସେ ସବୁ ବାପାଙ୍କ ପ୍ରଭାବର ଅବଦାନ।

ବାପା ସେତେବେଳେ ମାଟ୍ରିକ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ ମଧ୍ୟ, ସ୍କୁଲରେ ଦଶମ ଶ୍ରେଣୀର ଛାତ୍ରମାନଙ୍କୁ ମଧ୍ୟ ପଢ଼ାଉଥିଲେ। ସେଥିଯୋଗୁ ଉଚ୍ଚ ଶିକ୍ଷା ବିଭାଗ ଆପତ୍ତି ଉଠାଇଥିଲେ। ସେମାନେ କହିଲେ- ମାଟ୍ରିକ୍ ପାସ୍ କରିଥିବା ଜଣେ ଶିକ୍ଷକ କେଉଁ ଅଧିକାରରେ ଦଶମ ଶ୍ରେଣୀର ଛାତ୍ରମାନଙ୍କୁ ପାଠ ପଢ଼ାଉଛି ? ବାପାଙ୍କର ଏହି ପାଠ ପଢ଼ାଇବା କାର୍ଯ୍ୟକୁ ସେମାନେ ବନ୍ଦ କରି ଦେବା ପରେ ବାପାଙ୍କର ଜିଦ୍ ମଧ୍ୟ ବଢ଼ିଗଲା। ସେ ଘରୋଇ ଭାବେ ପରୀକ୍ଷା ଦେଇ ଆଇ.ଏ. ଏବଂ ବି.ଏ. ପାସ୍ କଲେ। ପରେ ହିନ୍ଦୀ ସାହିତ୍ୟ ନେଇ ଏମ.ଏ. ମଧ୍ୟ ପାସ୍ କଲେ। ଅବସର ନେବା ସମୟରେ ସେ ଥିଲେ ଜିଲ୍ଲାର ଇନ୍‌ସପେକ୍ଟର ଅଫ୍ ସ୍କୁଲସ୍। ଏହିପରି ଜଣେ ସେଲଫ୍‌ମେଡ୍ ମଣିଷ

ଥିଲେ ମୋର ବାପା । ଜଣେ କବି ଓ ଲେଖକ ତଥା ଆଦର୍ଶ ଶିକ୍ଷକ ମଧ ଥିଲେ । ଜେଜେ ଓ ବାପା ଉଭୟଙ୍କ କାବ୍ୟପ୍ରୀତି ମୁଁ ମଧ ବଂଶଗତ ଭାବରେ କିଛିଟା ପାଇଛି । ଆଉ ମୋର ମା' ଥିଲେ ସାଧାରଣ ଗ୍ରାମ୍ୟବଧୂ । ଚିରକାଳୀନ ଏକ ମା । ସଂଧ୍ୟାରେ ଆମେ ପିଲାମାନେ ଯେତେବେଳେ ଖେଳାଖେଳି ସାରି ଘରକୁ ଫେରୁଥିଲୁଁ, ସେତେବେଳେ ଦେଖୁଥିଲୁଁ, ଦୀପ ଶିଖାର ଆଲୋକରେ ମା' ଠାକୁର ଘରେ ବସି ରାମାୟଣ ପଢୁଛନ୍ତି । ଆମପ୍ରତି ମା'ଙ୍କ ସ୍ନେହ-ଶ୍ରଦ୍ଧାର କିଛି ସୀମା ନଥିଲା । ଏବେ ବି ମନେ ପଡ଼େ, ମୋତେ ସାମାନ୍ୟ ଜ୍ୱର ହୋଇଥିଲେ ବି ସେ ସାରା ରାତି ମୋ ବିଛଣା ପାଖରେ ବସି ରହିଥାନ୍ତି । ମୋ ମା'ଙ୍କ ମନରେ ଡର ଭୟ ବୋଲି କିଛି ନ ଥିଲା; ବରଂ ତାଙ୍କ ଭିତରେ ଥିଲା ପ୍ରଚଣ୍ଡ ଡିଟରମିନେସନ୍ । ଖୁବ୍ ଆନ୍ତରିକତା ସହକାରେ ସେ ନିଜର ସବୁ କାର୍ଯ୍ୟ କରୁଥିଲେ । ମୋତେ ମଧ ସେ ବରାବର ସେହିପରି ନିର୍ଭୟ ଓ ସିନ୍‌ସିୟର୍ ହେବାକୁ କହୁଥିଲେ ।''

ଗତ ବର୍ଷ ଅକ୍ଟୋବର ମାସରେ 'ବର୍ତ୍ତମାନ୍' ପତ୍ରିକାର 'ପୂଜାସଂଖ୍ୟାରେ ପ୍ରକାଶିତ ତାଙ୍କର ଏହି ସାକ୍ଷାତ୍‌କାରଭିତ୍ତିକ ଲେଖାରେ ଅଟଳଜୀ ନିଜର ପିଲାଦିନ, ସ୍କୁଲ-କଲେଜର ପାଠ ପଢ଼ା, କବିତା ଲେଖା, କବି-ସମ୍ମିଳନୀରେ ଯୋଗଦାନ, ବିତର୍କ ପ୍ରତିଯୋଗିତାରେ ଅଂଶ ଗ୍ରହଣ, ନିଜର ହବି ବା ସଉକ, ବାପାଙ୍କର ସହପାଠୀ ଓ ସହ-ଅନ୍ତେବାସୀ ରୂପେ ଆଇନ କଲେଜରେ ପାଠ ପଢ଼ା, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ଓ ଅନ୍ୟାନ୍ୟ ସଂଗଠନରେ ସକ୍ରିୟ ଯୋଗଦାନ, ନିଜର ପତ୍ରକାର-ଜୀବନ, ବିଭିନ୍ନ ପତ୍ରିକା ଓ ସଂବାଦପତ୍ର ସମ୍ପାଦନା, ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ ଇତ୍ୟାଦି ନାନା ବିଷୟରେ ଉଲ୍ଲେଖ କରିଛନ୍ତି । ସେ ସବୁ କଥା ଏହି ପୁସ୍ତକରେ ବିଭିନ୍ନ ସ୍ଥାନରେ ଯଥାସମ୍ଭବ ବିସ୍ତାରିତ ଭାବରେ ଉଲ୍ଲେଖ କରାଯାଇଛି । ତେବେ ତାଙ୍କ ଜୀବନର ଧାରାକ୍ରମିକ ବିବରଣ ଦେବା ପୂର୍ବରୁ କେତେକ ଘଟଣା ସଂପର୍କରେ ତାଙ୍କ ନିଜ ବକ୍ତବ୍ୟର କିଛି କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି । କେତୋଟି ଲିଖିତ ପ୍ରଶ୍ନର ଉତ୍ତର ପ୍ରସଙ୍ଗରେ ସେ ତାଙ୍କ ଜୀବନର ବିଭିନ୍ନ ଘଟଣା ତଥା ନିଜର ନୀତି, ଆଦର୍ଶ, ଆଭିମୁଖ୍ୟ ସମ୍ବନ୍ଧରେ ଯାହା ଯେପରି ଉଲ୍ଲେଖ କରିଥିଲେ, ପାଠକମାନେ ପ୍ରଥମେ ତାହା ଜାଣି ନେବା ଭଲ ହେବ ।

ଅଟଳଜୀ ତାଙ୍କର ଏହି ସଂକ୍ଷିପ୍ତ ଆତ୍ମକଥାରେ ଆହୁରି ଉଲ୍ଲେଖ କରିଛନ୍ତି :

### ।। ମାର୍କ୍ସବାଦରୁ ରାଷ୍ଟ୍ରବାଦ ।।

''ବାପା, ଆର୍ଯ୍ୟ କୁମାରସଭାରେ ଜଣେ ସକ୍ରିୟ କାର୍ଯ୍ୟକର୍ତ୍ତା ଥିଲେ । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ପ୍ରତି ମଧ୍ୟ ତାଙ୍କର ଆକର୍ଷଣ ଥିଲା । ଘରେ ବାପାଙ୍କର ପ୍ରଚୁର ବହି ଥିଲା । ମୁଁ ସେ ସବୁ ବହି ପଢୁଥିଲି । ବାପାଙ୍କ ସାଙ୍ଗରେ ବହୁ କବି ସମ୍ମିଳନୀକୁ

ମଧ୍ୟ ଯାଇଛି । ତେବେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘକୁ ମୋତେ ପ୍ରଥମେ ନେଇ ଯାଇଥିଲେ ନାରାୟଣ ରାଓ ତରଟେ । ଗ୍ୱାଲିୟରରେ ସଂଘ-ପ୍ରଚାରକ ଥିଲେ ସେ । ଛାତ୍ର ଜୀବନରେ ମୁଁ ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ ସହିତ ସଂଶ୍ଳିଷ୍ଟ ନ ଥିଲି । ବିଦ୍ୟାର୍ଥୀ ପରିଷଦ ସେତେବେଳେ ନ ଥିଲା । ମୁଁ ଷ୍ଟୁଡେଣ୍ଟସ୍ ଫେଡ଼ରେସନ ସହିତ ସଂଶ୍ଳିଷ୍ଟ ଥିଲି । ବାମପନ୍ଥୀ ଆନ୍ଦୋଳନ ଏବଂ 'ମାର୍କ୍ସବାଦ ପ୍ରତି ସେତେବେଳେ ମୋର ବିଶେଷ ଦୁର୍ବଳତା ଥିଲା । ମୁଁ ରାଷ୍ଟ୍ର ବିଜ୍ଞାନର ଛାତ୍ର ଥିଲି; ସୁତରାଂ ମାର୍କ୍ସବାଦ ଅଧ୍ୟୟନ ପାଇଁ ଯଥେଷ୍ଟ ଆଗ୍ରହ ଥିଲା ମୋର । କିନ୍ତୁ ପରେ ଗୁରୁଜୀ ତଥା ଡକ୍ଟର ଶ୍ୟାମା ପ୍ରସାଦ ମୁଖାର୍ଜୀ ଓ ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କ ସାହଚର୍ଯ୍ୟ ମୋ ଜୀବନକୁ ସଂପୂର୍ଣ୍ଣ ଘୁରାଇ ଦେଇଥିଲା । ନାରାୟଣ ରାଓ ତରଟେ ମଧ୍ୟ ମୋତେ ହିନ୍ଦୁ ଜାତୀୟତାବାଦ ଓ ଭାରତୀୟତ୍ୱର ଆଦର୍ଶରେ ଅନୁପ୍ରାଣିତ କରିଥିଲେ । ତରଟେଜୀଙ୍କ ବୟସ ଏବେ ପ୍ରାୟ ୮୫-୮୬ ହେବ । ଏବେ ମଧ୍ୟ ସେ ସକ୍ରିୟ ଅଛନ୍ତି । ବିଭିନ୍ନ ସ୍ଥାନରେ ରହିବା ଯୋଗୁ ବହୁ ଭାଷାରେ ସେ ଧୁରୀଣ । ମୁଁ ତାଙ୍କୁ 'ମାମାଜୀ' ବୋଲି ସଂବୋଧନ କରିଥାଏଁ । ୧୯୯୬ ମେ ମାସରେ ମୁଁ ପ୍ରଧାନମନ୍ତ୍ରୀ ହୋଇଥିବା ବେଳେ ସେ ମୋତେ ଏକ ସୁନ୍ଦର ଚିଠି ଲେଖିଥିଲେ ।''

**।। ଭାରତ ଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ ଓ କାରାବାସ ।।**

ଅଟଳଜୀ କିଛି କାଳ ପାଇଁ ଦେଶର ସ୍ୱାଧୀନତା ସଂଗ୍ରାମ, ବିଶେଷକରି 'ଭାରତ ଛାଡ଼' ଆନ୍ଦୋଳନରେ ମଧ୍ୟ ସଂଶ୍ଳିଷ୍ଟ ହୋଇ ପଡ଼ିଥିଲେ । ସେ ସମ୍ବନ୍ଧରେ ପଢ଼ନ୍ତୁ ତାଙ୍କର ନିଜ କଥା :

''ପିଲା ବେଳୁହିଁ ରାଜନୀତି ପ୍ରତି ମୋର ଗୋଟାଏ ଆକର୍ଷଣ ଥିଲା । କାବ୍ୟପ୍ରୀତିର ପାଖାପାଖି ମୋର ଏହି ରାଜନୀତି-ପ୍ରେମର ବିକାଶ ଘଟିଛି । ୧୯୪୨ ମସିହାରେ ଗାନ୍ଧିଜୀ ଯେତେବେଳେ ''ଇଂରେଜ ସରକାର, ଭାରତ ଛାଡ଼'' ବୋଲି ହୁଂକାର ଦେଲେ, ତାହା ମୋତେ ପ୍ରଭାବିତ କରିଥିଲା ଏବଂ ମୁଁ ସେଥିରେ ଯୋଗ ଦାନ କରିଥିଲି । ଗ୍ୱାଲିୟରରେ ଛାତ୍ରମାନଙ୍କୁ ନେଇ ଏହି ଆନ୍ଦୋଳନ ଗଢ଼ି ତୋଳିବା ଦିଗରେ ମୁଁ ଥିଲି ବିଶେଷ ସକ୍ରିୟ । ତେଣୁ ସେ ସମୟରେ ବ୍ରିଟିଶ ସରକାର ମୋତେ ଗିରଫ କରାଯିବା ଲାଗି ଆଦେଶ ଜାରୀ କରିଥିଲେ । ମୋତେ ଗିରଫ କରିବାକୁ ଯେଉଁ ପୋଲିସ୍ କର୍ମଚାରୀଙ୍କୁ ଦାୟିତ୍ୱ ଦିଆଯାଇଥିଲା, ସେ ମୋ ବାପାଙ୍କର ପରିଚିତ ଥିଲେ । ସେ ଆସି ବାପାଙ୍କୁ କହିଲେ- ପୁଅକୁ ସମ୍ଭାଳ, ନଚେତ୍ ତାକୁ ଗିରଫ କରାଯିବ । ମୁଁ ଜାଣେ, ବାପା ନିଜେ ଜଣେ ସରକାରୀ କର୍ମଚାରୀ ଥିଲେ ମଧ୍ୟ ବ୍ରିଟିଶ୍ ରାଜଶକ୍ତିର ବିରୋଧୀ ଥିଲେ । ତେଣୁ ସେ ମୋତେ କିଛି କହି ନଥିଲେ । ତଥାପି କାଳେ ମୋ ଯୋଗୁ ତାଙ୍କ ଚାକିରୀରେ ବ୍ୟାଘାତ ସୃଷ୍ଟି ହେବ, ସେହି କଥା ବିଚାର କରି ମୁଁ ଆମ

ବଂଶର ଆଦି ବାସଭୂମି ବଟେଶ୍ୱରକୁ ଗୋପନରେ ଚାଲିଗଲି ଏବଂ ଆଗ୍ରାରେ ଭାରତଛାଡ଼ ଆନ୍ଦୋଳନକୁ ବଢ଼ାଇବାରେ ଲାଗିଗଲି । କିନ୍ତୁ ବ୍ରିଟିଶ ସରକାରଙ୍କ କୋପଦୃଷ୍ଟିରୁ ରକ୍ଷା ପାଇ ପାରିଲି ନାହିଁ । ମୁଁ ସେତେବେଳେ ନାବାଳକ । ତଥାପି ସରକାର ମୋତେ ଧରି ନେଇ ଜେଲ୍‌ରେ ପୂରାଇ ଦେଲେ । ତାହା ହିଁ ମୋ ଜୀବନର ପ୍ରଥମ କାରାବାସ । ସେଥର ୨୪ ଦିନ ଜେଲ୍‌ରେ ଥିଲି ।

**॥ ସଂଗ୍ରାମୀ ସାମ୍ବାଦିକତା ॥**

''ଜେଲରୁ ଫେରିବା ପରେ ଲକ୍ଷ୍ନୌରେ ରହିଲି ଏବଂ କିଛି କାଳ ପରେ 'ରାଷ୍ଟ୍ରଧର୍ମ' ଓ 'ପାଞ୍ଚଜନ୍ୟ' ପତ୍ରିକାର ସଂପାଦନା କାର୍ଯ୍ୟରେ ମୋତେ ବ୍ୟାପୃତ ରହିବାକୁ ପଡ଼ିଲା । 'ରାଷ୍ଟ୍ରଧର୍ମ'ରେ ମୋର ସରକାରବିରୋଧୀ ଲେଖା ଯୋଗୁ ପତ୍ରିକାଟିକୁ ସରକାର 'ନିଷିଦ୍ଧ' ଘୋଷଣା କରିବା ସଂଗେ ସଂଗେ ତାର ଅଫିସକୁ ସିଲ୍ କରି ଦେଲେ, ବହୁ କର୍ମଚାରୀଙ୍କୁ ମଧ୍ୟ ଗିରଫ କରି ନେଲେ । ମୁଁ କିନ୍ତୁ ଶାସକମାନଙ୍କ ଆଖିରେ ଧୂଳି ଦେଇ ଆହ୍ଲାବାଦକୁ ପଳାଇଗଲି ଏବଂ ସେଠାରେ ଆତ୍ମଗୋପନ କରି ରହିଲି । ସେଠାରୁ ମୁଁ 'ସ୍ୱଦେଶ ଦୈନିକ' ନାମରେ ଆଉ ଏକ କାଗଜ ମଧ୍ୟ ବାହାର କଲି । ସାତ ଦିନ ପରେ ସରକାର ତାର ଅଫିସ୍‌ରେ ମଧ୍ୟ ତାଲା ଝୁଲାଇ ଦେଲେ । ତେଣୁ ମୁଁ ସେଠାରୁ ଗୋପନରେ କାଶୀ ଚାଲିଗଲି ଓ ସେଠାରୁ 'ଚେତନା' ନାମରେ ଏକ ପତ୍ରିକାର ସଂପାଦନା କାର୍ଯ୍ୟ ଆରମ୍ଭ କଲି ।

ରାଜନୀତିକୁ ଆସିବା ପରେ ମଧ୍ୟ ମୋ ଜୀବନର ସିଂହ ଭାଗରେ ରହିଥିଲା କବିତା, ସାହିତ୍ୟ ଓ ସାଂବାଦିକତା । ଲକ୍ଷ୍ନୌରୁ ଦିଲ୍ଲୀ ଯିବା ପରେ 'ବୀର ଅର୍ଜୁନ' ନାମର ଏକ ପତ୍ରିକାର ସଂପାଦନା ଦାୟିତ୍ୱ ନେଇଥିଲି । ବର୍ତ୍ତମାନ ସୁଦ୍ଧା ଏ ପତ୍ରିକାଟି ପ୍ରକାଶ ପାଉଛି । ତାର ସେ କାଟତି ଆଜି ଆଉ ବେଶୀ ନାହିଁ । ଏ କାଗଜଟି ସହିତ ମୋ ଜୀବନର ବହୁ ସ୍ମୃତି ଜଡ଼ିତ ରହିଛି ।

**॥ ରାଜନୀତିକ ଗୁରୁ ଶ୍ୟାମାପ୍ରସାଦ ॥**

ମୋର ରାଜନୀତିକ ଜୀବନ ଏକ ନୂତନ ମାତ୍ରା ପାଇଥିଲା, ଯେତେବେଳେ ୫୩ ମସିହା ମେ'ମାସରେ ମୁଁ ଡଃ ଶ୍ୟାମା ପ୍ରସାଦ ମୁଖାର୍ଜୀଙ୍କ ପି.ଏ. ରୂପେ ମନୋନୀତ ହେଲି । ଜନସଂଘର ରାଜନୀତିରେ ସେତିକିବେଳେ ହିଁ ମୋର ପ୍ରଥମ ପ୍ରବେଶ ବୋଲି ଧରାଯାଏ । ଡଃ ମୁଖାର୍ଜୀଙ୍କର ସ୍ନେହ-ପ୍ରସାଦ ମୁଁ ଲାଭ କରିଛି, ସେଥିଲାଗି ମୁଁ ଭାଗ୍ୟବାନ୍ । ସେଭଳି ଜଣେ କର୍ମଠ ନିଷ୍ଠାବାନ ଜନନେତା, ବାଗ୍ମୀ ଓ ଦେଶପ୍ରେମୀ ପୁରୁଷ ମୋ ଜୀବନରେ ମୁଁ ଆଉ ଦେଖିନାହିଁ । ମୁଁ ତାଙ୍କର ସଚିବ ଥିବା ଯୋଗୁ ତାଙ୍କ ସହ ବହୁ ସ୍ଥାନ ବୁଲିଛି । ବହୁ ସ୍ଥାନରେ ଜନସଭାର ବ୍ୟବସ୍ଥା ମଧ୍ୟ ମୋତେ କରିବାକୁ ପଡ଼ିଥାଏ । ତାଙ୍କର ବକ୍ତୃତା ସବୁ ଶୁଣି ମୁଁ ମୁଗ୍ଧ ହୋଇଯାଏ । ସେ

ମଧ ଅନେକ ସମୟରେ ତାଙ୍କ ସଭାରେ ବକ୍ତୃତା ଦେବା ଲାଗି ମୋତେ ପରାମର୍ଶ ଦିଅନ୍ତି ଓ ମୁଁ ମଧ ବେଳେବେଳେ ଭାଷଣ ଦିଏଁ । ପରେ ବୁଝିଲି ମୋତେ ନିଜ ଭଳି ଗଢ଼ି ତୋଳିବା ଉଦ୍ଦେଶ୍ୟରେ ହିଁ ସେ ଏପରି କରୁଥିଲେ । ଆଜି ଯଦି ବାଗ୍ମୀ ହିସାବରେ ମୋର କିଛି ସୁନାମ ହୋଇଥାଏ, ତେବେ ସେଥିଲାଗି ଡଃ ଶ୍ୟାମା ପ୍ରସାଦ ମୁଖାର୍ଜୀ ଷୋଳ ଅଣା ଦାୟୀ ।''

## ।। ପ୍ରଥମ ନିର୍ବାଚନୀ ପ୍ରତିଦ୍ୱନ୍ଦିତା ।।

ସଂସଦୀୟ ନିର୍ବାଚନ-ପ୍ରତିଦ୍ୱନ୍ଦିତା କ୍ଷେତ୍ରରେ ଅଟଳଜୀଙ୍କର ପ୍ରଥମ ଅଭିଜ୍ଞତା ହୋଇଥିଲା ୧୯୫୫ରେ । ଏ ସଂକ୍ରାନ୍ତରେ ସେ କହନ୍ତି : ''୧୯୫୫ ମସିହାରେ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ ଲୋକସଭାର ସଦସ୍ୟପଦରୁ ଇସ୍ତଫା ଦେଲେ । ସେ ଥିଲେ ଲକ୍ଷ୍ନୌର ପାର୍ଲାମେଣ୍ଟ ସଭ୍ୟା । ରାଷ୍ଟ୍ରଦୂତ ରୂପେ ନିଯୁକ୍ତ ହେଲାପରେ ସେ ଏହି ପଦ ତ୍ୟାଗ କରିଥିଲେ । ତେଣୁ ଲକ୍ଷ୍ନୌରେ ଉପନିର୍ବାଚନ ହେଲା । ପ୍ରାର୍ଥୀ ନ ମିଳିବା ଯୋଗୁ ଜନସଂଘ ପକ୍ଷରୁ ମୋତେ ହଠାତ୍ ସେଠାରୁ ଠିଆ କରାଇ ଦିଆଗଲା । ସେତେବେଳେ ଆମର ନା ଥିଲା କିଛି ସମ୍ବଳ, ନା ଥିଲା ସାଧନ । ସୁତରାଂ ଯାହା ହେବାର କଥା, ତାହାହିଁ ହେଲା । ତେବେ ଉପନିର୍ବାଚନରେ ଜିଣି ନପାରିବା ଯୋଗୁ ମୁଁ ବିଶେଷ ଦୁଃଖିତ ହୋଇ ନଥିଲି । ମୋର ଉତ୍ସାହରେ ମଧ କିଛି ଭଟା ପଡ଼ି ନଥିଲା ।

## ।। ପ୍ରଥମ ଲୋକସଭା ପ୍ରବେଶ ।।

୧୯୫୭ ମସିହାରେ ଅନୁଷ୍ଠିତ ହେଲା ଦେଶର ଦ୍ୱିତୀୟ ସାଧାରଣ ନିର୍ବାଚନ । ଏଥର ମୋତେ ଉତ୍ତର ପ୍ରଦେଶର ବଳରାମପୁରରୁ ଲୋକସଭା ପାଇଁ ଜନସଂଘର ପ୍ରାର୍ଥୀ କରାଗଲା । ସେଠାରୁ ଜିତି ମୁଁ ପ୍ରଥମ ଥର ଲାଗି ଲୋକସଭାରେ ପ୍ରବେଶ କଲି । ଯେଉଁଦିନ ପ୍ରଥମେ ଲୋକସଭାରେ ଭାଷଣ ଦେଇଥିଲି, ସେ ଦିନଟା ମୋର ଆଜି ବି ମନେ ଅଛି । ମୁଁ ଇଂରାଜୀ ପରିବର୍ତ୍ତେ ହିନ୍ଦୀରେ ଭାଷଣ ଦେଇଥିଲି । କିନ୍ତୁ ହିନ୍ଦୀରେ ନ କହିବା ଲାଗି ମୋତେ ସେତେବେଳେ ଅନେକେ ପରାମର୍ଶ ଦେଇଥିଲେ । ତା'ଛଡ଼ା ସେତେବେଳେ ପାର୍ଲିଆମେଣ୍ଟରେ ହିନ୍ଦୀରେ ଭାଷଣ ଦେବାର ପ୍ରଥା ମଧ ଚାଲୁ ହୋଇ ନଥିଲା । ତଥାପି ହିନ୍ଦୀରେ ଭାଷଣ ଦେବା ପାଇଁ ମୋର ଗୋଟାଏ ଜିଦ୍ ଥିଲା ଏବଂ ମୁଁ ତାହାହିଁ କଲି ।

## ।। ସଂସଦରେ ଚାଳିଶ ବର୍ଷ ।।

୧୯୫୭ରୁ ୭୭ପର୍ଯ୍ୟନ୍ତ ମୁଁ ଜନସଂଘ ସଂସଦୀୟ ଦଳର ନେତା ଥିଲି । ୬୨ରେ ମୁଁ ରାଜ୍ୟସଭାର ସଦସ୍ୟ ମନୋନୀତ ହୋଇଥିଲି । ୬୭ରେ ପୁଣି ମୁଁ ଚତୁର୍ଥ ଲୋକସଭାର ସଦସ୍ୟ ହେଲି । ୬୮ରୁ ୭୩ ପର୍ଯ୍ୟନ୍ତ ପୁନରାୟ ମୁଁ ୫ମ ଲୋକସଭାର ସଭ୍ୟ ହେଲି ।

୭୭ରେ ଷଷ୍ଠ ଲୋକସଭା ଓ ୮୦ରେ ୭ମ ଲୋକସଭା ନିର୍ବାଚନରେ ମଧ୍ୟ ମୁଁ ଜୟ ଲାଭ କରିଥିଲି । ତେବେ ୮୪ର ନିର୍ବାଚନରେ ଇନ୍ଦିରାଜୀଙ୍କ ହତ୍ୟାକାଣ୍ଡ ଯୋଗୁ ମୋତେ ହାରିଯିବାକୁ ପଡ଼ିଥିଲା ବିରୋଧୀ ପକ୍ଷର ଅନ୍ୟ ବହୁ ନେତାଙ୍କପରି । ପରେ ଅବଶ୍ୟ ମୁଁ ପୁଣିଥରେ ରାଜ୍ୟସଭାର ସଭ୍ୟ ହୋଇଥିଲି । କିନ୍ତୁ ୮୯,୯୧ ଓ ୯୬ ନିର୍ବାଚନରେ ଜିତି ମୁଁ ଲୋକସଭାକୁ ଆସିଥିଲି । ସଂସଦରେ ୪୦ବର୍ଷରୁ ଅଧିକ କାଳ ଧରି ମୁଁ ରହି ଆସିଲିଣି । (ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଗତ ବର୍ଷ "ସଂସଦମେ ଚାର୍ ଦଶକ" ନାମରେ ଶ୍ରୀଯୁକ୍ତ ବାଜପେୟୀଙ୍କର ଏକ ପୁସ୍ତକ ପ୍ରକାଶ ପାଇଛି, ଯେଉଁଥିରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅଭିଭାଷଣଗୁଡ଼ିକ ସଂକଳିତ ହୋଇଛି ।)

॥ ପ୍ରଥମ ଶ୍ୱେତପତ୍ର ॥

୧୯୫୭ରେ ଯେତେବେଳେ ମୁଁ ପ୍ରଥମେ ଲୋକସଭାରେ ପ୍ରବେଶ କଲି, ସେତେବେଳେ ଜନସଂଘର ସଦସ୍ୟ ସଂଖ୍ୟା ଥିଲା ଚାରି । ଏମାନେ ହେଲେ: ପ୍ରେମଜୀଭାଇ ଆସାର, ଉତ୍ତମ ରାଓ ପାଟିଲ୍, ଶିବାଦିନ୍ ଏବଂ ମୁଁ । ୧୯୬୨ରେ ଚୀନ୍‌ର ଆକ୍ରମଣ ଯୋଗୁଁ ସାରା ଦେଶରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହୋଇଥିଲା । ସେତେବେଳେ ଆମେ ଲୋକସଭାରେ ବିଶେଷ ଭାବେ ସକ୍ରିୟ ହୋଇ ଉଠିଥିଲୁଁ । ଚୀନା ବ୍ୟାପାର ସଂପର୍କରେ ଏକ ଶ୍ୱେତପତ୍ର ବା ହ୍ୱାଇଟ ପେପର ପ୍ରକାଶ କରିବା ନିମିତ୍ତ ମୁଁ ସରକାରଙ୍କ ନିକଟରେ ଦୃଢ଼ ଦାବି ଜଣାଇଥିଲି । ତାହାହିଁ ଥିଲା ଏ ପ୍ରକାର ଦାବି କରାଯିବାର ପ୍ରଥମ ଘଟଣା । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ସେ ଦାବିକୁ ମାନିନେଇ ଏକ ଶ୍ୱେତପତ୍ର ପ୍ରକାଶ କଲେ ଏବଂ ତାହାହିଁ ଥିଲା ଲୋକସଭାର ଇତିହାସରେ ପ୍ରଥମ ଶ୍ୱେତପତ୍ର ।

॥ କଂଗ୍ରେସରେ ମିଶାଇବାର ଉଦ୍ୟମ ॥

ନେହେରୁଜୀଙ୍କ ସହିତ ବିଭିନ୍ନ ପ୍ରଶ୍ନ ଘେନି ମୋର ଯଥେଷ୍ଟ ରାଜନୈତିକ ମତଭେଦ ଓ ବିତର୍କ ରହିଥିଲେ ମଧ୍ୟ ସେ ମୋର ତଥା ଅନ୍ୟ ବିରୋଧୀ ନେତାମାନଙ୍କ ଭାଷଣ ମନୋଯୋଗ ସହକାରେ ଶୁଣୁଥିଲେ । ମୁଁ ଭାଷଣ ଦେବାକୁ ଉଠୁଥିବା ବେଳେ ଥରେ ଥରେ ସେ ରାଜ୍ୟସଭାରେ ଉପସ୍ଥିତ ଥିଲେ ମଧ୍ୟ ଲୋକସଭାକୁ ଚାଲି ଆସୁଥିଲେ । ପଣ୍ଡିତ ନେହେରୁ ଶାନ୍ତି ଓ ସଦ୍‌ଭାବର ପ୍ରତୀକ ଥିଲେ ବୋଲି ମୋର ବରାବର ମନେ ହୋଇଛି । ସେଇଥିପାଇଁ ତାଙ୍କର ମୃତ୍ୟୁ ପରେ ମୁଁ କହିଥିଲି : 'ଶାନ୍ତି ଆଜି ଅଶାନ୍ତ ହୋଇଗଲା' । କଂଗ୍ରେସ ଦଳର ନୀତି ଓ ଆଭିମୁଖ୍ୟ ସହିତ ଆମର ଯେତେ ଯାହା ସଂଘାତ ଥାଉ ନା କାହିଁକି, ତାଙ୍କ ସହିତ ବ୍ୟକ୍ତିଗତ ଭାବରେ ମୋର କୌଣସି ସଂଘାତ ନ ଥିଲା ।

ଇନ୍ଦିରା ଗାନ୍ଧୀଙ୍କ ଅମଳରେ ମୋତେ ଜନସଂଘରୁ କଂଗ୍ରେସ ଦଳକୁ ନେଇଯିବା ନିମନ୍ତେ ଗୋଟାଏ ଯୋର୍‌ସୋର ଉଦ୍ୟମ ହୋଇଥିଲା । ସେ ସମୟରେ ବହୁ ନେତା

କଂଗ୍ରେସରେ ଯୋଗ ଦେବା ପାଇଁ ମୋ ଉପରେ ଚାପ ପକାଇଥିଲେ । ଇନ୍ଦିରାଜୀଙ୍କ ରାଜଗୁରୁ ଡ଼ି.ପି. ମିଶ୍ର, ନେହେରୁଜୀଙ୍କ ମୃତ୍ୟୁ ପରେ ଇନ୍ଦିରାଙ୍କ ନିର୍ଦ୍ଦେଶକ୍ରମେ ମୋ ନିକଟକୁ ବାରମ୍ବାର ଏ ନେଇ ଆଲୋଚନା କରିବାକୁ ଆସିଥିଲେ । ଡ଼ି.ପି. ମିଶ୍ର ମୋ ପରି ଜଣେ କାନ୍ୟକୁବ୍‌ଜ-ବ୍ରାହ୍ମଣ ଥିବାରୁ ସମ୍ଭବତଃ ତାଙ୍କୁ ମୋତେ ପ୍ରବର୍ତ୍ତାଇବା ନିମନ୍ତେ ନିଯୋଗ କରାଯାଇଥିଲା । ମୋ ସହିତ ପୂର୍ବରୁ ତାଙ୍କର ପରିଚୟ ଓ ଯୋଗାଯୋଗ ମଧ ରହିଥିଲା । କିନ୍ତୁ ନିଜର ଜୀବନାଦର୍ଶ ଦୃଷ୍ଟିରୁ କଂଗ୍ରେସରେ ଯୋଗ ଦେବା ମୋ ପକ୍ଷରେ କୌଣସି ମତେ ସମ୍ଭବ ନ ଥିଲା ।

**।। ନୀତିଗତ ଓ ବ୍ୟକ୍ତିଗତ ବିଚାର ।।**

କେବଳ ପଣ୍ଡିତ ନେହେରୁଙ୍କୁ ନୁହେଁ, ବହୁ କାରଣରୁ ମୁଁ ସ୍ୱର୍ଗତ ଇନ୍ଦିରା ଗାନ୍ଧୀଙ୍କୁ ମଧ ଯଥେଷ୍ଟ ଶ୍ରଦ୍ଧା କରୁଥିଲି । କିନ୍ତୁ ଲୋକସଭାରେ ଥରେ ମୁଁ ତାଙ୍କୁ ମା' ଦୁର୍ଗାଙ୍କ ସହିତ ତୁଳନା କରିଥିଲି ବୋଲି ଯାହା ପ୍ରଚାର କରାଯାଏ, ତାହା ଠିକ୍ ନୁହେଁ । ଅସଲ କଥା ହେଲା, ମୁଁ ଯେଉଁ ସଂସଦୀୟ ରାଜନୀତିରେ ବିଶ୍ୱାସ କରି ଆସିଛି, ସେଥିରେ ବ୍ୟକ୍ତିଗତ ଭାବେ କାହାରି କୁତ୍ସାରଟନା ବା କାହାପ୍ରତି ବିଦ୍ୱେଷ ପୋଷଣ କରିବାର କୌଣସି ସ୍ଥାନ ନାହିଁ । ଇନ୍ଦିରାଜୀଙ୍କୁ ମୁଁ "ମା' ଦୁର୍ଗା" ବୋଲି କହିନାହିଁ ସତ; କିନ୍ତୁ ତାଙ୍କର ରାଜନୈତିକ ଯୋଗ୍ୟତାକୁ ଅସ୍ୱୀକାର କରିଥାନ୍ତି କିପରି ? ତାଙ୍କୁ ବା ତା' ପୂର୍ବରୁ ପଣ୍ଡିତ ନେହେରୁଙ୍କୁ କୌଣସି କାର୍ଯ୍ୟ ପାଇଁ ପ୍ରଶଂସା କରିବାର ଅର୍ଥ ନୁହେଁ ଯେ, ମୁଁ ତାଙ୍କ ଦଳ ବା ସରକାରକୁ ପ୍ରଶଂସା ଅଥବା ସମର୍ଥନ କରିଥିଲି । କଂଗ୍ରେସର ନୀତି ଓ ଆଭିମୁଖ୍ୟ ସହିତହିଁ ଆମର ବିରୋଧ । ଅନ୍ୟମାନଙ୍କ ପରି ମୁଁ ତାହା ବ୍ୟକ୍ତିଗତ କୁତ୍ସାରଟନାର ସ୍ତରକୁ କେବେ ନିଏ ନାହିଁ । କମ୍ୟୁନିଷ୍ଟମାନେ ତ ଇନ୍ଦିରା ଗାନ୍ଧୀଙ୍କୁ "ଡାହାଣୀ" ବୋଲି କହୁଥିଲେ; ପଶ୍ଚିମବଙ୍ଗରେ ନିର୍ବାଚନ ବେଳେ ତାଙ୍କୁ "ଡାହାଣୀ" ସଜାଇ ପ୍ରାଚୀରମାନଙ୍କରେ ଚିତ୍ର ଅଙ୍କାଯାଇଥିଲା । ଅଥଚ କଂଗ୍ରେସ ସହିତ ଭିତରେ ଭିତରେ ସବୁଠାରୁ ବେଶୀ ଯୋଗସୂତ୍ର ରକ୍ଷା କରି ଆସିଛନ୍ତି ଏହି କମ୍ୟୁନିଷ୍ଟମାନେ । ୧୯୭୫ରେ ଜାରୀ ହୋଇଥିବା ଜରୁରୀ ପରିସ୍ଥିତିକୁ ମଧ ଭାରତୀୟ କମ୍ୟୁନିଷ୍ଟ ଦଳ ସମର୍ଥନ ଜଣାଇଥିଲା । ଆଜି ବି କଂଗ୍ରେସ ସହିତ କମ୍ୟୁନିଷ୍ଟମାନଙ୍କର ପ୍ରକାଶ୍ୟ ମିଳାମିଶା ସବୁଠାରୁ ବେଶୀ ।

ଏଇ ଧରନ୍ତୁ ଆମ ଜ୍ୟୋତିବାବୁଙ୍କ କଥା । ୧୯୯୬ରେ ମୁଁ ଯେତେବେଳେ ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଲି, ଜ୍ୟୋତିବାବୁ କଲିକତାଠାରେ କହିଲେ, ସେ ମୋତେ ସେଥିଲାଗି ଅଭିନନ୍ଦନ ଜଣାଇ ପାରିବେ ନାହିଁ । ତାଙ୍କ ପ୍ରତି ସମସ୍ତ ଶ୍ରଦ୍ଧା ଓ ସମ୍ମାନ ଜଣାଇ ମୁଁ ପଚାରୁଛି : ଏଟା କ'ଣ ସଂସଦୀୟ ରାଜନୀତି ? ଏହି ପ୍ରକାର ଭଣ୍ଡ ରାଜନୀତିକୁ, ଏ ପ୍ରକାର ସଂକୀର୍ଣ୍ଣତାକୁ ମୁଁ କେବେ ବି ସମର୍ଥନ କରି ପାରିବି ନାହିଁ । କାହାରିକୁ ସମ୍ମାନ ବା ଅଭିନନ୍ଦନ ଜଣାଇଲେ, ଯିଏ ଜଣାଉଛି, ସେହିଁ ସମ୍ମାନିତ

ହୋଇଥାଏ । ସୁତରାଂ ଜ୍ୟୋତିବାବୁ ନିଜେହିଁ ନିଜର ଅସମ୍ମାନ କରିଛନ୍ତି । ଭିତରେ କୋଳାକୋଳି, ଆଉ ବାହାରେ ଗାଳି-ଫଜିତ୍ ? ଛିଃ ।

॥ ସଂସଦୀୟ ବିତର୍କର ମାନ ॥

ଲୋକସଭାରେ ପୂର୍ବର ପରିବେଶ ଆଜି ଆଉ ନାହିଁ । ଏବେ ସେଠାରେ ବିତର୍କର ଗୁଣଗତ ମାନ ମଧ ଅନେକ କମିଯାଇଛି । ଲକ୍ଷ୍ୟ କରାଯାଉଛି, ଆମର ସଂସଦ ଏବେ 'ଲେସ୍ ଫର୍ ଡ଼ିସ୍କସନସ୍, ମୋର ଫର୍ ନଏଜ୍' । ଅତୀତରେ ମଧ ଆଜି ପରି ବହୁ ଦୁର୍ନୀତି ଓ ଭ୍ରଷ୍ଟାଚାର ସଂକ୍ରାନ୍ତ ବିତର୍କ ସଂସଦରେ କରାଯାଉଛି; କିନ୍ତୁ ତାହା ଆଜି ପରି ବିଶୃଙ୍ଖଳ ନ ଥିଲା । ଏକଦା ମୁଁ ଜିପ୍ କେଲେଙ୍କାରୀ ବିଷୟରେ ବିତର୍କ ଉତ୍ଥାପନ କରିଥିଲି । କେଉଁଠି ସେ ଜିପ୍ କେଲେଙ୍କାରୀ ଆଉ କେଉଁଠି ବୋଫର୍ସ ତୋପ କିଣା ବାବଦରେ ୬୪ କୋଟି ଟଙ୍କାର ଲାଞ୍ଚ କାରବାର ସଂକ୍ରାନ୍ତ କେଲେଙ୍କାରୀ ! ତା'ପରେ ପୁଣି ୫ ହଜାର କୋଟି ଟଙ୍କାର ଶେୟାର କେଲେଙ୍କାରୀ ! ମୋତେ ତ ଏ ସବୁ ଭ୍ରଷ୍ଟାଚାର ନେଇ ଲୋକସଭାରେ କହିବାକୁ ଆଦୌ ଭଲ ଲାଗୁ ନଥିଲା । ମୁଁ ବରାବର ଚେଷ୍ଟା କରୁଥିଲି ଯେପରି ମୌଳିକ ନୀତି ଓ ଆଦର୍ଶର ପ୍ରଶ୍ନ ନେଇ ଆଲୋଚନା କରାଯାଉ । କିନ୍ତୁ ଅନେକ ସାଂସଦ ସଦନରେ ବିଭିନ୍ନ ଦୁର୍ନୀତି କାରବାର ନେଇ ପ୍ରଶ୍ନ ଉଠାଇ ସଂବାଦପତ୍ରରେ ହେଡ୍ ଲାଇନ୍ ହେବାର ଚେଷ୍ଟା କରୁଥିଲେ । କିନ୍ତୁ ଆଜିକାଲି ତ ପରିସ୍ଥିତି ଏପରି ହୋଇଛି ଯେ, 'ଘୋଟାଲା' ବା ଦୁର୍ନୀତି କାରବାର କଥା ନକହି ଲୋକସଭାରେ ରହି ହେବନାହିଁ । ପ୍ରକୃତରେ ରାଜନୀତିକ ଲୋକଙ୍କ ମଧରେ ଆଜି ଏତେ ପ୍ରକାରର ଦୁର୍ନୀତି ବସା ବାନ୍ଧିଛି ଯେ, ସେ କଥା ନ କହି ଚାରା ନାହିଁ ।

ସେ ସମୟରେ ଯେଉଁମାନେ କଂଗ୍ରେସ ସରକାରଙ୍କୁ ନାନା ଭାବରେ ଅପଦସ୍ଥ ଓ ବିପର୍ଯ୍ୟସ୍ତ କରୁଥିଲେ, ସେମାନଙ୍କ ମଧରେ ଅନ୍ୟତମ ଥିଲେ ସ୍ୱର୍ଗତ ନାଥ ପାଇ, ଏଇଚ୍. ଭି. କାମାଥ, ଜେ. ବି. କୃପାଲନୀ, ରାମ ମନୋହର ଲୋହିଆ ଓ ଜ୍ୟୋତିର୍ମୟ ବସୁ ପ୍ରମୁଖ । କେହି କେହି ଅବଶ୍ୟ ବିଭିନ୍ନ ସ୍କାଣ୍ଡାଲ୍ ପ୍ରକାଶ କରି ଖବର କାଗଜରେ ହେଡ୍ ଲାଇନ୍ ହେବା ପାଇଁ ବିଶେଷ ତତ୍ପର ଥିଲେ । ସେ ଯାହା ହେଉ, ସଂସଦୀୟ ରାଜନୀତିର ଯେଉଁ ଘରାନାରେ ମୁଁ ବିଶ୍ୱାସ କରେଁ, ସେ ଘରାନା ଆଜି ଆଉ ନାହିଁ । ବାଂଲାଦେଶ ବ୍ୟାପାରରେ ଇନ୍ଦିରା ଗାନ୍ଧିଙ୍କ ସାଫଲ୍ୟକୁ ମୁଁ ବିଶେଷ ପ୍ରଶଂସା କରିଥିଲି ବୋଲି ଅନେକେ ଅସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ମୋର ମନେ ହୋଇଥିଲା ସେ ସମୟର ଜାତୀୟତାବାଦୀ ରାଜନୀତିରେ ସଂକୀର୍ଣ୍ଣତାର ଉର୍ଦ୍ଧ୍ୱକୁ ଉଠି ତାଙ୍କୁ ହାତତାଳି ଦେବା ଉଚିତ ଥିଲା । ୯୦ ମସିହାରେ ଜାତୀୟ ଫ୍ରଣ୍ଟ ସରକାର ଗଠନ ବେଳେ ବାମପନ୍ଥୀ ଦଳମାନେ ବି.ଜେ.ପି. ସଂପର୍କରେ ନାନା ପ୍ରକାର କୁତ୍ସାମୂଳକ ସମାଲୋଚନା କରିଥିଲେ । ମୁଁ ସେମାନଙ୍କୁ କହିଥିଲି : ପୋଲାଣ୍ଡରେ କମ୍ୟୁନିଷ୍ଟ ଏବଂ ସଲିଡାରିଟୀ ପାର୍ଟି ହାତରେ

ହାତ ମିଶାଇ ଚାଲିଛନ୍ତି କିପରି ? ସେମାନେ ଯଦି ଚାଲି ପାରନ୍ତି, ତେବେ ଆମେ ନ ପାରିବା କାହିଁକି ?

ଦେଶରେ ଏକ ଜାତୀୟ ସରକାର ଗଠନ ବ୍ୟାପାରରେ ମୋର ସମର୍ଥନ ବରାବର ରହିଥିଲା; ଆଜି ବି ରହିଛି । ପ୍ରାକ୍ତନ୍ ରାଷ୍ଟ୍ରପତି ଶ୍ରୀଯୁକ୍ତ ଆର୍, ଭେଙ୍କଟରମଣ ନିଜେ ମଧ୍ୟ ଏକ ସମୟରେ ଏ ପ୍ରକାର ଏକ ସରକାର ଗଠନର ସପକ୍ଷରେ ଥିଲେ । କିନ୍ତୁ ସେ ନେଇ ଏକ ଅପପ୍ରଚାରର କରାଯାଇଥିଲା ଯେ, ଶ୍ରୀ ଭେଙ୍କଟରମଣ କୁଆଡ଼େ ନିଜେ ପ୍ରସ୍ତାବିତ ଜାତୀୟ ସରକାରର ପ୍ରଧାନ ହେବାକୁ ଚାହିଁଥିଲେ । ଏହା ଆଦୌ ଠିକ୍ ନୁହେଁ । ବିଶ୍ୱନାଥ ପ୍ରତାପ୍ ସିଂହଙ୍କର ଜାତୀୟ ସାମ୍ମୁଖ୍ୟ ସରକାର ଗଠନ ପୂର୍ବରୁ ଆମେ ଏକ 'ଜାତୀୟ ସମନ୍ୱୟ ସରକାର' ଗଠନ ପ୍ରସ୍ତାବ ଦେଇଥିଲୁଁ । ବି.ଜେ.ପି. ପକ୍ଷରୁ ମୁଁ ଏ ବିଷୟରେ ସାମ୍ବାଦିକ ସମ୍ମିଳନୀ ଡକାଇ ପ୍ରସ୍ତାବ ଦେଇଥିଲି । ଆଜି ଖୋଲି କରି କହୁଛି, ଗୋଟାଏ ସମୟରେ ଆମେ ବରଂ ପୂର୍ବତନ ରାଷ୍ଟ୍ରପତି ଡ଼ଃ ଶଙ୍କର ଦୟାଲ ଶର୍ମାଙ୍କୁ ପ୍ରସ୍ତାବିତ ଜାତୀୟ ସରକାରର ପ୍ରଧାନ କରାଯିବା କଥା ଭାବିଥିଲୁଁ; କିନ୍ତୁ କେତେବେଳେ ହେଲେ ବି ଶ୍ରୀ ଭେଙ୍କଟରମଣଙ୍କ ନାମ ନେଇ ଆଲୋଚନା କରାଯାଇ ନଥିଲା । ଏଟା ପୂରାପୂରି ମିଥ୍ୟା ପ୍ରଚାର ଥିଲା ।

ସଂସଦରେ ଦୀର୍ଘ କାଳ ଅତିବାହିତ କରିଥିବା ଯୋଗୁଁ ମୋତେ ଜଣେ ଶ୍ରେଷ୍ଠ ସାଂସଦ ରୂପେ ସମ୍ମାନିତ କରାଯାଇଛି । ଏଥିଲାଗି ମୁଁ ସମସ୍ତଙ୍କ ନିକଟରେ କୃତଜ୍ଞ । ଏହି ସମ୍ମାନ ଲାଭ କରି ମୁଁ ପ୍ରକୃତରେ ଖୁସି ହୋଇଥିଲି; କାରଣ ମୁଁ ମଧ ଜଣେ ରକ୍ତ-ମାଂସର ସାଧାରଣ ମଣିଷ । କେହି ପ୍ରଶଂସା କଲେ ସ୍ୱାଭାବିକ ଭାବେ ମୁଁ ଖୁସି ହୋଇଥାଏଁ ସତ; କିନ୍ତୁ ଆଜିକାଲି ସଂସଦରେ ଯେ ପ୍ରକାର ପରିବେଶ ବେଳେବେଳେ ସୃଷ୍ଟି ହେଉଛି, ତାହା ମୋତେ ଭଲ ଲାଗୁନାହିଁ । ହିନ୍ଦୀରେ ଭଲ ଭାଷଣ ଦେବାର ଯୋଗ୍ୟ ସାଂସଦଙ୍କ ସଂଖ୍ୟା କ୍ରମଶଃ କମି ଯାଉଛି । ନୂତନ ପ୍ରଜନ୍ମ ହିନ୍ଦୀରେ ଭାଷଣ ଦେବା ପରିବର୍ତ୍ତେ ଇଂରାଜୀରେ ଭାଷଣ ଦେବାରେ ଅଧିକ ସ୍ୱାଚ୍ଛନ୍ଦ୍ୟ ବୋଧ କରୁଛନ୍ତି । ୧୯୭୭ ମସିହାରେ ଦେଶର ବିଦେଶ ମନ୍ତ୍ରୀ ରୂପେ ମୁଁ ଜାତିସଂଘରେ ହିନ୍ଦୀ ଭାଷାରେ ଭାଷଣ ଦେଇଥିଲି । ସେହି ଭାଷଣରେ ମୁଁ ସେଦିନ ବିଶ୍ୱବାସୀଙ୍କୁ ଜଣାଇ ଆସିଥିଲି 'ବସୁଧୈବ କୁଟୁମ୍ବକମ୍'ର ଧାରଣା ଭାରତବର୍ଷ ନିକଟରେ ବହୁ ପ୍ରାଚୀନ । ଆମ ଦେଶର ମୁନି-ଋଷି, ମନୀଷୀ-ଦାର୍ଶନିକ ସମସ୍ତେ ଏହି ବିଶ୍ୱ-ମାନବତାର କଥା ହିଁ ଚିରକାଳ କହି ଆସିଛନ୍ତି ।

ଜାତିସଂଘରୁ ଫେରିବା ପରେ ମୋତେ ଏଥିଲାଗି ଦିଲ୍ଲୀରେ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ଏହି ଅନୁଷ୍ଠାନ୍‌ରେ ସଭାପତିତ୍ୱ କରିଥିଲେ ବାବୁ ଜଗଜ୍ଜୀବନ ରାମ । ମୋର ହିନ୍ଦୀ ଭାଷଣ ପାଇଁ ସେଦିନ ମୋତେ ଅଭିନନ୍ଦନ ଜଣାଇଥିବା ବ୍ୟକ୍ତିମାନଙ୍କ

ମଧ୍ୟରୁ କେତେଜଣ ଇଂରାଜୀରେ ହିଁ ଭାଷଣ ଦେଇଥିଲେ । ମୁଁ ସେମାନଙ୍କୁ କହିଥିଲି : 'ହିନ୍ଦୀ କି ବାତ୍ ମତ୍ କରୋ, ହିନ୍ଦୀ ମେ ବାତ୍ କରୋ' ।

**।। ବିବାହ ପାଇଁ ସମୟ ମିଳିଲା ନାହିଁ ! ।।**

'ବର୍ତ୍ତମାନ' ସମ୍ବାଦ ପତ୍ରର ପ୍ରତିନିଧି ଜୟନ୍ତ ଘୋଷାଲ ସେଦିନ ଆସି ମୋତେ ଯେତେବେଳେ କହିଲେ ଯେ ଏଥର ଶାରଦୀୟ 'ବର୍ତ୍ତମାନ'ରେ ମୋତେ ନିଜ କଥା ଲେଖିବାକୁ ହେବ, ମୁଁ ତାଙ୍କୁ କୌତୁକ କରି କହିଥିଲି : ମୋର ଅତୀତ ଯଦି ବର୍ତ୍ତମାନରେ ପ୍ରକାଶିତ ହୋଇଯାଏ, ତେବେ ମୋର ଭବିଷ୍ୟତ ବିପଦଗ୍ରସ୍ତ ହୋଇପାରେ ।'

ପ୍ରଥମରୁ କହି ରଖୁଛି, ଗୋଟାଏ ବ୍ୟାପାରରେ ମୁଁ କୌଣସି କଥା କହିବି ନାହିଁ । ତା' ହେଉଛି ମୋର ଜୀବନର ପ୍ରେମ । ଏ ବ୍ୟାପାରଟି ମୋର ଏକାନ୍ତ ବ୍ୟକ୍ତିଗତ ବିଷୟ ହୋଇ ରହୁ । ଏଇ ଗୋଟାଏ ବ୍ୟାପାରରେ ଏଇ ଚିରକୁମାର କାହାକୁ କୌଣସି କଥା ଜଣାଇବାକୁ ରାଜି ନୁହେଁ । ତେବେ, ବିବାହ କାହିଁକି କଲିନାହିଁ, ଏ କଥାଟା ମୋର ବହୁ ପୁରୁଣା ବନ୍ଧୁ ପଚାରିଥାନ୍ତି । ପ୍ରକୃତରେ ବିବାହ କରିବାକୁ ମୁଁ ସମୟ ପାଇଲି ନାହିଁ । ପ୍ରଥମେ ବ୍ୟସ୍ତ ଥିଲି ପଢ଼ା-ଶୁଣା ଆଉ ଲେଖା-ଲେଖି ନେଇ । ତା'ପରେ ବ୍ୟସ୍ତ ହୋଇ ପଡ଼ିଲି ରାଜନୀତି ନେଇ । ସମୟ ଆଉ ପାଇଲି କେତେବେଳେ ? ତା'ପରେ ଗୋଟାଏ ସମୟରେ ମନେ ହେଲା, ବିବାହଟା ନ କରିବାହିଁ ବୋଧହୁଏ ଭଲ । ମନେ ହୁଏ, ପ୍ରକୃତରେ ବିବାହ କରିନାହିଁ ବୋଲି ମୁଁ ମୋ ଦଳ ପାଇଁ ଆଜି ମଧ୍ୟ ଏତେ ସମୟ ଦେଇ କାର୍ଯ୍ୟ କରି ପାରୁଛି । ବିବାହ କରିଥିଲେ କ'ଣ ଏତେ ସମୟ ଦେଇ ପାରୁଥାନ୍ତି ? କେଜାଣି !

**।। ହବି ।।**

ତେବେ ରାଜନୀତି ଛଡ଼ା ବ୍ୟକ୍ତିଗତ ଜୀବନରେ ପ୍ରତ୍ୟେକ ରାଜନୀତିକଙ୍କର କିଛି ସଉକ-ଆହ୍ଲାଦ ଥାଏ, ଯାହାକୁ ଆମେ କହୁଁ 'ହବି' । ସେ ରକମ ହବି ମୋର ମଧ୍ୟ ଅଛି । ମୋତେ ରନ୍ଧାରନ୍ଧି କରିବାକୁ ଭଲ ଲାଗେ । ନାନା ପ୍ରକାରର ନିରାମିଷ ତରକାରୀ ମୁଁ ରାନ୍ଧିପାରେଁ । ଏହା ବ୍ୟତୀତ ବହିପତ୍ର ପଢ଼ିବାକୁ ଆଉ ଗୀତ ଶୁଣିବାକୁ ବି ମୋତେ ଭଲଲାଗେ । ସ୍ୱାମୀ ବିବେକାନନ୍ଦଙ୍କ 'ରଚନା-ସମଗ୍ର' ମୋର ଖୁବ୍ ପ୍ରିୟ ବହି । ତା'ଛଡ଼ା ଗୀତା ପଢ଼ିବାକୁ ବି ମୁଁ ଭଲପାଏଁ । ମହାଭାରତ ଓ ରାମାୟଣ ମଧ୍ୟ ମୋର ପ୍ରିୟ ବହି । ତେବେ କୌଣସି ଗୋଟାଏ କି ଦଶଟା ବହିକୁ ପ୍ରିୟ ବହି ବୋଲି କହି ଏକ ତାଲିକା ତିଆରି କରିବାକୁ ମୋର ମନ ଚାହେଁ ନାହିଁ । ଯେତେବେଳେ ଯେଉଁ ବହିଟି ହାତରେ ପାଏଁ, ତତ୍କ୍ଷଣାତ୍ ମୁଁ ତାକୁ ପଢ଼ିବା ଆରମ୍ଭ କରିଥାଏଁ । ତେବେ କବିତା ପଢ଼ା ଓ ଲେଖା ମୋର କେବଳ ସଉକ ନୁହେଁ, ତାହା ମୋର ଏକ ନିଶା । କବିତା ଭିତର ଦେଇ ଆଜି ମଧ୍ୟ ମୁଁ ଜୀବନକୁ ଦେଖିଥାଏଁ । କବିତା ମୋର ଜୀବନ-ଦୋସର ।

ପ୍ରିୟ ରାଜନୈତିକ ଚରିତ୍ରମାନଙ୍କ ମଧ୍ୟରେ ମୋତେ ଭଲ ଲାଗେ ଚର୍ଚ୍ଚିଲଙ୍କ ଜୀବନ। ଆମ ଦେଶର ରାଜନୀତିକମାନଙ୍କ ମଧ୍ୟରେ ଦୀନଦୟାଲ ଉପାଧ୍ୟାୟ ଆଉ ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ କଥା ଏହି ଆଲୋଚନା ମଧ୍ୟକୁ ଆଣିବି ନାହିଁ। ସେମାନେ ତ ମୋ ଜୀବନର ସବୁ କିଛି। ସୁତରାଂ ପ୍ରିୟଜନଙ୍କ ତାଲିକାରେ ସେମାନଙ୍କ ନାମ ଆଣୁନାହିଁ। ସେ ଦୁଇ ଜଣଙ୍କ କଥା ସ୍ୱତନ୍ତ୍ର ଭାବେ କହିବି। ତେବେ ଭାରତୀୟ ରାଜନୀତିକମାନଙ୍କ ମଧ୍ୟରେ ମୋର ପ୍ରିୟ ଚରିତ୍ର ହେଲେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍। ମହାପୁରୁଷ ଓ ବିଖ୍ୟାତ ବ୍ୟକ୍ତିମାନଙ୍କର ଜୀବନୀ ପଢ଼ିବାକୁ ମଧ୍ୟ ମୋତେ ଭଲ ଲାଗେ। ମୋର ବିଶ୍ୱାସ, ଏ ପୃଥିବୀରେ ଏପରି କୌଣସି ଲୋକ ନାହିଁ, ଚାର୍ଲି ଚାପ୍ଲିନ୍‌ଙ୍କ ଆତ୍ମଜୀବନୀ ପଢ଼ି ବା ଛବି ଦେଖି ଯାହାର ଆଖି ଓଦା ହୋଇ ଯାଇନାହିଁ।

ଛବି ଦେଖିବାକୁ ମଧ୍ୟ ମୁଁ ଭଲପାଏଁ। ବିଶେଷ କରି ଆର୍ଟ ଫିଲ୍ମ ବୋଲି କୁହାଯାଉଥିବା ଛବିଗୁଡ଼ିକ ମୋତେ ଭଲ ଲାଗେ। ଆଜିକାଲି ଅବଶ୍ୟ ଫିଲ୍ମ ଦେଖିବାକୁ ବେଶୀ ସମୟ ପାଉନାହିଁ। ଘରେ ବେଳେବେଳେ ଭି.ସି.ପି.ରେ ହିନ୍ଦୀ ଛବି ଦେଖୁଥିଲି। ପୁରୁଣା ହିନ୍ଦୀ ଛବି ଦେଖିବାକୁ ମୋତେ ଭଲ ଲାଗେ। ମୋର ପ୍ରିୟ ନାୟକ ଥିଲେ ଦିଲ୍ଲୀପ କୁମାର, ଆଉ ନାୟିକା ମୀନାକୁମାରୀ। ଏମାନଙ୍କ ଛବି ଏକ ସମୟରେ ବହୁତ ଦେଖୁଥିଲି। ଏଇ କିଛିଦିନ ଆଗେ ଶାବନା ଆଜମୀ ମୋତେ ଶତ୍ରୁଘ୍ନ ସିହ୍ନାଙ୍କର ଗୋଟାଏ ଫିଲ୍ମ ଦେଖିବା ପାଇଁ କ୍ୟାସେଟ୍ ଦେଇଥିଲେ- 'ଅନ୍ତର୍ଜଳି ଯାତ୍ରା'। ଓଃ... ଏ ଛବିଟିରେ ଶତ୍ରୁଘ୍ନ ସିହ୍ନାଙ୍କର ଅଭିନୟ ଦେଖି ମୁଁ ବାସ୍ତବିକ ମୁଗ୍ଧ ହୋଇଯାଇଥିଲି। ସତ୍ୟଜିତ୍ ରାୟଙ୍କର ପ୍ରାୟ ପ୍ରତ୍ୟେକ ଛବି ମୁଁ ଦେଖିଛି। ତାଙ୍କର ଛବିଗୁଡ଼ିକ ମୋର ବିଶେଷ ପ୍ରିୟ।

ମୋର ପ୍ରିୟ ଖାଦ୍ୟ କ'ଣ ପଚାରିବେ ନାହିଁ? ପ୍ରିୟ ଖାଦ୍ୟ ହେଲା ଖିଚୁଡ଼ି ଆଉ କ୍ଷୀରୀ ବା ପାଏସ୍। ଥରେ ଜାତିସଂଘକୁ ବକ୍ତୃତା ଦେବା ଲାଗି ଯାଇଥିଲି ଭାରତୀୟ ପ୍ରତିନିଧି ଦଳର ସଦସ୍ୟ ରୂପେ। ଖାଇବା-ପିଇବା ମନ ମୁତାବକ ହୋଇ ପାରୁ ନଥିଲା। ବିଶେଷ କରି କ୍ଷୀରୀ ଖାଇବାକୁ ମିଳୁ ନଥିଲା। ତେଣୁ ମୁଁ ସେଠାରେ ଦୁଧ ମଗାଇ ନିଜେ କ୍ଷୀରୀ ତିଆରି କରିଥିଲି ଏବଂ ନିଜେ ଖାଇବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଖୁଆଇ ଖୁବ୍ ପ୍ରଶଂସା ପାଇଥିଲି।

॥ ପ୍ରାତ୍ୟହିକ ଜୀବନଧାରା ॥

ଦିଲ୍ଲୀରେ ପ୍ରାୟ ପ୍ରତ୍ୟହ ମୁଁ ପ୍ରାତଃଭ୍ରମଣ କରିଥାଏଁ। ଭୋର ପାଞ୍ଚଟା ପରେ ପରେ ହିଁ ମୋର ନିଦ ଭାଙ୍ଗିଯାଏ। ସାଧାରଣତଃ ଘରର ଲନ୍‌ରେହିଁ ପଦଚାରଣା କରିଥାଏଁ ମୁଁ। ବେଳେବେଳେ ଗଣ୍ଡିଆ ଗେଟ୍ ପର୍ଯ୍ୟନ୍ତ ଚାଲିଯାଏଁ। ସାଙ୍ଗରେ ଥାଏ ମୋର ପ୍ରିୟ କୁକୁରଟା। ପ୍ରାତଃଭ୍ରମଣ ପରେ କିଛି ଯୋଗ-ଆସନ କରେଁ। ଅନ୍ୟ କିଛି

ବ୍ୟାୟାମ ମଧ୍ୟ କରେଁ । ତା'ପରେ ଯାଏଁ ଗାଧୋଇବାକୁ । ସ୍ନାନ ପରେ ପ୍ରାତଃରାଶ । ରାତିରେ ଶୋଉଁ ଶୋଉଁ ସାଧାରଣତଃ ସାଢ଼େ ଏଗାରଟା-ବାରଟା ବାଜିଯାଏ ।

**।। ରାମଜନ୍ମଭୂମି ଓ ବାବ୍ରୀ ମସ୍‌ଜିଦ୍ ।।**

ଧର୍ମ ସମ୍ବନ୍ଧରେ ଆମ୍ଭମାନଙ୍କ ମନରେ ଅନେକ ଭୁଲ ଧାରଣା ଓ କୁସଂସ୍କାର ଜମି ରହିଛି । ଏଇ ଯେମିତି ଅଯୋଧ୍ୟାରେ ବାବ୍ରୀ ମସ୍‌ଜିଦ୍ ଭଙ୍ଗା ଘଟଣାକୁ ମୁଁ କୌଣସି ଦିନ ସମର୍ଥନ କରି ପାରିନାହିଁ; ଆଜି ମଧ୍ୟ କରୁନାହିଁ । ଅଯୋଧ୍ୟାରେ ଯେଉଁଦିନ ବାବ୍ରୀ ମସ୍‌ଜିଦ୍ ଭଙ୍ଗାଯାଇଥିଲା, ସେହିଦିନ ହିଁ ମୁଁ ଏହି ଘଟଣାର ନିନ୍ଦା କରିଥିଲି । କହିଥିଲି : ଏହା ନିଶ୍ଚିତ ଭାବେ ଦୁର୍ଭାଗ୍ୟଜନକ ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତା ଶ୍ରୀ ହୀରେନ୍ ମୁଖାର୍ଜୀ 'ରାମ ଜନ୍ମଭୂମି-ବିତର୍କ' ସଂପର୍କରେ ମୋତେ ଏକ ଚିଠି ଲେଖିଥିଲେ । ତାର ଉତ୍ତରରେ ମୁଁ ଲେଖିଥିଲି: 'ଏ କଥା ସତ ଯେ, ରାଜନୀତିକ ଜୀବନରେ ଆମେ ବହୁତ ମୌଳିକ ପ୍ରଶ୍ନ ଘେନି ସହମତ ନୁହନ୍ତି । ତଥାପି ଆପଣଙ୍କଠାରୁ ଅନେକ ସମୟରେ ଯେଉଁ ସ୍ନେହ ଓ କୃପାଦୃଷ୍ଟି ମୋତେ ମିଳିଛି, ତାକୁ ମୁଁ ବରାବର ମର୍ଯ୍ୟାଦା ଦେଇ ଆସିଛି ।' ଏହା ପରେ ରାମଜନ୍ମଭୂମି ବ୍ୟାପାରରେ ମୋର ବକ୍ତବ୍ୟ ମୁଁ ପେଶ୍ କରିଥିଲି । ସେଥିରେ ମୁଁ କହିଥିଲି, ପ୍ରଗତିଶୀଳ ବାମପନ୍ଥୀ ବୁଦ୍ଧିଜୀବୀମାନେ ଧର୍ମନିରପେକ୍ଷତାର ନାମରେ ପ୍ରକୃତପକ୍ଷେ ଯାହା କରୁଛନ୍ତି, ତାହା ହେଲା ମୁସ୍ଲିମ ସାଂପ୍ରଦାୟିକତା । ଏ ପ୍ରକାର ସାଂପ୍ରଦାୟିକତାକୁ ସମର୍ଥନ କରିବା ଉଚିତ ନୁହେଁ । ରାମ ମନ୍ଦିର ନିର୍ମାଣ ପ୍ରଶ୍ନ ସୁତରାଂ ଆମ ନିକଟରେ ଏକ ପ୍ରତୀକାତ୍ମକ ପ୍ରଶ୍ନ ।

**।। ବିଦେଶ ମନ୍ତ୍ରିତ୍ୱ ।।**

ଜରୁରୀ ପରିସ୍ଥିତିର ଅବସାନ ହେବା ପରେ ସର୍ବୋଦୟ ନେତା ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଜନତା ଦଳ ଗଠିତ ହେଲା । କଂଗ୍ରେସ ଆଉ କମ୍ୟୁନିଷ୍ଟ ଦଳକୁ ବାଦ୍ ଦେଇ ବାକୀ ପ୍ରାୟ ସବୁ ଦଳହିଁ ଏହି ବ୍ୟାନର୍‌ରେ ଏକତ୍ର ହେଲେ । ସେମାନେ ସମସ୍ତେ ଜନତା ଦଳର ଟିକେଟରେ ନିର୍ବାଚନ ଲଢ଼ିଲେ । ସେ ସମୟରେ ମୁଁ ଟିକିଏ ଅସୁସ୍ଥ ଥିଲି । ତଥାପି ସେଥର ଅନ୍ୟମାନଙ୍କ ସହିତ ମୁଁ ବି ଜିତିଥିଲି । ଦିଲ୍ଲୀର ଏକ ଆସନରୁ ମୁଁ ପ୍ରାର୍ଥୀ ହୋଇଥିଲି । ନିର୍ବାଚନ ପରେ ଜନତା ଦଳର ସର୍ବପ୍ରଥମ ଅଣକଂଗ୍ରେସ ସରକାର ଦିଲ୍ଲୀ-ମସ୍‌ନଦ୍‌ରେ ବସିଲା । ମୋତେ ବିଦେଶ ମନ୍ତ୍ରୀ କରାଗଲା । ପ୍ରଥମେ ପ୍ରଥମେ ଅନେକଙ୍କ ମନରେ ଆଶଙ୍କା ଥିଲା, ମୁଁ ବିଦେଶ ମନ୍ତ୍ରୀ ହେଲେ ମୁସ୍ଲିମ ଦେଶଗୁଡ଼ିକରେ ତାର ବିରୂପ ପ୍ରତିକ୍ରିୟା ସୃଷ୍ଟି ହୋଇପାରେ । ଅନେକେ ଏପରି ମଧ୍ୟ ଭାବିଥିଲେ ଯେ ମୁସଲମାନ୍ ଦେଶଗୁଡ଼ିକ ସହିତ ଭାରତର ସଂପର୍କରେ ଅବନତି ଘଟିବ । କିନ୍ତୁ ଏ ପ୍ରକାର କିଛି ହେଲା ନାହିଁ । ଏ ବ୍ୟାପାରରେ ମୁଁ ବରାବର ବିଶେଷ

ଭାବେ ସଜାଗ ଥିଲି । ତେଣୁ ଆମର ଯଥୋଚିତ କାର୍ଯ୍ୟକଳାପ ଓ ମନୋଭାବ ଫଳରେ ପାକିସ୍ଥାନ ସମେତ ସବୁ ଦେଶ ସହିତ ଭାରତର ସଂପର୍କ ସେତେବେଳେ ଯଥେଷ୍ଟ ଭଲ ରହିଥିଲା । ତାତ୍‌କାଳୀନ ପାକ୍ ରାଷ୍ଟ୍ରପତି ଜିଆ-ଉଲ୍ ହକ୍‌ଙ୍କ ସହିତ ମଧ୍ୟ ମୁଁ ପାକିସ୍ଥାନ ଗସ୍ତରେ ଯାଇ ସାକ୍ଷାତ୍ - ଆଲୋଚନା କରିଥିଲି ।

ବିଦେଶ ମନ୍ତ୍ରୀ ରୂପେ ମୁଁ ଯେଉଁଠାକୁ ଯାଉଥିଲି, ହିନ୍ଦୀରେ ହିଁ କଥାବାର୍ତ୍ତା କରୁଥିଲି । ସାଙ୍ଗରେ ଦୋଭାଷୀ ରଖୁଥିଲି । ସେମାନେ ମୋର ହିନ୍ଦୀ ବକ୍ତବ୍ୟକୁ ସଙ୍ଗେ ସଙ୍ଗେ ଇଂରାଜୀ ବା ଅନ୍ୟ ଭାଷାରେ ଅନୁବାଦ କରି ଦେଉଥିଲେ । ବିଦେଶକୁ ଯାଇ ବିଦେଶୀ ନେତା ଓ ପ୍ରତିନିଧିମାନଙ୍କ ସମ୍ମୁଖରେ ଭାରତର ରାଷ୍ଟ୍ରଭାଷାରେହିଁ କଥାବାର୍ତ୍ତା କରିବାକୁ ମୋତେ ଖୁବ୍ ଭଲ ଲାଗୁଥିଲା ।

**॥ ଐତିହାସିକ ତିଥି ॥**

୧୯୮୦ ମସିହାର ଏପ୍ରିଲ ୬ ତାରିଖ । ମୋ ପାଇଁ ଏହା ଏକ ଐତିହାସିକ ଦିନ । କାରଣ ସେହି ଦିନହିଁ ମୁମ୍ବାଇରେ ଭାରତୀୟ ଜନତା ପାର୍ଟିର ଜନ୍ମ ହୋଇଥିଲା । ସେହିଠାରେହିଁ ମୋତେ ଏହି ଦଳର ପ୍ରଥମ ସର୍ବଭାରତୀୟ ସଭାପତି ରୂପେ ମନୋନୀତ କରାଯାଇଥିଲା । ସେଦିନ ମୁମ୍ବାଇରେ ଆମ ସମର୍ଥକମାନଙ୍କର ଏକ ବିଶାଳ ଶୋଭାଯାତ୍ରା ବାହାରିଥିଲା, ଯାହା ଆଜି ମଧ୍ୟ ସ୍ମରଣୀୟ ହୋଇ ରହିଛି ।

**॥ ଦୀନଦୟାଲଜୀଙ୍କ ମର୍ମନ୍ତୁଦ ମୃତ୍ୟୁ ॥**

ଏଥର ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କ ସମ୍ପର୍କରେ କିଛି କଥା କହିବାକୁ ଇଚ୍ଛା କରୁଛି । ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀ ଥରେ କହିଥିଲେ: 'ଯଦି ଦୀଦୟାଲଙ୍କ ପରି ଆଉ ଦୁଇ ତିନି ଜଣ କର୍ମୀଙ୍କୁ ମୁଁ ଖୋଜି ପାଇଥାନ୍ତି, ତେବେ ଭାରତର ରାଜନୀତିଟାକୁ ମୁଁ ବଦଳାଇଦେଇ ପାରିଥାନ୍ତି ।' ଦୀନଦୟାଲଜୀଙ୍କର ଜନ୍ମ ହୋଇଥିଲା ରାଜସ୍ଥାନର ଧନକିୟାରେ । କିନ୍ତୁ ସେ ଥିଲେ ଏକ ସଂପୂର୍ଣ୍ଣ ଭାରତୀୟ । ଡଃ ରାଜେନ୍ଦ୍ର ପ୍ରସାଦ ମାର୍ଗରେ ଥିବା ଏକ ଘରେ ଆମେ ସାଙ୍ଗ ହୋଇ ରହୁଥିଲୁଁ । ଜଗଦୀଶ ପ୍ରସାଦ ମାଥୁର ମଧ୍ୟ ସେହିଠାରେ ରହୁଥିଲେ । ବାରାଣସୀରୁ ଦୀନଦୟାଲଜୀଙ୍କ ମର ଦେହକୁ ପ୍ରଥମେ ସେହି ଘରକୁ ଅଣାଯାଇଥିଲା । ତାଙ୍କର ସେ ହତ୍ୟାକାଣ୍ଡଜନିତ ମୃତ୍ୟୁ ଥିଲା ବଡ଼ ନିର୍ମମ ଓ କରୁଣ । ସେ ହତ୍ୟାରହସ୍ୟ ଏପର୍ଯ୍ୟନ୍ତ କାହିଁକି ଭେଦ କରାଯାଇ ପାରିଲା ନାହିଁ, ତାହା ମଧ୍ୟ ଏକ ମସ୍ତ ବଡ଼ ରହସ୍ୟ ।

ତାରିଖଟା ଥିଲା ୧୧।୨।୬୮ । ଭୋର ସାଢ଼େ ତିନିଟା ବେଳେ ଉତ୍ତର ପ୍ରଦେଶର ମୋଗଲ ସରାଇ ଷ୍ଟେସନ୍‌ରେ ଈଶ୍ୱର ଦୟାଲ ନାମକ ଜଣେ ରେଳ ଶ୍ରମିକ ସହକାରୀ ଷ୍ଟେସନ୍ ମାଷ୍ଟରଙ୍କୁ ଟେଲିଫୋନ୍ ଯୋଗେ ଖବର ଦେଲା ଯେ ପ୍ଲାଟଫର୍ମ ପାଖରେ ମେନ୍ ଲାଇନ୍ ଉପରେ ଗୋଟାଏ ଲାଶ୍ ପଡ଼ି ରହିଛି । ରେଳ ପୋଲିସ୍ ସଙ୍ଗେ

ସଙ୍ଗେ ଘଟଣା ସ୍ଥଳକୁ ଗଲେ । ସେହି ମୃତଦେହଟି ଥିଲା ପଣ୍ଡିତ ଦୀନଦୟାଲଙ୍କର । ତାଙ୍କ କାମିଜ ପକେଟ୍‌ରେ ପ୍ରଥମ ଶ୍ରେଣୀର ଏକ ଟିକେଟ୍ ଥିଲା । ହାତରେ ଥିଲା ଏକ ଘଡ଼ି । ଆଉ ଏହି ଘଡ଼ିରେ ଲେଖା ଥିଲା - ନାନା ଦେଶମୁଖ । ଏହା ପରେ ଏହି ହତ୍ୟାକାଣ୍ଡର ତଦନ୍ତ ପାଇଁ ଏକ କମିଶନ୍ ବସିଥିଲା । ଦୁଇ ତିନି ଜଣ ଚୋରଙ୍କୁ, ଧର୍ମକୁ ଆଖିଠାର ମାରିବା ରୀତିରେ ଦଣ୍ଡ ମଧ୍ୟ ମିଳିଥିଲା । କିନ୍ତୁ ସେ ମୃତ୍ୟୁ ରହସ୍ୟ ଏବେ ମଧ୍ୟ ରହସ୍ୟାବୃତ ହୋଇ ରହିଛି । କେଉଁମାନେ ଥିଲେ ତାଙ୍କର ପ୍ରକୃତ ହତ୍ୟାକାରୀ ? କାହାର ନିର୍ଦ୍ଦେଶରେ ତାଙ୍କୁ ହତ୍ୟା କରାଯାଇଥିଲା ? ତାଙ୍କର ମୃତଦେହକୁ ଯେଉଁଦିନ ଦିଲ୍ଲୀ ଅଣାଗଲା, ସେଦିନ ଅସୁମାରି ଶୋକାକୁଳ ଜନତା ଆସି ରାଜଧାନୀରେ ଭିଡ଼ କରିଥିଲେ । କନଟ ପ୍ଲେସ୍‌ରେ ସେଦିନ ତିଳ ଧାରଣ ପାଇଁ ମଧ୍ୟ ସ୍ଥାନ ନ ଥିଲା ।

ଦିଲ୍ଲୀରେ ସେଦିନ ସକାଳ ଦଶଟାରେ ମୋ ଘରକୁ ଲକ୍ଷ୍ନୌଠାରୁ ଏକ ଫୋନ୍ କଲ୍ ଆସିଥିଲା । ୨ନମ୍ବର ଫିରୋଜ ଶାହ ରୋଡ୍‌ରେ ସେଦିନ ଜନସଂଘ ସଂସଦୀୟ ଦଳର କାର୍ଯ୍ୟକାରୀ ସମିତି ବୈଠକ ଥିଲା । ମୁଁ ସେଥିରେ ଯୋଗ ଦେବା ପାଇଁ ସେଠାକୁ ଯାଇଥିଲି । ଆମର ରୋଷେୟା ବିରଜୁ ଫୋନ୍‌ଟା ଧରିଥିଲା । ସେହି ଫୋନ୍‌ରେହିଁ ପ୍ରଥମେ ଏହି ମୃତ୍ୟୁର ଖବରଟା ଆସି ପହଞ୍ଚିଥିଲା । ବିରଜୁ ଖବର ପାଇବା ମାତ୍ରେ ମୋତେ ତାହା ଜଣାଇଥିଲା । ଆମର ବୈଠକ ସଙ୍ଗେ ସଙ୍ଗେ ସ୍ଥଗିତ ହୋଇଗଲା । ମୁଁ ଘରକୁ ଫେରି ସଙ୍ଗେ ସଙ୍ଗେ ଲକ୍ଷ୍ନୌକୁ ଫୋନ୍ କଲି । ସେଠାରେ ସେତେବେଳେ ଆମ ଦଳର ନେତା ରାମପ୍ରକାଶ ଗୁପ୍ତ ବସିଥିଲେ । ତାଙ୍କଠାରୁ ସବୁ କଥା ବିସ୍ତାରିତ ଭାବେ ଜାଣିବାକୁ ପାଇଲି । ତା'ପରେ ମୁଁ ଓ ବଳରାଜ ମଧୋକ, ତାତ୍‌କାଳୀନ ରେଳ ରାଷ୍ଟ୍ରମନ୍ତ୍ରୀ ପରିମଳ ଘୋଷଙ୍କ ଘରକୁ ଗଲୁଁ ଏବଂ ମୋଗଲସରାଇର ହୃଦୟବିଦାରକ ଘଟନା ସବୁ ତାଙ୍କୁ ଜଣାଇଲୁଁ । ଏ ଘଟନାର ତଦନ୍ତ ଦାବୀ ମଧ୍ୟ କଲୁଁ । ଶ୍ରୀ ଘୋଷ ମୋଗଲ ସରାଇକୁ ଫୋନ୍ କରି ଏ ସଂକ୍ରାନ୍ତରେ ବୁଝାବୁଝି କଲେ ଓ ତଦନ୍ତ ପାଇଁ ନିର୍ଦ୍ଦେଶ ଦେଲେ । ଆମେ ସଙ୍ଗେ ସଙ୍ଗେ ବାରାଣସୀ ଗଲୁଁ ଏବଂ ସେଠାରୁ ସ୍ୱତନ୍ତ୍ର ବିମାନ ଯୋଗେ ଦୀନଦୟାଲଜୀଙ୍କ ମରଦେହକୁ ଦିଲ୍ଲୀ ଆଣିଲୁଁ । ନିଗମବୋଧ ଘାଟରେ ତାଙ୍କର ଶେଷକୃତ୍ୟ ସଂପନ୍ନ ହେଲା । ତାତ୍‌କାଳୀନ ସ୍ୱରାଷ୍ଟ୍ର ମନ୍ତ୍ରୀ ୱାଇ.ବି.ଚଭନ୍ ମୋର ଅନୁରୋଧକ୍ରମେ ସ୍ୱତନ୍ତ୍ର ବିମାନର ବ୍ୟବସ୍ଥା କରି ଦେଇଥିଲେ ।

ଦୀନଦୟାଲଜୀଙ୍କ ମୃତ୍ୟୁ ଆଜି ପର୍ଯ୍ୟନ୍ତ ମୋ ଜୀବନର ଏକ ଗଭୀର କ୍ଷତ ହୋଇ ରହିଛି । ସେଇଥିପାଇଁ ଏତେ କଥା କହି ପକାଇଲି । ସେତେବେଳେ ମୁଁ କହିଥିଲି: 'ଆମକୁ ବାଟ ଦେଖାଉଥିବା ଦୀପାଲୋକ ଏବେ ହଠାତ୍ ଲିଭିଗଲା । ବର୍ତ୍ତମାନ ଆମକୁ ନିଜର ଜୀବନ-ଦୀପ ଜଳାଇ ଅନ୍ଧକାର ସହ ଲଢ଼ିବାକୁ ପଡ଼ିବ । ସୂର୍ଯ୍ୟ ଅସ୍ତମିତ; ଆମକୁ ବର୍ତ୍ତମାନ ତାରାମାନଙ୍କର ସହାୟତାରେ ନିଜର ମାର୍ଗ ଖୋଜିନେବାକୁ ହେବ ।'

॥ କବିତାର ଆକର୍ଷଣ ॥

କ୍ଷମା କରିବେ, ମୋ ଲେଖାରେ ବାର ବାର କବିତା ଆସିଯାଉଛି । ଅସଲରେ କବିତାହିଁ ମୋ ଜୀବନର ପ୍ରାଣ । ଏଇ କବିତା ପାଇଁ ମଝିରେ ମଝିରେ, ସବୁ କିଛି ଛାଡ଼ି ଛୁଡ଼ି ଦେଇ ଆତ୍ମ-ନିର୍ବାସନରେ ଚାଲିଯିବାକୁ ଇଚ୍ଛା ହୁଏ ମୋର । ଇଚ୍ଛା ହୁଏ ରାଜନୀତିରୁ ସନ୍ନ୍ୟାସ ନେଇ ଯିବାକୁ । ମନେ ହୁଏ, ରାଜନୀତିର ଏଇ ଉତପ୍ତ କଡ଼ାଇରେ 'ଖଇ-ମୁଡ଼କି' ପରି ଛଟପଟ ନ ହୋଇ କୌଣସି ଏକ ନିଃସଙ୍ଗ ନିର୍ଜନ ଦ୍ୱୀପକୁ ଚାଲି ଯା'ନ୍ତି କି.... ଆଃ.... ସେଇ ପୁରୁଣା ଦିନର ଗୋଟାଏ ହିନ୍ଦୀ ଗୀତ ଅଛିନା - ଯେ ଦିଲ୍ ମୁଝେ ଐସା ଜଗହ୍ ଲେ'ଚଲ୍ ଯାହାଁ କୋଇ ନ ହୋ'... ଅଥବା ଏ' ମେରୀ ଦିଲ୍ କହିଁ ଔର ଚଲ୍...ଧୁଣ୍ଡ ଲେ ଔର୍ କୋଇ ଘର୍ ନୟା....'

ଗୋଟାଏ ସତ କଥା କହୁଚି । ଅନ୍ତତଃ ମୋତେ ଏହା ବାସ୍ତବ ବୋଲି ମନେ ହୁଏ । ତାହା ହେଲା: କବିତା ଓ ରାଜନୀତି କେବେ ବି ଏକସଙ୍ଗେ ରହିପାରେନାହିଁ । ଏପରି ଏକ ରାଜନୀତି, ଯେଉଁଠି ପ୍ରାୟ ପ୍ରତିଦିନହିଁ ଭାଷଣ ଦେବାକୁ ପଡ଼େ ଏବଂ ଏପରି ଭାଷଣ ଦେବାକୁ ହୁଏ, ଯାହା ଦ୍ୱାରା ଶ୍ରୋତାମାନେ ପ୍ରଭାବିତ ହୁଅନ୍ତି, ଉଦ୍‌ବେଳିତ ହୁଅନ୍ତି ...... ସେଠାରେ କବିତାର ନିର୍ଜନ ସାଧନା ଅସମ୍ଭବ ବୋଲି ଆଜି କାଲି ମନେ ହୁଏ । ମୁଁ ଯାହା କିଛି ସାମାନ୍ୟ କବିତା ଲେଖିଛି, ସେଥିରେ ମୋର ଦେଖା ଏଇ ଜୀବନଟାହିଁ ପ୍ରତିବିମ୍ବିତ ହୋଇଛି । ନିଜର କବି-ସତ୍ତା ପ୍ରତି ସତ୍ ଓ ନିଷ୍ଠାବାନ୍ ରହିବା ଲାଗି ମୋତେ ଜୀବନରେ ବହୁତ କିଛି ମୂଲ୍ୟ ଦେବାକୁ ପଡ଼ିଛି । ସାରା ଜୀବନ ଧରି ମୁଁ ମୋର କବି-ସତ୍ତା ଓ ରାଜନୀତିକ-ସତ୍ତା ମଧ୍ୟରେ ମେଳ-ବନ୍ଧନର ପ୍ରୟାସ କରି ଆସିଛି । ବେଳେ ବେଳେ ଇଚ୍ଛା ହୁଏ, ରାଜନୀତି ଛାଡ଼ି ଦେଇ କୌଣସି ଏକ ନିର୍ଜନ ସ୍ଥାନରେ ବସି କବିତା ଲେଖେଁ ଓ ବହି ପଢ଼େଁ...କିନ୍ତୁ ତାହା କେବେ ସମ୍ଭବ ହୁଏନା । ମୁଁ କବିତା ପାଇଁ ରାଜନୀତି ଛାଡ଼ିବାକୁ ଇଚ୍ଛା କଲେ ମଧ, ରାଜନୀତି ମୋତେ ଛାଡୁନାହିଁ । ବାର ବାର ସେ ଘୂରି ଫେରି ଆସୁଛି ମୋ ପାଖକୁ । ଆଉ କହୁଚି - 'ତୁ ମୋତେ ଛାଡ଼ିଲେ ବି ମୁଁ ତୋତେ ଛାଡ଼ିବି ନାହିଁ ।' ବୁଝି ପାରୁଛି, ଜୀବନର ଅବଶିଷ୍ଟ ଦିନଗୁଡ଼ାକ ହୁଏତ ଏଇମିତି, ଏଇ ଟଣା-ଓଟରା ଭିତରେଇ କଟିବ !

॥ ଶ୍ୟାମାପ୍ରସାଦଜୀଙ୍କ ରହସ୍ୟଜନକ ମୃତ୍ୟୁ ॥

ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ପ୍ରଭାବ ମୋ ଜୀବନରେ ବହୁତ ବେଶି । ମୁଁ ତାଙ୍କର ସଚିବ ରୂପେ ବେଶ୍ କିଛି ଦିନ କାର୍ଯ୍ୟ କରିଛି । ଯେଉଁ ଦିନ ସେ ବିନା ପର୍ମିଟ୍‌ରେ କାଶ୍ମୀରରେ ପ୍ରବେଶ କରିଥିଲେ, ସେ ଦିନ ତାଙ୍କ ସହିତ ମୁଁ ମଧ ଥିଲି । ଏବେ ବି ମୁଁ ଯେପରି ତାଙ୍କର କଣ୍ଠ ସ୍ୱର ଶୁଣିବାକୁ ପାଉଛି । ସେ ମୋତେ କହୁଛନ୍ତି: ଦେଖ, ଦେଖ, ଆମେ ଶ୍ରୀନଗର ଭିତରେ ପ୍ରବେଶ କରିଯାଇଛୁଁ । ବାଜପେୟୀ, ତୁମେ

ଏଥର ଫେରିଯାଅ । ସମସ୍ତଙ୍କୁ ଯାଇ ଜଣାଅ ଯେ ବିନା ପର୍ମିଟ୍‌ରେ ହିଁ ଆମେ କାଶ୍ମୀର ଭିତରକୁ ଚାଲି ଆସି ପାରିଛୁଁ । ସେତେବେଳେ ପର୍ମିଟ୍‌ବିନା କାଶ୍ମୀର ଯିବା ନିଷିଦ୍ଧ ଥିଲା । ସୁତରାଂ ଏହାପରେ ଡଃ ମୁଖାର୍ଜୀଙ୍କର କାରାବାସ ଆଉ ରହସ୍ୟଜନକ ମୃତ୍ୟୁ । ଜୁନ୍ ୨୩ ରାତିରୁ ତାଙ୍କର ମରଦେହ ନେଇ ଆମେ କଲିକତା ଗଲୁଁ । ଜୁନ୍ ୨୪ ମଧ୍ୟରାତ୍ରୀରେ କଲିକତା ସହରରେ ତାଙ୍କର ମରଦେହ ପାଖରେ ବିଶାଳ ଜନସମୁଦ୍ର । ସାରା କଲିକତା ସହର ଯେମିତି ଶୋକାକୁଳ । ଶକଟରେ ତାଙ୍କର ମୃତ ଦେହ ନେଇ ଶ୍ମଶାନ ଘାଟ ଉଦ୍ଦେଶ୍ୟରେ ଚାଲିଥିଲା ବିରାଟ ଶୋକଯାତ୍ରା । ମନେ ଅଛି, ତାଙ୍କର ମୁଣ୍ଡ ପାଖରେ ମୁଁ ବସିଥିଲି ଆଉ ତାଙ୍କ ନାସିକାରୁ କ୍ଷରିତ ରକ୍ତ ତୁଳାରେ ପୋଛି ଦେଉଥିଲି । ତାଙ୍କର ଶିଷ୍ୟ ମୁଁ, ସେ ସବୁ ଘଟନା ଭୁଲିବି କିପରି ?

ସମୟ କେତେ ଜଲ୍‌ଦି ଚାଲି ଯାଉଛି । ସଂସଦରେ ମୋର ଇତିମଧ୍ୟରେ ପ୍ରାୟ ଚାଳିଶଟା ବର୍ଷ ବିତିଗଲାଣି । ସେ କଥା ଭାବି ବସିଲେ ନିଜେଇ ଅବାକ୍ ହୋଇଯାଏ । ୧୯୫୭ ମସିହା.... ଲୋକସଭାର ଦ୍ୱିତୀୟ ସାଧାରଣ ନିର୍ବାଚନ ଆସନ୍ନ । ଭାରତୀୟ ଜନସଂଘ ସେତେବେଳେ ନିଜକୁ ପ୍ରତିଷ୍ଠିତ କରିବା କାର୍ଯ୍ୟରେ ବିଶେଷ ବ୍ୟସ୍ତ । ଦଳର ପ୍ରତିଷ୍ଠାତା ଡଃ ଶ୍ୟାମାପ୍ରସାଦ ମୁଖାର୍ଜି ଆଉ ନାହାନ୍ତି । ତାଙ୍କ ଭଳି ଅନ୍ୟ କୌଣସି ଲୋକପ୍ରିୟ ନେତା ମଧ୍ୟ ଦଳରେ ଆଉ କେହି ନାହାନ୍ତି । ପ୍ରାର୍ଥୀମାନେ ସେତେବେଳେ ନିର୍ବାଚନ ଲଢ଼ିବାକୁ ଭୟ କରୁଥିଲେ । ଏପରି କୌଣସି ବ୍ୟକ୍ତି ମିଳୁ ନଥିଲେ, ଯିଏ କି ନିଜ ହାତରୁ ପଇସା ଖର୍ଚ୍ଚ କରି ନିର୍ବାଚନ ଲଢ଼ିବେ । କିନ୍ତୁ ନିର୍ବାଚନ ନ ଲଢ଼ିଲେ ଜନସଂଘର ପ୍ରତିଷ୍ଠା ହେବ କିପରି ? ତେଣୁ ଦେଶର କେତେକ ବଛାବଛା ଆସନରୁ ପ୍ରାର୍ଥୀ ଦେବା କଥା ସ୍ଥିର ହେଲା । ମୋତେ ସେଥର ତିନୋଟି ଆସନରୁ ପ୍ରାର୍ଥୀ କରାଯିବା ପାଇଁ ମଧ୍ୟ ନିଷ୍ପତ୍ତି ନିଆଗଲା- ଲକ୍ଷ୍ନୌ, ମଥୁରା ଏବଂ ବଳରାମପୁର ।''

(ଏହି ନିର୍ବାଚନର ଫଳାଫଳ ଏବଂ ଗୋଟିଏ ଆସନରୁ ଜିତି ଅଟଳଜୀଙ୍କ ପ୍ରଥମ ଲୋକସଭା ପ୍ରବେଶ, ଲୋକସଭାରେ ତାଙ୍କର ଅଭିଜ୍ଞତା, ପରବର୍ତ୍ତୀ ନିର୍ବାଚନରେ ତାଙ୍କର ପରାଜୟ ଓ ରାଜ୍ୟସଭା - ପ୍ରବେଶ, ଅନ୍ୟାନ୍ୟ ନିର୍ବାଚନ ତଥା ସଂସଦର ଉଭୟ ଗୃହରେ ତାଙ୍କର ଅଭିଜ୍ଞତା ଓ ରାଜନୀତିକ କାର୍ଯ୍ୟକଳାପ ଏବଂ ବିଭିନ୍ନ ସମୟର ପରିସ୍ଥିତି ଓ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ଘଟନା ସଂପର୍କରେ ସେ ତାଙ୍କର ଏହି ଆତ୍ମକଥାରେ ବିସ୍ତାରିତ ବୟାନ ଦେଇଛନ୍ତି । ଏହି ପୁସ୍ତକର ବିଭିନ୍ନ ସ୍ଥାନରେ ତାଙ୍କର ସେ ସବୁ ଘଟଣା ଓ ବକ୍ତବ୍ୟ ପ୍ରକାଶ କରାଯାଇଛି । ପାଠକମାନେ ଯଥାସ୍ଥାନରେ ସେ ସବୁ ପଢ଼ିବାକୁ ପାଇବେ ।)

**॥ ଭି.ପି. ଓ ଚନ୍ଦ୍ରଶେଖରଙ୍କ ସରକାରର ପତନ ॥**

**ଅଟଳଜୀ ତାଙ୍କ ଆତ୍ମକଥାର ଶେଷ ଭାଗରେ ଯାହା ଲେଖିଥିଲେ, ତାହା ଏଠାରେ ଉଦ୍ଧାର କରାଯାଉଛି :**

"ଭାରତବର୍ଷରେ ରାଜନୀତିରେ ୧୯୯୦-୯୧ ମସିହା ଥିଲା ରାଜନୈତିକ ଅନିଶ୍ଚିତତା ଓ ଅସ୍ଥିରତାରେ ପରିପୂର୍ଣ୍ଣ। ସାଧାରଣ ନିର୍ବାଚନରେ କଂଗ୍ରେସ ପରାସ୍ତ ହେଲା; ଜାତୀୟ ସାମ୍ମୁଖ୍ୟ ମଧ୍ୟ ସଂସଦରେ ସ୍ପଷ୍ଟ ବହୁମତ ଲାଭ କରିପାରିଲା ନାହିଁ। ତଥାପି ସାମ୍ମୁଖ୍ୟ ସରକାରକୁ ବି.ଜେ.ପି. ଏବଂ କମ୍ୟୁନିଷ୍ଟମାନେ ବାହାରେ ଥାଇ ସମର୍ଥନ ଦେବା ପାଇଁ ସିଦ୍ଧାନ୍ତ କରିଥିଲେ। ସେଥର କେନ୍ଦ୍ରରେ ଏକ ଅଣକଂଗ୍ରେସ ସରକାର ଗଠନ ସମୟରେ ଜନତା ଦଳର ନେତାମାନେ ପ୍ରତିଜ୍ଞାବଦ୍ଧ ହୋଇଥିଲେ ଯେ, ଏଥର ସେମାନେ ମିଳିମିଶି କାର୍ଯ୍ୟ କରିବେ। ୧୯୭୯ ମସିହାରେ ଯାହା ହୋଇଥିଲା, ତାର ପୁନରାବୃତ୍ତି ହେବନାହିଁ। କିନ୍ତୁ କିଛି ଦିନ ପରେ ହିଁ ଦେଖାଗଲା ଜନତାଦଳର ନେତାମାନେ ଏପରି କିଛି କାର୍ଯ୍ୟ ଆରମ୍ଭ କରିଛନ୍ତି, ଯାହା ଫଳରେ ଅନ୍ତର୍ବିବାଦ ବଢୁଛି ସିନା, କମୁନାହିଁ। ୭୯ ମସିହା ପରି ସେଥର ମଧ୍ୟ ଜନତା ଦଳର ଅନ୍ତର୍ଦ୍ୱନ୍ଦ୍ୱ କୌଣସି ନୀତି ବା ଆଦର୍ଶର ପ୍ରଶ୍ନରେ ନ ହୋଇ, କେବଳ କ୍ଷମତାରେ ରହିବାର ଲୋଭରେ ହିଁ ଯାବତୀୟ ଗୋଳମାଳ ଆରମ୍ଭ ହୋଇ ଯାଇଥିଲା। ଏହି ସମୟରେ ହଠାତ୍ ମଣ୍ଡଳ-କମିଶନର ସୁପାରିଶକୁ କାର୍ଯ୍ୟକାରୀ କରିବାର ସିଦ୍ଧାନ୍ତ ନେଇ ବିଶ୍ୱନାଥ ପ୍ରତାପ ସିଂହ ସରକାର ପରିସ୍ଥିତିକୁ ଆହୁରି ଗୋଳମାଳିଆ କରି ଦେଲେ। ଅନଗ୍ରସର ଜାତିର ଲୋକମାନଙ୍କ ସମର୍ଥନ ହାସଲ ଉଦ୍ଦେଶ୍ୟରେ ଅତି ତରବରିଆ ଭାବରେ ଏହି ନିଷ୍ପତ୍ତି ଘୋଷଣା କରାଯାଇଥିଲା। କିନ୍ତୁ ଦେଖାଗଲା ଯେ, ସରକାରୀ ଚାକିରୀ-ବାକିରୀରେ ଶତକଡ଼ା ୨୭ ଭାଗ ସ୍ଥାନ ସଂରକ୍ଷଣର ଏହି ବ୍ୟବସ୍ଥାକୁ ଦେଶର ନୂତନ ପ୍ରଜନ୍ମ ଆନ୍ତରିକ ସମର୍ଥନ ଦେଇ ପାରିଲେ ନାହିଁ। ଏହା ବ୍ୟତୀତ ଆହୁରି ଲକ୍ଷ୍ୟ କରାଗଲା ଯେ, ବାମପନ୍ଥୀ ଦଳଗୁଡ଼ିକୁ ଜାତୀୟ ସାମ୍ମୁଖ୍ୟ ସରକାର ଅନେକ ବେଶୀ ଗୁରୁତ୍ୱ ଦେଉଛନ୍ତି। ଏହାର ପ୍ରତିକ୍ରିୟା ସ୍ୱରୂପ ଅଯୋଧ୍ୟାରେ ରାମ ମନ୍ଦିର ନିର୍ମାଣର ପ୍ରଶ୍ନ ମଧ୍ୟ ଅଧିକ ଜଟିଳ ହୋଇଉଠିଲା। ସେହି ସମୟରେ ହିଁ ବାହାରିଲା ଆଡ଼ଭାନୀଙ୍କ 'ରାମ-ରଥ'। ଅନେକେ ମତ ପ୍ରକାଶ କରିଛନ୍ତି ଯେ, ଏହି 'ରଥଯାତ୍ରା'ର ଉଦ୍ଦେଶ୍ୟ ଥିଲା ସାମ୍ମୁଖ୍ୟ-ସରକାରର ପତନ ଘଟାଇବା। କିନ୍ତୁ ତାହା ଠିକ୍ ନୁହେଁ। 'ରଥଯାତ୍ରା' ଜରିଆରେ ବି.ଜେ.ପି. ଦେଶବାସୀଙ୍କ ନିକଟରେ ଗୋଟାଏ ବାର୍ତ୍ତା ପହଞ୍ଚାଇ ଦେବା ପାଇଁ ଚାହିଁଥିଲା। ତାହା ହେଲା  ଜାତିଆଣ ଭେଦଭାବରେ ନ ମାତି ଲୋକେ ରାମମନ୍ଦିର ନିର୍ମାଣ କାର୍ଯ୍ୟରେ ମନୋନିବେଶ କରନ୍ତୁ; ତଦ୍ୱାରା ଜାତୀୟ ସଂହତି ରକ୍ଷା କରାଯାଇ ପାରିବ। ବି.ଜେ.ପି.ର ସେ ବାର୍ତ୍ତା ସଂଖ୍ୟାଧିକ ହିନ୍ଦୁ-ମନକୁ ବେଶ୍ ସ୍ପର୍ଶ କରିଥିଲା। ରାଜୀବ ଗାନ୍ଧୀଙ୍କ ଅମଳରେ, ଶାହବାନୁ ମାମଲାରେ ସୁପ୍ରିମ କୋର୍ଟ ପ୍ରଥମେ ଯେଉଁ ରାୟ ଦେଇଥିଲେ, ତାକୁ ସଂବିଧାନ ସଂଶୋଧନ କରି ଓଲଟାଇ ଦିଆଯାଇଥିଲା। ହିନ୍ଦୁ-ମନରେ ଏ ଘଟଣାର ପ୍ରତିକ୍ରିୟା ମଧ୍ୟ ସୃଷ୍ଟି ହୋଇଥିଲା। କିନ୍ତୁ ଏହି ସଂକଟଜନକ ସମୟରେ ସମସ୍ୟାର ସମାଧାନ ପାଇଁ ବିଶ୍ୱନାଥ ପ୍ରତାପ- ସରକାର କୌଣସି ପଦକ୍ଷେପ ନେଲେ ନାହିଁ। ଏହି ସବୁ କାରଣରୁ, ବିଶେଷ କରି ଜନତା ଦଳରେ ଦେଖା

ଦେଇଥିବା ଗୋଳମାଳ ଯୋଗୁ ଶେଷରେ ୯୧ ମସିହା ନଭେମ୍ବର ୭ ତାରିଖରେ ଭି.ପି. ସିଂହଙ୍କ ଜାତୀୟ ସାମ୍ମୁଖ୍ୟ ସରକାରର ପତନ ହେଲା ।

ଏହା ପରେ ରାଷ୍ଟ୍ରପତି ଭବନ କିଛିଦିନ ପାଇଁ ରାଜନୀତିକ କ୍ରିୟାକଳାପର ଏକ କେନ୍ଦ୍ର ହୋଇ ଉଠିଲା । ଦେଖାଗଲା ଯେ ଜନତା ଦଳରେ ବିଭାଜନ ଘଟାଇବାର ଉଦ୍ୟମ ଚାଲିଛି ଏବଂ ଏହାର ବିଭାଜିତ ଏକ ଗୋଷ୍ଠୀକୁ କଂଗ୍ରେସ ଦଳ ସମର୍ଥନ ଦେବାକୁ ଚାହୁଁଛି । ଏ କ୍ଷେତ୍ରରେ ତତ୍‌କାଳୀନ ରାଷ୍ଟ୍ରପତି ଶ୍ରୀ ଭେଙ୍କଟରମଣଙ୍କର ବା କ'ଣ କରିବାର ଥିଲା ? ତାଙ୍କ ପାଖରେ ମଧ୍ୟ ଅନ୍ୟ କୌଣସି ଅପ୍‌ଶନ୍ ନ ଥିଲା ! ଗୋଟାଏ ଅପ୍‌ଶନ୍ ଥିଲା । ତାହା ହେଉଛି ପୁଣି ଏକ ଲୋକସଭା ନିର୍ବାଚନ କରାଯିବା ପାଇଁ ପରାମର୍ଶ ଦେବା । କିନ୍ତୁ ସେ କ୍ଷେତ୍ରରେ ପ୍ରଶ୍ନ ଥିଲା : ଯାନି ନିର୍ବାଚନ ହେଲେ ମଧ୍ୟ ରାଜନୈତିକ ସ୍ଥାୟିତ୍ୱ ଆସିବାର ବା କୌଣସି ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରିବାର ସମ୍ଭାବନା ଅଛି କି ? ଏଇ ସବୁ ବିଚାରରୁ ଶେଷରେ କଂଗ୍ରେସ ଦଳର ସମର୍ଥନରେ ଜନତା ଦଳତ୍ୟାଗୀ ଗୋଷ୍ଠୀର ନେତା ଶ୍ରୀ ଚନ୍ଦ୍ରଶେଖରଙ୍କ ନେତୃତ୍ୱରେ ଏକ ସରକାର ଗଢ଼ାଗଲା ଏବଂ ମାତ୍ର ଚାରିମାସ ପରେ କଂଗ୍ରେସର ସମର୍ଥନ ପ୍ରତ୍ୟାହାର ଯୋଗୁ ତାର ମଧ୍ୟ ପତନ ହେଲା ।

**।। ଜାତୀୟ ସରକାର ଗଠନ ପ୍ରସ୍ତାବ ।।**

ଦେଶରେ ରାଜନୈତିକ ଅସ୍ଥିରତାସୂଚକ ପରିସ୍ଥିତି ଦୃଷ୍ଟିରୁ ୧୯୯୦ମସିହା ନଭେମ୍ବର ମାସରେ ତତ୍‌କାଳୀନ ରାଷ୍ଟ୍ରପତି ଶ୍ରୀ ଆର୍. ଭେଙ୍କଟରମଣ ଦେଶରେ ଜାତୀୟ ସରକାର ଗଠନର ସମ୍ଭାବ୍ୟତା ସଂପର୍କରେ ବେଶ୍ ଗୁରୁତ୍ୱ ସହକାରେ ଆଲୋଚନାର ସୂତ୍ରପାତ କରିଥିଲେ । ଏ ସମ୍ବନ୍ଧରେ ସେ ଅନେକଙ୍କ ସହିତ ଆଳାପ-ଆଲୋଚନା କରିଥିଲେ । ସେତେବେଳେ ମୁଁ ପ୍ରକାଶ୍ୟରେ ଜାତୀୟ ସରକାର ଗଠନର ପ୍ରସ୍ତାବକୁ ସମର୍ଥନ ଜଣାଇଥିଲି । ପରେ ବି.ଜେ.ପି. ଦଳଗତ ଭାବରେ ମଧ୍ୟ ଏଥିଲାଗି ଏକ ପ୍ରସ୍ତାବ ଗ୍ରହଣ କରିଥିଲା । ଅର୍ଥାତ ମୋ ପ୍ରସ୍ତାବ ପ୍ରତି ଦଳ ସମର୍ଥନ ଜଣାଇଥିଲା । କିନ୍ତୁ ଏହି ଚିନ୍ତାଧାରା ଆଉ ବେଶି ଦୂର ଆଗେଇ ପାରିନଥିଲା । ତାର କାରଣ ଏ ପ୍ରସ୍ତାବକୁ ଅନ୍ୟାନ୍ୟ ଦଳମାନେ ସମର୍ଥନ କଲେ ନାହିଁ । କେବଳ ମଧୁ ଲିମାୟେ ବ୍ୟକ୍ତିଗତ ଭାବରେ ଏଥିପ୍ରତି ସମର୍ଥନ ଜଣାଇଥିଲେ ।

ଅନେକେ ସେତେବେଳେ ଅଭିଯୋଗ କରିଥିଲେ ଯେ ଶ୍ରୀ ଭେଙ୍କଟରମଣ ନିଜେ ପ୍ରଧାନମନ୍ତ୍ରୀ ହେବା ମତଲବରେ ହିଁ ଜାତୀୟ ସରକାର ଗଠନର ଆଉଡ଼ିଆଟା ବଜାରକୁ ଛାଡ଼ିଥିଲେ । କିନ୍ତୁ ଏ ଧାରଣା ସଂପୂର୍ଣ୍ଣ ଭୁଲ । ସେ ସମୟରେ ସେ ସମ୍ବନ୍ଧୀୟ ପ୍ରତିଟି ଆଲୋଚନାରେ ମୁଁ ଥିଲି । ପ୍ରଧାନମନ୍ତ୍ରୀ ହେବାର କୌଣସି କଳ୍ପନା ତାଙ୍କ ମନରେ ଆଦୌ ନଥିଲା । ଅରେ ହୁଏତ ତାଙ୍କୁ କେହି ଏକଥା କହିଥିଲା; କିନ୍ତୁ ତତ୍‌କ୍ଷଣାତ୍ ସେ

ନିଜେ ତାର ବିରୋଧ କରିଥିଲେ । ଶ୍ରୀ ଭେଙ୍କଟରମଣ ସ୍ପଷ୍ଟ ଭାବେ ଜଣାଇ ଦେଇଥିଲେ ଯେ, ସେ ନିଜେ ରାଷ୍ଟ୍ରପତି ଆସନରେ ବସି ଏ ଧରଣର ଆଲୋଚନା ବା ଭାବନାକୁ ମଧ୍ୟ ପ୍ରଶ୍ରୟ ଦେବେ ନାହିଁ । ତେଣୁ ତାଙ୍କୁ ପ୍ରଧାନମନ୍ତ୍ରୀ କରାଯିବାର ପ୍ରଶ୍ନ ହିଁ ନଥିଲା । ତେବେ ଏକଥା ଠିକ୍ ଯେ, କେତେକ ମହଲରେ ପ୍ରଧାନମନ୍ତ୍ରୀ ପଦ ପାଇଁ ଡଃ ଶଙ୍କର ଦୟାଲ ଶର୍ମାଙ୍କ ନାମ ନେଇ ଚିନ୍ତା କରାଯାଇଥିଲା । ତେବେ ତାହା ମଧ୍ୟ ବେଶି ଦୂର ଆଗେଇ ପାରିନଥିଲା । କିନ୍ତୁ ଯେଉଁମାନେ ଏ ବ୍ୟାପାରରେ ଶ୍ରୀ ଭେଙ୍କଟରମଣଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି, ସେମାନେ ହୁଏତ ଠିକ୍ କଥା ଜାଣନ୍ତି ନାହିଁ ଅଥବା ଜାଣିଶୁଣି ଇଚ୍ଛାକୃତ ଭାବେ ତାଙ୍କୁ ଦୋଷୀ ସାବ୍ୟସ୍ତ କରିବା ଲାଗି ସେ ପ୍ରକାର କଥା କହୁଛନ୍ତି । ଇଚ୍ଛା କରିଥିଲେ ଶ୍ରୀ ଭେଙ୍କଟରମଣ ଆଉ ଥରକ ଲାଗି ଦେଶର ରାଷ୍ଟ୍ରପତି ହୋଇ ପାରିଥାନ୍ତେ । କିନ୍ତୁ ସେଥିପାଇଁ ମଧ୍ୟ ସେ ନିଜେ କୌଣସି ଉଦ୍ୟମ ବା ଇଚ୍ଛା କରିନାହାନ୍ତି । ସ୍ୱତଃ ପ୍ରବୃତ୍ତ ଭାବରେ ହିଁ ସେ ରାଷ୍ଟ୍ରପତି ଭବନରୁ ବିଦାୟ ନେଇଛନ୍ତି ହସି ହସି । ସେହି କାରଣରୁ ତାଙ୍କ ପ୍ରତି ମୋର ବିଶେଷ ଶ୍ରଦ୍ଧା ଓ ସମ୍ମାନ ରହି ଆସିଛି । ମୁଁ ମନେ କରେ, ସମସ୍ତେ ତାଙ୍କର ଏ ଦୃଷ୍ଟାନ୍ତ ଅନୁକରଣ କରିବା ଉଚିତ୍ ।

୧୯୯୬ର ଦ୍ୱାଦଶ ଲୋକସଭା ନିର୍ବାଚନରେ ବି.ଜେ.ପି ସର୍ବଗରିଷ୍ଠ ଦଳ ହୋଇ ମଧ୍ୟ ଦେଶସେବାର ଅଧିକାର ପାଇଲା ନାହିଁ । କିପରି ଭାବରେ କ୍ଷମତାଲୋଭୀ ପ୍ରତିଟି ଦଳ ନୀତି ଓ ଆଦର୍ଶକୁ ବିସର୍ଜନ ଦେଇ ହାତକୁ ହାତ ମିଳାଇଲେ, ତାହା ଆଜି ଏକ କଳଙ୍କିତ ଘୃଣ୍ୟ ଇତିହାସ । ମୋତେ ସେ କଥା କହିବାକୁ ଲଜ୍ଜା ଲାଗୁଛି, ଭାବିବାକୁ ବି ଲଜ୍ଜା ଲାଗୁଛି । ତେଣୁ ସେ ପ୍ରସଙ୍ଗଟା ବରଂ ବାଦ୍ ଦେଉଛି ।

**॥ ନେହେରୁ-ଶାସ୍ତ୍ରୀ-ଇନ୍ଦିରା-ଦେଶାଇ-ରାଜୀବ-ନରସିଂହ ॥**

ଏ ଦେଶର ପ୍ରାୟ ପ୍ରତ୍ୟେକ ପ୍ରଧାନମନ୍ତ୍ରୀଙ୍କୁ ମୁଁ ଖୁବ୍ ନିକଟରୁ ଦେଖିଛି । ସେମାନଙ୍କ ମଧ୍ୟରୁ ପଣ୍ଡିତ ନେହେରୁଙ୍କ ପ୍ରତି ମୋର ଏକ ବିଶେଷ ଦୁର୍ବଳତା ରହିଛି । ତାର କାରଣ, ମୁଁ ଦେଖିଛି ନେହେରୁଜୀ ଯେପରି ଭାବେ ସଂସଦ ବ୍ୟାପାରରେ ସିରିୟସ୍ ଥିଲେ, ଠିକ୍ ସେପରି ଭାବରେ ଅନ୍ୟ କେହି ସିରିୟସ୍ ନଥିଲେ । ନେହେରୁ ନିଜେ ନିୟମିତ ଭାବରେ ଲୋକସଭାକୁ କେବଳ ଆସୁନଥିଲେ; ସେ ସମସ୍ତଙ୍କୁ ଲୋକସଭା ଅଧିବେଶନରେ ନିୟମିତ ଯୋଗ ଦେବା ପାଇଁ ପରାମର୍ଶ ଦେଉଥିଲେ । କେନ୍ଦ୍ରୀୟ ମନ୍ତ୍ରୀମାନଙ୍କୁ ସେ ଏଥିଲାଗି ବରାବର ତାଗିଦ୍ କରୁଥିଲେ । ନେହେରୁଜୀ ଥିଲେ ସାରା ଲୋକସଭାର ପରିବେଶଟାହିଁ ଅନ୍ୟ ରକମ ହୋଇଯାଉଥିଲା । ସମଗ୍ର ସଂସଦର ମୁଡ୍ ବୁଝି ଚଳିବାକୁ ଜାଣିଥିଲେ ସେ । ଏସବୁ ତାଙ୍କର ଗଣତାନ୍ତ୍ରିକ ମନୋଭାବର ଲକ୍ଷଣ । ତେବେ ସେ ବେଶ୍ 'ହେଡ୍ ଷ୍ଟ୍ରଙ୍ଗ' ମଧ୍ୟ ଥିଲେ । ଥରେ ଯଦି ତାଙ୍କ ମଥାରେ କିଛି ଗୋଟାଏ ଜୁଟିଲା, ତାକୁ ହିଁ ସେ ବିଶ୍ୱାସ କରୁଥିଲେ । ତାଙ୍କ ମନରୁ ସେଇଟା ଦୂର କରିବା ଅନ୍ୟ କାହାରି ପକ୍ଷରେ ସମ୍ଭବ ହେଉ ନଥିଲା ।

ତାଙ୍କର ଗୋଟାଏ ଘଟନା କହୁଛି । ଏହି ଘଟନାର ମଧ୍ୟ ଦେଇ ନେହେରୁଜୀଙ୍କ ବ୍ୟକ୍ତିତ୍ୱ ହିଁ ପ୍ରସ୍ଫୁଟିତ ହୁଏ । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ବିଶେଷ ସଚିବ ଥିଲେ ଏମ୍.ଓ.ମାଥାଇ । ମାଥାଇ ଥରେ ଲୋକସଭା ସଦସ୍ୟମାନଙ୍କ ଆଚରଣ ବ୍ୟାପାରରେ କିଛି କଟୁ ମନ୍ତବ୍ୟ ପ୍ରକାଶ କରିଥିଲେ । ତାକୁ ନେଇ ଲୋକସଭାରେ ତୀବ୍ର ପ୍ରତିବାଦର ସ୍ୱର ଉଠିଲା । ବହୁ ସଦସ୍ୟ ଦାବୀ କଲେ ଯେ ଏ ବିଷୟଟି ପ୍ରିଭିଲେଜ୍ କମିଟିର ବିଚାର ପାଇଁ ପଠାଇବାକୁ ପଡ଼ିବ । ପ୍ରାୟ ସବୁ ରାଜନୀତିକ ଦଳହିଁ ଏ ବ୍ୟାପାରରେ ବିକ୍ଷୁବ୍ଧ ହୋଇ ଉଠିଥିଲେ । ଲୋକସଭାରେ ଏ ବ୍ୟାପାର ନେଇ ହଇଚଇ ହେଉଥିବା ବେଳେ ନେହେରୁ ପ୍ରଥମେ ତାଙ୍କର ସଚିବଙ୍କୁ ବଞ୍ଚାଇବା ଲାଗି କିଛିଟା ଉଦ୍ୟମ କଲେ । ସେ କହିଲେ: 'ହଁ, ଏ ଘଟନାରେ ସଂସଦ ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯାଇଛି' । କିନ୍ତୁ ଏତିକିରେ ଲୋକସଭା ଶାନ୍ତ ହେଲାନାହିଁ । ବହୁ କଂଗ୍ରେସ ସଦସ୍ୟ ମଧ୍ୟ ମାଥାଇଙ୍କ ମନ୍ତବ୍ୟରେ ଖୁସି ନଥିଲେ । ତେଣୁ ସେମାନେ ମଧ୍ୟ ଆପତ୍ତି ଜଣାଇବାରେ ଲାଗିଲେ । ନେହେରୁଜୀ ସଙ୍ଗେ ସଙ୍ଗେ ହିଁ ସଦନର ମୁଡ୍‌ଟା ବୁଝିଗଲେ ଏବଂ ଠିଆ ହୋଇପଡ଼ି ସଭ୍ୟମାନଙ୍କର ସେ ଦାବୀଟା ମାନିନେଲେ । ସେ ସମୟରେ ନେହେରୁଜୀ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ, ତାକୁ ଦେଶର ପ୍ରତ୍ୟେକ ଭାବୀ ପ୍ରଧାନମନ୍ତ୍ରୀ ବରାବର ମନେ ରଖିବା ଉଚିତ୍ । ସେ କହିଥିଲେ : 'ସଂସଦରେ ସଂଖ୍ୟାଗରିଷ୍ଠ ସଦସ୍ୟ ଯାହା ମନେ କରନ୍ତୁ ନା କାହିଁକି, ସଂସଦର ଗୋଟାଏ ଅଂଶ ଯେତେବେଳେ ମନେ କରୁଛନ୍ତି ଯେ ବିଷୟଟି ପ୍ରିଭିଲେଜ୍ କମିଟିକୁ ପଠାଯିବା ଉଚିତ୍, ସେତେବେଳେ ସେହି ଅଂଶଟିର ମନୋଭାବକୁ ମଧ୍ୟ ଆମେ ଯଥେଷ୍ଟ ଗୁରୁତ୍ୱ ଓ ସମ୍ମାନ ଦେବା ଉଚିତ୍ ।'

ନେହେରୁଙ୍କ ପରେ ଆସିଲେ ଲାଲ ବାହାଦୁର ଶାସ୍ତ୍ରୀ । ଉଭୟଙ୍କ ଚରିତ୍ରରେ ଥିଲା ଅନେକ ବ୍ୟବଧାନ । ଜଣେ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ପ୍ରାପ୍ତ ପାଶ୍ଚାତ୍ୟର ଶିକ୍ଷାରେ ଶିକ୍ଷିତ, ଅନ୍ୟଜଣକ କାଶୀ ବିଦ୍ୟାପୀଠରେ ପଢ଼ାଶୁଣା କରି ବଡ଼ ହୋଇଛନ୍ତି ଓ ସେହିଠାରୁ ହିଁ 'ଶାସ୍ତ୍ରୀ' ଉପାଧି ପାଇଛନ୍ତି । ରେଳ ମନ୍ତ୍ରୀ ରୂପେ ଶାସ୍ତ୍ରୀଜୀ ଯେଉଁଦିନ ହିନ୍ଦୀରେ ରେଳ ବଜେଟ୍ ପେଶ୍ କରିଥିଲେ, ସେଦିନଟା ମୋର ଏବେ ବି ମନେପଡ଼େ ।

ଇନ୍ଦିରାଜୀଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା । ମୋରାରଜୀ ଦେଶାଇଙ୍କୁ ଦେଖିଛି ଖୁବ୍ ସ୍ୱଷ୍ଟ ଭାବେ ନିଜର ମତାମତ ବ୍ୟକ୍ତ କରିଥାନ୍ତି । ଅନ୍ୟର ବକ୍ତବ୍ୟ ଶୁଣିବା ପୂର୍ବରୁ ହିଁ ସେ ନିଜର ମତ ଜଣାଇ ଦେଇଥାନ୍ତି । ସେ ଦିଗରୁ ଇନ୍ଦିରା ଥିଲେ ଅନେକ ଚତୁର । ସେ ଅନେକ ବେଶି ଶୁଣୁଥିଲେ, ଝଟ୍ କରି କୌଣସି ମନ୍ତବ୍ୟ ପ୍ରକାଶ କରୁନଥିଲେ । କିନ୍ତୁ ମୁଁ ଯେତେବେଳେ ହିଁ ତାଙ୍କ ସହିତ ଦେଖା କରିଛି, ମୋର ମନେ ହୋଇଛି, ତାଙ୍କ ମନ ଭିତରେ ଯେପରି ଗୋଟାଏ କିଛି ଅଜଣା ଭୟ ବସା ବାନ୍ଧିଛି । ହୁଏତ ବାଲ୍ୟ କାଳରେ ନିଜର ମା' ଅସୁସ୍ଥ ରହିବା ଓ ବାବା ଜେଲ୍‌ରେ ରହିବା ଏହାର ହେତୁ ହୋଇପାରେ । ତାଙ୍କ ଭିତରେ ଗୋଟାଏ ପ୍ରଚଣ୍ଡ ନିରାପତ୍ତାର ଅଭାବ-ବୋଧ

ରହିଥିଲା । ସେ ତୀକ୍ଷ୍ଣ ଭାବରେ ସମସ୍ତଙ୍କୁ ଓ୍ୱାଚ କରୁଥିଲେ । ଖୁବ୍ ଖୋଲାଖୋଲି ଭାବରେ କୌଣସି କଥା କହୁ ନଥିଲେ । ସବୁ ସମୟରେ ତାଙ୍କର ମନେ ହେଉଥିଲା, ଯେମିତି ଗୋଟାଏ ଷଡ଼ଯନ୍ତ୍ର ଚାଲିଛି ତାଙ୍କ ଚାରିପାଖରେ । ଏଥିଯୋଗୁ ଇନ୍ଦିରାଙ୍କ ବ୍ୟକ୍ତିତ୍ୱକୁ ସବୁବେଳେ ଠିକ୍ ଭାବରେ ବୁଝାଯାଇ ପାରୁନଥିଲା । ଠିକ୍ ଏହି କାରଣରୁ ହୁଏତ ସେ ନୀଲମ୍ ସଂଜୀବ ରେଡୀଙ୍କୁ ବିଶ୍ୱାସ କରି ପାରିନଥିଲେ । ରାଷ୍ଟ୍ରପତି ପଦ ପାଇଁ ତାଙ୍କୁ ମନୋନୟନ କରାଯିବା ଘେନି ସେ କଥା ଦେଇଥିଲେ ମଧ ପରେ ହୁଏତ ତାଙ୍କର ଆଶଙ୍କା ହୋଇଥିଲା ଯେ ଶ୍ରୀ ରେଡ୍ଡୀ ରାଷ୍ଟ୍ରପତି ହେବାପରେ ତାଙ୍କୁ ପ୍ରଧାନମନ୍ତ୍ରୀ ପଦରୁ ହଟାଇ ଦେଇ ପାରନ୍ତି । ଅନ୍ୟ କେତେକଙ୍କ କଥା ଶୁଣି ହୁଏତ ସେ ଏପରି ଭାବିଥିଲେ ଓ ଭି.ଭି.ଗିରିଙ୍କୁ ଠିଆ କରାଇଥିଲେ ।

ଦେଶରେ ଜରୁରୀ ଅବସ୍ଥା ଜାରୀ କରିବା ବେଳେ ମଧ ଏହିପରି ଗୋଟାଏ ଭୟ ଇନ୍ଦିରାଙ୍କ ମନ ଭିତରେ କାର୍ଯ୍ୟ କରିଥିଲା । ତା' ହୋଇନଥିଲେ ସେ ସମୟରେ ତାଙ୍କ ନେତୃତ୍ୱକୁ ଚ୍ୟାଲେଞ୍ଜ କଲାଭଳି କୌଣସି ନେତା ହିଁ ନଥିଲେ । ତଥାପି ଅଦ୍ଭୂତ ଏକ ଭୟର ବଶବର୍ତ୍ତୀ ହୋଇ ଇନ୍ଦିରାଜୀ ଏହି ଭୁଲ୍ କାର୍ଯ୍ୟଟି ସେତେବେଳେ କରିଥିଲେ । ତେବେ ସେ ଯାହା ହେଉ, ବାଂଲାଦେଶକୁ ଏକ ସ୍ୱାଧୀନ ରାଷ୍ଟ୍ରରେ ପରିଣତ କରିବା ପଛରେ ଇନ୍ଦିରାଙ୍କ ଭୂମିକା ବିଶେଷ ଭାବେ ପ୍ରଶଂସନୀୟ ଥିଲା । ଅତ୍ୟାଚାରୀ ପାକିସ୍ତାନକୁ ପରାସ୍ତ କରାଇବା ଲାଗି ସେ ଯେଉଁ ରଣକୌଶଳ ପ୍ରସ୍ତୁତ କରିଥିଲେ, ଗୋଟିଏ କଥାରେ ତାହା ଚମତ୍କାର ଓ ଚିରସ୍ମରଣୀୟ । ଏ ସମୟରେ ତତ୍କାଳୀନ ପ୍ରତିରକ୍ଷା ମନ୍ତ୍ରୀ ବାବୁ ଜଗଜୀବନ ରାମଙ୍କର ମଧ ବିଶେଷ ଭୂମିକା ରହିଥିଲା । କିନ୍ତୁ କେହି ତାଙ୍କ କଥା କହନ୍ତି ନାହିଁ ।

ଅନ୍ୟ ଦିଗରେ, ଚୀନ୍‌ର ଭାରତ-ଆକ୍ରମଣ ସମୟରେ କେହି ଦୁଃଖୀ ନେହେରୁଜୀଙ୍କୁ ସେପରି ଭାବେ ଦାୟୀ କରିବାକୁ ସାହସ କରି ନାହାନ୍ତି । ସମସ୍ତେ ସେଦିନ ସେଥିପାଇଁ ଦାୟୀ କରିଥିଲେ ତତ୍କାଳୀନ ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀ କୃଷ୍ଣ ମେନନ୍‌ଙ୍କୁ ।

ସେ ଯାହା ହେଉ, ଇନ୍ଦିରାଜୀଙ୍କର ବିଭିନ୍ନ କାର୍ଯ୍ୟକୁ ଯେଉଁମାନେ ପ୍ରଶଂସା କରୁଥିଲେ, ମୁଁ ମଧ ସେମାନଙ୍କ ମଧରେ ଅନ୍ୟତମ ଥିଲି । କିନ୍ତୁ ତାଙ୍କୁ କେବେ ବି 'ଦୁର୍ଗା' ବୋଲି ସମ୍ବୋଧନ କରି ନଥିଲି । ଏ ବିଷୟରେ ପୂର୍ବରୁ ଲେଖିଛି । ଏଠାରେ ପୁଣି ଥରେ କହୁଛି । ଶ୍ରୀମତୀ ପୁପୁଲ ଜୟକାର ସେତେବେଳେ ଇନ୍ଦିରାଜୀଙ୍କ ଜୀବନୀ ଲେଖୁଥିଲେ । ଦିନେ ସେ ମୋତେ କହିଲେ, ସେ ତାଙ୍କ ବହିରେ, ଇନ୍ଦିରାଙ୍କୁ ମୁଁ 'ମା' ଦୁର୍ଗା' ବୋଲି କହିଥିବା ବିଷୟ ଉଲ୍ଲେଖ କରିବାକୁ ଚାହାନ୍ତି । ମୁଁ ତାଙ୍କୁ କହିଲି: , କଥାଟା ଆଦୌ ଠିକ୍ ନୁହେଁ । ପ୍ରଥମେ ଶ୍ରୀମତୀ ଜୟକାର ସେକଥା ବିଶ୍ୱାସ କଲେ ନାହିଁ । କିନ୍ତୁ ପରେ ଲୋକସଭାର ସଂପୃକ୍ତ ବିବରଣୀ ପଢ଼ି ଜାଣିବାକୁ ପାଇଥିଲେ ଯେ ପ୍ରକୃତରେ ମୁଁ ସେ ପ୍ରକାର କଥା କହି ନଥିଲି ।

ମୁଁ ସେପରି କଥା ସେତେବେଳେ କହି ନଥିଲେ ମଧ୍ୟ, ସେ ପ୍ରଚାରଟା ତେବେ ହେଲା କିପରି ? କଥା ହେଲା : ସେତେବେଳେ ଅନେକ ନେତା ହିଁ ତାଙ୍କୁ 'ମା'ଦୁର୍ଗା' ବୋଲି ସମ୍ବୋଧନ କରୁଥିଲେ ବା ତାଙ୍କୁ ଦୁର୍ଗାଙ୍କ ସହିତ ତୁଳନା କରୁଥିଲେ । ସେହି ପ୍ରକାର ପରିସ୍ଥିତିରେ ହୁଏତ କୌଣସି ସାମ୍ବାଦିକ ଅନ୍ୟ କାହାର କଥାଟିକୁ ମୋ ନାମରେ ଚଳାଇ ଦେଇଥିଲେ । ହୁଏତ ସେଇଥିରୁ ଏ ପ୍ରକାର ପ୍ରଚାର ସୃଷ୍ଟି ହୋଇଥିଲା । ଅବଶ୍ୟ ଏ କଥା ସତ ଯେ, ଇନ୍ଦିରାଙ୍କୁ ମୁଁ ବେଳେ ବେଳେ ପ୍ରଶଂସା କରୁଥିଲି ଓ ତାଙ୍କୁ ଶ୍ରଦ୍ଧା ମଧ୍ୟ କରୁଥିଲି । ସଂସଦରେ ଅବଶ୍ୟ ଅନେକ ସମୟରେ ବିଭିନ୍ନ ପ୍ରଶ୍ନ ଘେନି ତାଙ୍କ ସହିତ ମୋର ଉତ୍ତାଳ ବିତର୍କ ଓ ସଂଘର୍ଷ ହେଉଥିଲା । କିନ୍ତୁ ରାଜନୈତିକ ସଂଘାତ ବ୍ୟକ୍ତିଗତ ସୁସମ୍ପର୍କର ପଥରେ କେବେ କୌଣସି ପ୍ରକାରେ ଅନ୍ତରାୟ ହୋଇନାହିଁ । ସେ ବାସ୍ତବିକ୍ ଜଣେ ସୁଯୋଗ୍ୟ ପିତାର ସୁଯୋଗ୍ୟ କନ୍ୟା ଥିଲେ ।

ଇନ୍ଦିରାଙ୍କ ପରେ ରାଜୀବ । ରାଜୀବ ଏକ ଟ୍ରାଜିକ୍ ପରିସ୍ଥିତିର ମଧ୍ୟ ଦେଇ ଦେଶର ପ୍ରଧାନମନ୍ତ୍ରୀ ହେଲେ । ସେ ପ୍ରଧାନମନ୍ତ୍ରୀ ହେବାକୁ ମଧ୍ୟ ଚାହିଁ ନଥିଲେ । ସେ ପାଇଲଟ ହେବାକୁ ହିଁ ଚାହିଁଥିଲେ । ସମସ୍ତେ ତାହା ଜାଣନ୍ତି । ଥରେ ମୁଁ ଏକ ବିମାନରୁ ଅବତରଣ କରୁଛି; ଦେଖିଲି ଜଣେ ଯୁବକଙ୍କୁ, ହାତରେ ତାଙ୍କର ପାଇଲଟ-ଟୋପି । ମୋତେ ଦେଖି ସେ ଆଗେଇ ଆସି କହିଲେ: 'ନମସ୍କାର' । ସେଦିନ ମୁଁ ତାଙ୍କୁ ଚିହ୍ନି ପାରିନଥିଲି । କେହି ଜଣେ ସହଯାତ୍ରୀ ମୋତେ ଫିସ୍ ଫିସ୍ କରି ଜଣାଇଲେ; ଏଇ ହେଉଛନ୍ତି ପ୍ରଧାନମନ୍ତ୍ରୀଙ୍କ ପୁଅ, ଏଇ ବିମାନର ପାଇଲଟ୍ ରାଜୀବ ଗାନ୍ଧୀ ।

ଏହାପରେ ପୁଣି ମୁଁ ତାଙ୍କୁ ଦେଖିଥିଲି ଦିଲ୍ଲୀର ବିମାନ ବନ୍ଦରରେ । କୌଣସି କାରଣରୁ ବିମାନ କେତେ ଘଣ୍ଟା ଲେଟ୍ କରୁଥିଲା । ରାଜୀବ ଇଚ୍ଛା କରିଥିଲେ ସୋନିଆ, ରାହୁଲ ଓ ପ୍ରିୟଙ୍କାଙ୍କୁ ନେଇ ଘରକୁ ଫେରି ଆସି ପାରିଥାନ୍ତେ । କିନ୍ତୁ ସେ ତାହା ନ କରି ଠିକ୍ କଲେ, ସେଇଠି ଏୟାର ପୋର୍ଟର ଲାଉଞ୍ଜରେ ପୁଅ ଝିଅଙ୍କ ସହିତ ଖେଳିବେ । ଏହିପରି ଜଣେ ସରଳ ମଣିଷ ଥିଲେ ରାଜୀବ । ପ୍ରଧାନମନ୍ତ୍ରୀ ହେବା ପରେ କିନ୍ତୁ ତାଙ୍କ ଭିତରେ ଅନେକ ପରିବର୍ତ୍ତନ ଆସିଥିଲା । ତାଙ୍କର ଉପଯୁକ୍ତ ଉପଦେଷ୍ଟାର ଅଭାବ ଥିଲା । ନିଜର ମଧ୍ୟ ଯଥେଷ୍ଟ ଅଭିଜ୍ଞତା ଓ ରାଜନୈତିକ ବୁଦ୍ଧି-ବିଚାରର ଅଭାବ ଥିଲା । ସର୍ବଦଳୀୟ ସଂସଦୀୟ କମିଟିର ସଦସ୍ୟ ହୋଇ ରାଜୀବ କାଶ୍ମୀରକୁ ଯାଇ ଯେ ପ୍ରକାର ଆଚରଣ କଲେ, ଅଥବା ନାମିବିୟାର ସ୍ୱାଧୀନତା ଅନୁଷ୍ଠାନରେ ନିଜେ ହାଜର ହୋଇ ତତ୍କାଳୀନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପ ସିଂହଙ୍କୁ ଯେପରି ଭାବେ ଅପମାନ କରିଥିଲେ, ତାହା ଠିକ୍ କାର୍ଯ୍ୟ ନଥିଲା । ଏହି ପରି ଜଣେ ଯୁବକ ଥିଲେ ରାଜୀବ ।

ଆଉ ନରସିଂହ ରାଓ ? ତାଙ୍କ ସମ୍ପର୍କରେ ବୋଧହୁଏ ବର୍ତ୍ତମାନ ଯେତେ କମ୍ କୁହାଯାଏ, ସେତେ ଭଲ । ବ୍ୟକ୍ତିଗତ ଭାବରେ ତାଙ୍କ ସହ ମୋର ସମ୍ପର୍କ ଭଲ । ମୋତେ ସେ ଥରେ 'ଗୁରୁଜୀ' ବୋଲି ପ୍ରକାଶ୍ୟରେ ସମ୍ବୋଧନ କରିଥିଲେ । ସେ କଥା

ନେଇ କେତେ ଲେଖାଲେଖି । କିନ୍ତୁ ତାଙ୍କ ସମ୍ପର୍କରେ ଦୁର୍ନୀତିର ତଥ୍ୟ ମୁଁ ସାମ୍ବାଦିକ ସମ୍ମିଳନୀ ଡକାଇ ପ୍ରକାଶ କରିଥିଲି । ନରସିଂହ ରାଓଙ୍କ ସମ୍ପର୍କରେ ବର୍ତ୍ତମାନ ବହୁ ତଦନ୍ତ ଚାଲିଛି, ମୋକଦ୍ଦମା ବି ଚାଲିଛି । ମୋର ଧାରଣା, ଯେପରି ଭାବରେ ସେ ଏ ସବୁ ପ୍ରଶ୍ନରେ ଜଡ଼ିତ ହୋଇ ପଡ଼ିଛନ୍ତି, ତାହା କେବଳ ତାଙ୍କ ପାଇଁ ବା ତାଙ୍କ ଦଳ ପାଇଁ ନୁହେଁ, ସାରା ଦେଶ ପକ୍ଷରେ ହିଁ ଦୁର୍ଭାଗ୍ୟଜନକ ।

ଅସଲରେ ଦୁର୍ନୀତି ବର୍ତ୍ତମାନ ଆମ ସମାଜରେ ଏକ ଅଙ୍ଗ ହୋଇ ଯାଇଛି । ଆଜିକାଲି ସଂସଦରେ ମଧ୍ୟ ନୀତିଗତ ବିତର୍କ ବା ଆଲୋଚନା ଆଉ ବା ହେଉଛି କାହିଁ ? ସବୁ ସମୟରେ ତ ଗୋଳମାଳ, ବ୍ୟକ୍ତିଗତ କୁତ୍ସା । ନୂତନ ପ୍ରଜନ୍ମ ମଧ୍ୟରେ ପାଶ୍ଚାତ୍ୟର ଝଡ-ହାୱା ଆସି ଲାଗୁଛି । ଲାଗୁ । କିନ୍ତୁ ନୈତିକତା ତ ଶାଶ୍ୱତ । ଆମ ଦଳ ଭିତରେ ମଧ୍ୟ ନୂତନ ପ୍ରଜନ୍ମର କାହାରି କାହାରି ମଧ୍ୟରେ ଏହି ସବୁ ବିଶୃଙ୍ଖଳାର ପ୍ରବଣତା ଦେଖାଯାଉଛି । ନୂଆ ଏମ୍.ପି.ମାନେ ନିଜ ନିଜର ନିର୍ବାଚନମଣ୍ଡଳୀ ପାଇଁ କୌଣସି କାର୍ଯ୍ୟ କରୁନାହାନ୍ତି । ଏସବୁ ବ୍ୟାପାରରେ ଆମ ଦଳ ସମେତ ସବୁ ଦଳକୁ ସତର୍କ ହେବାକୁ ପଡ଼ିବ । ଅନେକ ସମୟରେ ପରିବର୍ତ୍ତନକୁ ମାନି ନେବାକୁ ପଡ଼େ । କିନ୍ତୁ ତା' ବୋଲି ଶାଶ୍ୱତ ସନାତନ ନୈତିକତା ଓ ମୂଲ୍ୟବୋଧକୁ ବର୍ଜନ କରିବାକୁ ପଡ଼ିବ କାହିଁକି ? ଦେଶର ଚିରନ୍ତନ ଧର୍ମକୁ ଆମେ ଘୃଣା କରିବା କାହିଁକି ? ନିଜର ପିଲା ଛୁଆ ବା ଆତ୍ମୀୟ ସ୍ୱଜନଙ୍କ ପାଇଁ ଆମେ ଦୁର୍ନୀତିଗ୍ରସ୍ତ ହେବା କାହିଁକି ? ନିଜର ଦେଶକୁ ଆମେ ବିଶ୍ୱଦରବାରରେ ଉଚ୍ଚତର ଆସନରେ ବସାଇବା ପାଇଁ ଲଢ଼େଇ ନକରିବା କାହିଁକି ? ପିଲାବେଳୁହିଁ ଏହି ମୌଳିକ ପ୍ରଶ୍ନଗୁଡ଼ିକ ମୋତେ ସ୍ୱପ୍ନବିଭୋର କରି ରଖିଛି ଓ ସେଥିପାଇଁ ମୁଁ ନିଜକୁ ଉତ୍ସର୍ଗ କରିଛି ।''

# ଦ୍ୱିତୀୟ ଥର ପ୍ରଧାନମନ୍ତ୍ରୀ ହେବା ପରେ ଅଟଳଜୀଙ୍କ ପ୍ରଥମ ସାକ୍ଷାତ୍କାର

**ଭା**ରତବର୍ଷର ଅବିକଳ୍ପ ରାଷ୍ଟ୍ରନାୟକ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀ ସଂପ୍ରତି ଦ୍ୱିତୀୟ ଥର ପାଇଁ ପ୍ରଧାନମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରି ନିଜର ସହକର୍ମୀମାନଙ୍କ ସହିତ ପ୍ରଶାସନ କ୍ଷେତ୍ରକୁ ଏକ ନୂତନ ନେତୃତ୍ୱ ଓ ଦିଗ୍‌ଦର୍ଶନ ଦେବାର ବହୁବାଂଛିତ କାର୍ଯ୍ୟ ଆରମ୍ଭ କରିଛନ୍ତି । ପ୍ରଥମ ଥର ୧୯୯୬ ମେ ମାସରେ ମାତ୍ର ୧୨ ଦିନ ପାଇଁ ତାଙ୍କୁ ପ୍ରଧାନମନ୍ତ୍ରୀ ଆସନରେ ବସିବାର ସୁଯୋଗ ମିଳିଥିଲା । କେଉଁ ପରିସ୍ଥିତିରେ ତାଙ୍କୁ ସେତେବେଳେ ଏ ଦାୟିତ୍ୱ ପରିହାର କରିବାକୁ ପଡ଼ିଥିଲା, ତାହା ସମସ୍ତେ ଜାଣନ୍ତି । ଏଠାରେ ତାର ପୁନରାବୃତ୍ତି ଅନାବଶ୍ୟକ । ସେତେବେଳେ ସେ ନିଜ ମନ୍ତ୍ରିମଣ୍ଡଳର ପଦତ୍ୟାଗ ସଂପର୍କରେ ଲୋକସଭାରେ ସୂଚନା ଦେବା ସମୟରେ କହିଥିଲେ: "ଆଜି ସଂଖ୍ୟାବଳ ଆଗରେ ଆମେ ନତି ସ୍ୱୀକାର କରୁଛୁଁ ସତ; କିନ୍ତୁ ଏ କଥା ବି କହି ରଖୁଛୁଁ, ଯେଉଁ କାର୍ଯ୍ୟ ଆମେ ହାତକୁ ନେଇଛୁଁ, ସେହି ରାଷ୍ଟ୍ରୀୟ ଉଦ୍ଦେଶ୍ୟକୁ ପୂର୍ଣ୍ଣ ନ କରିବା ପର୍ଯ୍ୟନ୍ତ ବିଶ୍ରାମ ନେବୁଁ ନାହିଁ, ଆରାମରେ ବସିଯିବୁଁ ନାହିଁ । ଆମେ ପୁଣି ଏଠାକୁ ଫେରିବୁଁ ।"

ଏଥର, ଶ୍ରୀଯୁକ୍ତ ବାଜପେୟୀ ୨୭.୩.୯୮ ତାରିଖରେ ନିଜ ସରକାର ସପକ୍ଷରେ ଆସ୍ଥା ପ୍ରସ୍ତାବ ଆଗତ କଲାବେଳେ ସେହି କଥାକୁ ସ୍ମରଣ କରାଇ ଦେଇ କହିଥିଲେ : "ସେଦିନ ମୁଁ ଏହି ସଦନରେ ଏହି ଆସନରୁ ଯାହା କହିଥିଲି, ତଦନୁଯାୟୀ ଆମେ ୧୯୯୮ ର ସାନି ନିର୍ବାଚନରେ ଜନାଦେଶ ପାଇ ପୁଣି ସେହି ସ୍ଥାନକୁ ଫେରି ଆସିଛୁଁ । କିନ୍ତୁ କେବଳ କ୍ଷମତା ଦଖଲ କରିବା ଆମର ଉଦ୍ଦେଶ୍ୟ କେବେ ବି ନଥିଲା; ଆଜି ମଧ୍ୟ ନାହିଁ । ମାତୃଭୂମିର ଯଥାର୍ଥ ସେବା ହିଁ ଆମର ଏକମାତ୍ର ଲକ୍ଷ୍ୟ । ଏହି ଲକ୍ଷ୍ୟ ପୂରଣ ପାଇଁ ଆମ ସମସ୍ତଙ୍କର ସମ୍ମିଳିତ ପ୍ରୟାସ ଓ ସଦିଚ୍ଛାପୂର୍ଣ୍ଣ ସହଯୋଗର ଆବଶ୍ୟକତା ଏକାନ୍ତ ଅପରିହାର୍ଯ୍ୟ । ଆସନ୍ତୁ ଆମେ ସମସ୍ତେ ଅଯଥା ଶତ୍ରୁତା ଓ ସଂଘର୍ଷର ମନୋଭାବ ପରିହାର କରି ଏକ ସୁଖୀ, ସମୃଦ୍ଧ, ସ୍ୱାଭିମାନୀ ଓ ସ୍ୱାବଲମ୍ବୀ ଭାରତବର୍ଷ ଗଢ଼ି ତୋଳିବା ନିମନ୍ତେ ସହଯୋଗ ଓ ସହମତିର ଏକ ନୂତନ ଅଧ୍ୟାୟ ଆରମ୍ଭ କରିବା ।"

ତା ପରଦିନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ବାଜପେୟୀ ଆସ୍ଥା ପ୍ରସ୍ତାବରେ ବିଜୟୀ ହେବାର ଅବ୍ୟବହିତ ପୂର୍ବରୁ ତଥା ପରେ ମଧ୍ୟ ଉପରୋକ୍ତ ମର୍ମରେ ସମସ୍ତଙ୍କୁ ଆହ୍ୱାନ ଜଣାଇଥିଲେ । ଦ୍ୱାଦଶ ଲୋକସଭା ନିର୍ବାଚନର ଫଳାଫଳ ପ୍ରକାଶ ପାଇବା ପରେ

ପରେ ଅଟଳଜୀ ନିଜର ପ୍ରଥମ ବକ୍ତବ୍ୟରେ ମଧ୍ୟ ଅନୁରୂପ ମତ ପ୍ରକାଶ କରି, ଦେଶରେ ଏକ ସହଯୋଗ ଓ ସହମତିର ନୂଆ ରାଜନୀତି ଆରମ୍ଭ କରାଯିବା ନିମନ୍ତେ ସବୁ ଦଳର ନେତାମାନଙ୍କୁ ଆହ୍ୱାନ ଜଣାଇଥିଲେ । ଏ ପର୍ଯ୍ୟନ୍ତ ବିଭିନ୍ନ ସଂବାଦପତ୍ର ଓ ପତ୍ରିକାରେ ତାଙ୍କର ଯେଉଁ ସବୁ ସାକ୍ଷାତ୍‌କାର ପ୍ରକାଶ ପାଇଛି, ସେଗୁଡ଼ିକରେ ମଧ୍ୟ ସେ ଏହି ବିଷୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି ।

ଅଟଳଜୀ ଦ୍ୱିତୀୟ ଥର ପାଇଁ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କରିବା ପରେ ତାଙ୍କର ପ୍ରଥମ ସାକ୍ଷାତ୍‌କାର ପ୍ରକାଶ ପାଇଥିଲା 'ପାଞ୍ଚଜନ୍ୟ'ରେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଅଟଳଜୀ ଥିଲେ ଏହାର ପ୍ରଥମ ସମ୍ପାଦକ । ୫୦ ବର୍ଷ ତଳେ ପ୍ରକାଶ ପାଇଥିବା ଏହି ସାପ୍ତାହିକ ପତ୍ରିକାଟି ସଂପ୍ରତି ଦେଶର ଏକ ବହୁଳ ପ୍ରସାରିତ ଓ ମର୍ଯ୍ୟାଦାବନ୍ତ ସାପ୍ତାହିକୀର ପ୍ରତିଷ୍ଠା ଲାଭ କରିଛି । ତାର ସଂପାଦକ ଶ୍ରୀ ତରୁଣ ବିଜୟଙ୍କ ଦ୍ୱାରା ଗୃହୀତ ଏବଂ 'ପାଞ୍ଚଜନ୍ୟ'ର ୧୯୯୮ ମାର୍ଚ୍ଚ ୨୨ ତାରିଖ ସଂଖ୍ୟାରେ ପ୍ରକାଶିତ ଅଟଳଜୀଙ୍କ ସାକ୍ଷାତ୍‌କାରର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି । ଏଥିରୁ ତାଙ୍କ ସରକାର ସମକ୍ଷରେ ସଂପ୍ରତି ରହିଥିବା ଆହ୍ୱାନ ଓ ପ୍ରାଥମିକତା ସଂପର୍କରେ ସମ୍ୟକ୍ ସୂଚନା ମିଳିବା ସଂଗେ ସଂଗେ, ତାଙ୍କ ବିଚାରଧାରା ଓ କର୍ମଧାରାର କିଛି ପରିଚୟ ମଧ୍ୟ ପାଠକମାନେ ପାଇ ପାରିବେ ।

ତରୁଣ ବିଜୟ : ଅଟଳଜୀ ! ଜାତୀୟ ରାଜନୀତିରେ ସଂପ୍ରତି ଦେଖା ଦେଉଥିବା ଏହି ପରିବର୍ତ୍ତନର ଶ୍ରେୟ ଆପଣ କାହାକୁ ଦେଉଛନ୍ତି ?

ଅଟଳଜୀ : ଭାରତବର୍ଷର ଜନତାକୁ । ଅବଶ୍ୟ ଏହି ସ୍ଥିତିକୁ ପ୍ରାପ୍ତ କରିବାରେ ନିଶ୍ଚିତ ଭାବେ ଆମ ବିଚାରଧାରାର ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ରହିଛି । ଆମର ବିଚାରଧାରାକୁ ଯେ ଅଧିକରୁ ଅଧିକ ସ୍ୱୀକୃତି ମିଳୁଛି, ଏହା ତାର ସଂକେତ । ଆମକୁ ବିପର୍ଯ୍ୟସ୍ତ କରିବା ଓ ଜନତାଠାରୁ ଅସ୍ପୃଶ୍ୟ କରି ରଖିବା ନିମନ୍ତେ ନ୍ୟସ୍ତସ୍ୱାର୍ଥ ଶକ୍ତିମାନଙ୍କର ସମସ୍ତ ପ୍ରୟାସ ବିଫଳ ହୋଇଛି । ଆମର ବିରୋଧୀମାନେ ପରାସ୍ତ ହୋଇଛନ୍ତି । ଏ ନିର୍ବାଚନରେ ତଥାକଥିତ ସେକ୍ୟୁଲାରବାଦକୁ ମୁଦ୍ଦା (ଇସ୍ୟୁ) କରି ଆମକୁ ଜନ-ସମର୍ଥନରୁ ବଂଚିତ କରିବା ଓ ଆମ ବିରୁଦ୍ଧରେ ଅନ୍ୟ ଦଳମାନଙ୍କୁ ସଂଗଠିତ କରିବା ପାଇଁ ସେମାନଙ୍କର ସମସ୍ତ ଅପଚେଷ୍ଟା ବ୍ୟର୍ଥ ହୋଇଯାଇଛି । ଅଧିକାଂଶ ରାଜନୈତିକ ଦଳ ତଥା ଦେଶର ସଂଖ୍ୟାଧିକ ଜନତା ଭାଜପାର ପ୍ରକୃତ ପରିଚୟ ଓ ମହତ ଉଦ୍ଦେଶ୍ୟର ଯଥାର୍ଥତା ହୃଦୟଙ୍ଗମ କରିଛନ୍ତି । ଏପରିକି ସଂଖ୍ୟାଲଘୁ ସଂପ୍ରଦାୟର ଲୋକେ ମଧ୍ୟ ଏବେ ବୁଝିଲେଣି ଯେ, ତଥାକଥିତ ସେକ୍ୟୁଲାରବାଦ ବା ଧର୍ମନିରପେକ୍ଷତାର ନାମରେ ସେମାନଙ୍କୁ ରାଜନୈତିକ ଶୋଷଣର ଶିକାର କରାଯାଉଛି ଓ ସେମାନଙ୍କର ମୂଳ ତଥା ପ୍ରକୃତ ସମସ୍ୟାଗୁଡ଼ିକ ଉପରୁ ସେମାନଙ୍କର ଧ୍ୟାନ ଅନ୍ୟ ଆଡ଼କୁ ଆକୃଷ୍ଟ କରାଇ ନିଆଯିବାର ଚେଷ୍ଟା କରାଯାଉଛି । ତେବେ ସେ ଯାହା ହେଉ, ଆମେ ଏ ସବୁ ସଂକ୍ରାନ୍ତରେ ଯାହା

କହିଛୁଁ, ତାକୁ ବର୍ତ୍ତମାନ କେନ୍ଦ୍ରରେ କାର୍ଯ୍ୟକାରୀ କରି ଦେଖାଇବାର ବେଳ ଆସିଛି। ଆମ ଦେଶର ରାଜନୀତିରେ ବର୍ତ୍ତମାନ ଏକ ବିରାଟ ମୋଡ଼ ପରିବର୍ତ୍ତନର ସମୟ ଆସିଛି। ଆମକୁ ଏହାର ସଦୁପଯୋଗ କରି ଏଥିରୁ ଯଥେଷ୍ଟ ଫାଇଦା ଉଠାଇବାକୁ ପଡ଼ିବ। ଦେଶ ଆଗରେ ରହିଥିବା ଆହ୍ୱାନଗୁଡ଼ିକର ଉପଯୁକ୍ତ ମୁକାବିଲା କରିବାକୁ ପଡ଼ିବ। ବହୁ ଆଶଙ୍କା ଓ ତ୍ରୁଟି-ବିଚ୍ୟୁତିକୁ ଦୂର କରି ଦେଶର ପ୍ରଗତି ଓ କଲ୍ୟାଣର ପଥକୁ ପ୍ରଶସ୍ତ କରିବାକୁ ପଡ଼ିବ।

ତରୁଣ ବିଜୟ : ଆପଣଙ୍କ ସରକାର ପାଇଁ ତ ଭାଜପାର ଘୋଷଣା-ପତ୍ର ବା ନିର୍ବାଚନ ଇସ୍ତାହାରକୁ କାର୍ଯ୍ୟକାରୀ କରାଇବା କଠିନ ହେବ। କାରଣ ଏକ ରାଷ୍ଟ୍ରୀୟ କାର୍ଯ୍ୟକ୍ରମକୁ ନେଇ ଆପଣ ସରକାର ଚଳାଇବେ। ଏ ପରିସ୍ଥିତିରେ ଆପଣଙ୍କ ମିତ୍ର, ଶୁଭେଚ୍ଛୁ ଓ କର୍ମୀମାନେ ଆପଣଙ୍କ ସରକାରଠାରୁ କି ପ୍ରକାର ପ୍ରତ୍ୟାଶା କରି ପାରିବେ ?

ଅଟଳଜୀ : ଦେଶ ପାଇଁ ବର୍ତ୍ତମାନ ଏକ ଉତ୍ତମ ପ୍ରଶାସନର ବିଶେଷ ଆବଶ୍ୟକତା ରହିଛି। ସରକାର ନିଜର ମୌଳିକ ବା ପ୍ରାଥମିକ କର୍ତ୍ତବ୍ୟଗୁଡ଼ିକ ପାଳନ କରନ୍ତୁ, ପ୍ରଶାସନ ସ୍ୱଚ୍ଛ ଓ ନିର୍ମଳ ହେଉ, କୌଣସି ପ୍ରକାର ଭେଦଭାବ ବା ପାତର ଅନ୍ତର ରଖା ନ ଯାଇ ସବୁ ନାଗରିକଙ୍କୁ ସୁରକ୍ଷା ଓ ନ୍ୟାୟ ମିଳୁ, ଲୋକମାନଙ୍କର ନିମ୍ନତମ ଆବଶ୍ୟକତା ପୂରଣ ପାଇଁ ନିର୍ଭରଯୋଗ୍ୟ ବ୍ୟବସ୍ଥା ହେଉ..... ଏହା ହିଁ ବର୍ତ୍ତମାନ ଆମ ପାଇଁ ସବୁଠୁ ବେଶୀ ଜରୁରୀ। ଗତ ପଚାଶ ବର୍ଷରେ ଏ ସବୁ କାର୍ଯ୍ୟ ଯେଉଁ ଗତିରେ ହେବାର ଥିଲା, ସେପରି ହୋଇ ପାରିନାହିଁ। ଏ ସବୁ କ୍ଷେତ୍ରରେ ଆମକୁ ଆନ୍ତରିକ ପ୍ରୟାସ କରିବାକୁ ପଡ଼ିବ। ଆବଶ୍ୟକସ୍ଥଳେ ଆମକୁ ଉଦାର ତଥା କଠୋର ନୀତି ଅନୁସରଣ କରିବାକୁ ହେବ। ଆବଶ୍ୟକସ୍ଥଳେ ଲୋକଙ୍କୁ ବୁଝାଇ ଶୁଝାଇ ସମସ୍ୟାର ସମାଧାନ ପାଇଁ ଉଦ୍ୟମ କରିବାକୁ ପଡ଼ିବ।

ଜନସାଧାରଣ ତଥା କର୍ମୀ ଓ କାର୍ଯ୍ୟକର୍ତ୍ତାମାନଙ୍କୁ ମୋର ଅନୁରୋଧ : ସେମାନେ ଆମର ଏଇ ସରକାର ଓ ତାର କାର୍ଯ୍ୟକଳାପ ସମ୍ବନ୍ଧରେ ତତ୍କାଳ କୌଣସି ନିଷ୍କର୍ଷରେ ପହଞ୍ଚିବା ଉଚିତ ହେବ ନାହିଁ। ଯେଉଁ ପ୍ରକାର ପରିସ୍ଥିତିରେ ମୋତେ ଏବେ ସରକାର ଗଢ଼ିବାକୁ ପଡ଼ିଛି, ତାହା ବାସ୍ତବିକ ଏକ ଅତ୍ୟନ୍ତ ଜଟୀଳ ପରିସ୍ଥିତି। ଗତ ଦେଢ଼ ବର୍ଷ ମଧ୍ୟରେ ଦେଶର ଆର୍ଥିକ ସ୍ଥିତି ବହୁତ ଖରାପ ହୋଇଯାଇଛି। ଦେଶ ଭିତରେ ରାଷ୍ଟ୍ରବିରୋଧୀ ତନ୍ତ୍ର ନାନା ପ୍ରକାର ଉପଦ୍ରବ ଆରମ୍ଭ କରି ଦେଇଛନ୍ତି। ଦେଶ ବାହାରୁ ମଧ୍ୟ ଆମ ଉପରେ ଅନ୍ତଃରାଷ୍ଟ୍ରୀୟ ଚାପ ପ୍ରୟୋଗର ଆଶଙ୍କା ରହିଛି। ଆମ ସରକାରଙ୍କୁ ଏ ସବୁ ପରିସ୍ଥିତିର ଦୃଢ଼ ମୁକାବିଲା କରିବା ପାଇଁ ପଡ଼ିବ।

ପ୍ରକୃତରେ ନିର୍ବାଚନରେ ମତଦାନ କରିବା ପରେ ମତଦାତାମାନଙ୍କର ଦାୟିତ୍ୱ ଶେଷ ହୋଇଯାଏ ନାହିଁ। ଆମେ ଚାହୁଁ, ସରକାର ବା ପ୍ରଶାସନରେ ନାଗରିକମାନଙ୍କର

ଭାଗୀଦାରୀ ରହୁ ବା ଲୋକେ ମଧ୍ୟ ସବୁ କାର୍ଯ୍ୟରେ ଅଂଶ ଗ୍ରହଣ କରନ୍ତୁ, ସାଧାରଣ ସହମତିର ଆଧାର ଉପରେ ବିଭିନ୍ନ ସମସ୍ୟାର ସମାଧାନ ପନ୍ଥା ବାହାର କରାଯାଉ ଏବଂ ସାରା ଦେଶରେ ରାଷ୍ଟ୍ରୀୟତା ଓ ଦେଶପ୍ରେମର ଏକ ଲହର ସୃଷ୍ଟି ହେଉ, ଯାହା କି ଜୀବନର ପ୍ରତ୍ୟେକ କ୍ଷେତ୍ରକୁ ସ୍ପର୍ଶ କରି ଏକ ସୁଖୀ ଓ ସମୃଦ୍ଧ ଭାରତବର୍ଷ ଗଢ଼ି ତୋଳିବା ଦିଗରେ ଆମକୁ ଆଗେଇ ନେଇ ପାରିବ । ଗତ ପଚାଶ ବର୍ଷର ସାଧନା ଓ ସଂଗ୍ରାମ ଫଳରେ ହିଁ ଆମେ ବର୍ତ୍ତମାନର ସ୍ଥିତିରେ ପହଞ୍ଚିବାକୁ ସମର୍ଥ ହୋଇଛୁଁ । ଜନସାଧାରଣଙ୍କ ପ୍ରେମ ଓ ସମର୍ଥନ ହିଁ ଆମର ପାଥେୟ । କର୍ମୀ ଓ କାର୍ଯ୍ୟକର୍ତ୍ତାମାନଙ୍କର ଶ୍ରମ ଓ ସହଯୋଗ ହିଁ ଆମର ପୁଞ୍ଜି । ମୋର ଦୃଢ଼ ବିଶ୍ୱାସ, ସମୟର କଷଟୀରେ ଆମେ ନିଶ୍ଚୟ ଉତ୍ତୀର୍ଣ୍ଣ ହୋଇ ପାରିବା ।

ତରୁଣ ବିଜୟ : ଆପଣଙ୍କ ସରକାର ମୁଖ୍ୟତଃ କେଉଁ କେଉଁ କ୍ଷେତ୍ରକୁ ବିଶେଷ ଗୁରୁତ୍ୱ ଦେବ ଓ ତ୍ୱରାନ୍ୱିତ ଭାବରେ କାର୍ଯ୍ୟ କରିବ ?

ଅଟଳଜୀ : ଆମେ ଆମର ରାଷ୍ଟ୍ରୀୟ କାର୍ଯ୍ୟକ୍ରମକୁ ହିଁ ଯଥୋଚିତ ଭାବରେ କାର୍ଯ୍ୟକାରୀ କରାଇବୁଁ । ଆମ ସରକାର ମୁଖ୍ୟତଃ ଏହି ରାଷ୍ଟ୍ରୀୟ ଏଜେଣ୍ଡାର ଆଧାର ଉପରେ ହିଁ ଚାଲିବ । ଆମେ ଦେଶ ତଥା ଜନସାଧାରଣଙ୍କ ସର୍ବାତ୍ମକ କଲ୍ୟାଣ ପାଇଁ ସବୁ ଦିଗ ପ୍ରତି ଦୃଷ୍ଟି ଦେଇ ଏହି କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛୁଁ । ଏଥିରେ ସବୁ ଜରୁରୀ ଆବଶ୍ୟକତାର ସମାବେଶ କରାଯାଇଛି ।

ତରୁଣ ବିଜୟ : ସରକାରରେ ସାମିଲ ହୋଇଥିବା କେତେକ ସହଯୋଗୀ ଦଳ ପକ୍ଷରୁ ସରକାର ଗଠନ ପୂର୍ବରୁ ଯେପ୍ରକାର ବ୍ୟବହାର ପ୍ରଦର୍ଶନ କରାଯାଇଥିଲା, ତାକୁ ଦୃଷ୍ଟିରେ ରଖି କିଛି ଲୋକ ଆଶଙ୍କା କରୁଛନ୍ତି ଯେ, ସେମାନେ ପୁଣି କେବେ ହୁଏତ ସେହିପରି ପରିସ୍ଥିତି ଭିଆଇ ଆପଣଙ୍କ ସରକାର ପାଇଁ ଅସ୍ଥିରତା ସୃଷ୍ଟି କରି ପାରନ୍ତି । ଏ ପରିସ୍ଥିତିରେ ସରକାର କେତେ କାଳ ସ୍ଥାୟୀ ହୋଇ ରହି ପାରିବ ?

ଅଟଳଜୀ : ମୋର ଦୃଢ଼ ବିଶ୍ୱାସ, ଏ ସରକାର ସ୍ଥାୟୀ ହୋଇ ପାରିବ । କାରଣ ପୂର୍ବର ସ୍ଥିତି ଆଉ ଏବେ ନାହିଁ । ଆନ୍ନା ଡ଼ି.ଏମ୍.କେ. ଓ ତାର ସହଯୋଗୀ ଦଳମାନେ ଇତିମଧ୍ୟରେ ସରକାରରେ ସାମିଲ ହୋଇ ସାରିଛନ୍ତି । ରାଷ୍ଟ୍ରୀୟ ଏଜେଣ୍ଡାର କାର୍ଯ୍ୟକାରିତା ପାଇଁ ସେମାନେ ଅଙ୍ଗୀକାରବଦ୍ଧ । ଅନ୍ୟ କେତେକ ସହଯୋଗୀଦଳ ବର୍ତ୍ତମାନ ସରକାରରେ ସାମିଲ ହୋଇ ନ ଥିଲେ ମଧ୍ୟ ପରେ ହୋଇ ପାରନ୍ତି । ସେମାନଙ୍କର ନିଜ ପ୍ରଦେଶର କେତେକ ପରିସ୍ଥିତି ଦୃଷ୍ଟିରୁ ହିଁ ସେମାନେ ଏବେ ସରକାରରେ ସାମିଲ ହେବାକୁ ଚାହାନ୍ତି ନାହିଁ । କିନ୍ତୁ ରାଷ୍ଟ୍ରୀୟ ଏଜେଣ୍ଡାର କାର୍ଯ୍ୟକାରିତା ଭିତ୍ତିରେ ସେମାନେ ସରକାରକୁ ନିଜର ସମର୍ଥନ ବଜାୟ ରଖିବାକୁ ଅଙ୍ଗୀକାରବଦ୍ଧ । ତାଛଡ଼ା ସଂଯୁକ୍ତ ସାମ୍ମୁଖ୍ୟର ଅନ୍ୟ କେତେକ ଦଳ ମଧ୍ୟ ପରୋକ୍ଷ ଭାବେ ସରକାର ପ୍ରତି

ପ୍ରସଙ୍ଗ-ଭିତ୍ତିକ ସମର୍ଥନ ଦେବା ପାଇଁ ଘୋଷଣା କରି ସାରିଛନ୍ତି । ଆମର ସହଯୋଗୀ ଦଳଗୁଡ଼ିକର ସବୁ ନେତା ସମନ୍ୱୟ ସମିତିରେ ସଦସ୍ୟ ହୋଇ ରହିବା ଫଳରେ ସେମାନେ ସମସ୍ତେ ସରକାରର ସ୍ଥାୟିତ୍ୱ ପାଇଁ ବରାବର ସକ୍ରିୟ ଓ ତତ୍ପର ରହିବେ । ଏହି ସବୁ ଦୃଷ୍ଟିରୁ ଆମ ସରକାର ପୁରା ମାତ୍ରାରେ ସ୍ଥାୟୀ ହେବ ବୋଲି ବିଶ୍ୱାସ କରାଯାଉଛି ।

ତରୁଣ ବିଜୟ : ମାର୍କସବାଦୀ କମ୍ୟୁନିଷ୍ଟ ନେତା ହରକିଷନ୍ ସିଂହ ସୁରଜିତ, ସମାଜବାଦୀ ପାର୍ଟି ନେତା ମୁଲାୟମ ସିଂହ ଯାଦବ, ରାଷ୍ଟ୍ରୀୟ ଜନତା ଦଳ ନେତା ଲାଲୁ ଯାଦବ ଓ ବି.ଏସ୍.ପି ନେତ୍ରୀ ମାୟାବତୀ ପ୍ରମୁଖ, ଆପଣଙ୍କ ସରକାରର ପତନ ଘଟାଇବା ପାଇଁ ପୁରା ଉଦ୍ୟମ ଚଳାଇବେ ବୋଲି ଯେଉଁ ଘୋଷଣା କରିଛନ୍ତି, ସେ ସଂପର୍କରେ ଆପଣଙ୍କର ବକ୍ତବ୍ୟ କଣ ?

ଅଟଳଜୀ : ସେମାନେ ତ ନିଶ୍ଚୟ ସେ ପ୍ରକାର ଉଦ୍ୟମ ବରାବର କରିବେ । କାରଣ ତାହା ହିଁ ତ ସେମାନଙ୍କର କାର୍ଯ୍ୟ । ତେଣୁ ସେମାନେ ନିଜର କର୍ତ୍ତବ୍ୟ କର୍ମରୁ ବିରତ ହେବେ କାହିଁକି ? ଆମେ ଦେଶର ନବ ନିର୍ମାଣ ପାଇଁ ସରକାରକୁ ଚାଲୁ ରଖିବା ନିମନ୍ତେ, ଦେଶକୁ ଶକ୍ତିଶାଳୀ କରି ଗଢ଼ିବା ନିମନ୍ତେ ଉଦ୍ୟମ କରିବୁଁ ଏବଂ ସେମାନେ ତାକୁ ଭାଙ୍ଗିବା ଲାଗି ଉଦ୍ୟମ କରିବେ । ଦେଖାଯାଉ, ନିର୍ମାଣର ଉଦ୍ୟମ ବିଜୟୀ ହେଉଛି କି ଧ୍ୱଂସର ପ୍ରୟାସ ବିଜୟୀ ହେଉଛି ।

## ।। ବାଜପେୟୀ ବଂଶର ବାସଭୂମି ।।

ଉତ୍ତର ପ୍ରଦେଶର ଆଗ୍ରା ଜିଲ୍ଲାରେ ଏକ ତହସିଲ ଅଛି, ଯାହାର ନାମ ବାହ୍। ସେହି ତହସିଲ୍‌ରେ ପବିତ୍ର ଯମୁନା ନଦୀ ତଟରେ ଅବସ୍ଥିତ ବଟେଶ୍ୱର ଗ୍ରାମ। ସେହି ଗାଁରେ ଅଛି ପ୍ରାଚୀନ ବଟେଶ୍ୱର ମହାଦେବଙ୍କ ମନ୍ଦିର। ଏହି ମନ୍ଦିର ନିଜର ପ୍ରାଚୀନତା ଓ ଲୋକମାନ୍ୟତା କାରଣରୁ ଶହ ଶହ ବର୍ଷ ଧରି ସ୍ଥାନୀୟ ଲୋକଙ୍କ ଶ୍ରଦ୍ଧା, ଭକ୍ତି ଓ ଆସ୍ଥାର ଏକ ପ୍ରଧାନ କେନ୍ଦ୍ର ହୋଇ ରହି ଆସିଛି। ବଟେଶ୍ୱର ଗାଁ ଅତୀତରେ ନିଜର ଧାର୍ମିକ, ସାଂସ୍କୃତିକ ଓ ସାହିତ୍ୟିକ ପରମ୍ପରା ଲାଗି ଯେପରି ପ୍ରସିଦ୍ଧ ଥିଲା, ସେଠାକାର ସଂସ୍କୃତ ପଣ୍ଡିତ ଓ ଆଚାର୍ଯ୍ୟମାନଙ୍କର ମଧ୍ୟ ସର୍ବତ୍ର ସେହିପରି ବିପୁଳ ମାନ-ସମ୍ମାନ ରହିଥିଲା। ସେଠାକାର ପ୍ରାକୃତିକ ବାତାବରଣ ମଧ୍ୟ ଅତ୍ୟନ୍ତ ରମଣୀୟ ଥିଲା।

ଏହି ବଟେଶ୍ୱର ଗ୍ରାମରେ ଅଟଳଜୀ (ଅଟଳବିହାରୀ ବାଜପେୟୀ)ଙ୍କର ପିତା କୃଷ୍ଣବିହାରୀ ବାଜପେୟୀ ଜନ୍ମ ଗ୍ରହଣ କରିଥିଲେ। ପରେ ସେ ନିଜର ଜୀବିକାର୍ଜନ ଉପଲକ୍ଷେ ଅନ୍ୟତ୍ର ଯାଇଥିଲେ। କିନ୍ତୁ ଅଟଳଜୀ ପିଲା ଦିନେ ଏଠାକୁ ବରାବର ଯା-ଆସ କରୁଥିଲେ। ପରବର୍ତ୍ତୀ କାଳରେ ମଧ୍ୟ ସେ ମଝିରେ ମଝିରେ ଏ ଗ୍ରାମକୁ ଆସନ୍ତି। ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରୁଥିବା ବେଳେ ୧୯୪୨ରେ ଏହିଠାରୁ ହିଁ ପ୍ରଥମେ ସେ ଗିରଫ ହୋଇଥିଲେ। ତାଙ୍କର ପ୍ରଧାନ ପୂର୍ବଜ ମଣିରାମଜୀଙ୍କ ଦ୍ୱାରା ଯେଉଁଠାରେ ବାଜପେୟ ଯଜ୍ଞ କରାଯାଇଥିଲା, ସେଠାକୁ ବି ସେ ଯା-ଆସ କରୁଥିଲେ। ଅଟଳଜୀଙ୍କ ବାଲ୍ୟବନ୍ଧୁ ବଟେଶ୍ୱର ଗ୍ରାମନିବାସୀ ବଟକେଶ୍ୱର କହନ୍ତି "ଅଟଳଜୀ ପିଲାଦିନେ ଯେତେବେଳେ ଏଠାକୁ ଆସନ୍ତି, ଯମୁନା ନଦୀରେ ସ୍ନାନ କରନ୍ତି, ନଈ କୂଳର ପଡ଼ିଆରେ ଅନ୍ୟମାନଙ୍କ ସହିତ କବାଡ଼ି ଖେଳନ୍ତି ଏବଂ ପାଖ କୂଅର ଶୀତଳ ଓ ମିଠା ପାଣି ପିଅନ୍ତି। ଏବେ ମଧ୍ୟ ସେ ବେଳେବେଳେ ଏଠାକୁ ଆସନ୍ତି। କିଛି ବର୍ଷ ତଳେ ସେ ନିଜର ଜଣେ ପୁତୁରାଙ୍କ ପୁଅର ମୁଣ୍ଡନ ସମୟରେ ଆସିଥିଲେ ଏବଂ ଅତ୍ୟନ୍ତ ଆନନ୍ଦ ଓ ଆଦର ସହକାରେ ଆମମାନଙ୍କ ସହ ମିଳାମିଶା କରିଥିଲେ। ଗତ ୧୯୯୬ରେ ଉତ୍ତରପ୍ରଦେଶର ନିର୍ବାଚନ ବେଳେ ବାହ୍‌ଠାରେ ଆୟୋଜିତ ସଭାରେ ଭାଷଣ ଦେବାକୁ ଆସିଥିବା ସମୟରେ ସେ ବଟେଶ୍ୱର ମନ୍ଦିରରେ ପୂଜା-ଅର୍ଚ୍ଚନା ମଧ୍ୟ କରିଥିଲେ।"

ବଟେଶ୍ୱର ଗ୍ରାମ ଅଟଳବିହାରୀ ବାଜପେୟୀଙ୍କର ଜନ୍ମସ୍ଥାନ ହୋଇ ନଥିଲେ ମଧ୍ୟ, ଏହା ତାଙ୍କର ପୈତୃକ ବାସସ୍ଥଳୀ ହୋଇଥିବା କାରଣରୁ ଏହା ସହିତ ତାଙ୍କର ଆବେଗିକ ସଂପର୍କ ମୂଳରୁ ରହି ଆସିଛି। ତାଙ୍କର ବ୍ୟକ୍ତିତ୍ୱ ଉପରେ ମଧ୍ୟ ଏ ଗ୍ରାମ

ତଥା ତାର ପାରିପାର୍ଶ୍ୱିକ ବାତାବରଣର ପ୍ରଭାବ ରହିଥିବାର ମନେହୁଏ । ପିଲାବେଳେ ଥରେ ସେ ଏଠାରେ ଯମୁନା ନଦୀରେ ସ୍ନାନ କଲାବେଳେ ବୁଡ଼ି ଯାଉଁ ଯାଉଁ ସୌଭାଗ୍ୟକ୍ରମେ ବଞ୍ଚିଯାଇଥିଲେ । ଥରେ ବାର୍ତ୍ତାଳାପ କାଳରେ ଏ କଥା ସେ ନିଜେ ପ୍ରକାଶ କରିଥିଲେ । ତାଙ୍କୁ ଭଲ ପହଁରି ଆସୁ ନଥିବା କାରଣରୁ ଏହି ଦୁର୍ଘଟଣା ଘଟିବାକୁ ଯାଉଥିଲା; କିନ୍ତୁ ଅନ୍ୟ ସାଥୀମାନେ ଠିକଣା ବେଳେ ତାଙ୍କୁ ରକ୍ଷା କରି ପାରିଥିଲେ ।

**॥ ବଂଶ-ପରମ୍ପରାର ପ୍ରଭାବ ॥**

ବଟେଶ୍ୱର ଗ୍ରାମନିବାସୀ ଶ୍ୟାମଲାଲ ବାଜପେୟୀ ଜଣେ ପ୍ରସିଦ୍ଧ ସଂସ୍କୃତ ପଣ୍ଡିତ, ବ୍ୟାକରଣବିଦ୍, ଶାସ୍ତ୍ରଜ୍ଞ ବିଦ୍ୱାନ, ଭାଗବତବାଚକ ତଥା ସାହିତ୍ୟସାଧକ ଥିଲେ । ସେ ଥିଲେ ଅଟଳଜୀଙ୍କର ପିତାମହ । ତାଙ୍କର ଏକମାତ୍ର ପୁତ୍ର କୃଷ୍ଣବିହାରୀ ବାଜପେୟୀ ମଧ ଜଣେ ଧୂରୀଣ ପଣ୍ଡିତ, ଲେଖକ ତଥା ଅଧାପକ ଥିଲେ । ତାଙ୍କର ପୁତ୍ର-କନ୍ୟାମାନଙ୍କ ଉପରେ ପିଲାଦିନରୁ ହିଁ ଉଭୟ ପିତାମହ ତଥା ପିତାଙ୍କର ପାଣ୍ଡିତ୍ୟ, ବିଦ୍‌ବତା ଓ ଚାରିତ୍ରିକ ବଳିଷ୍ଠତାର ସୁସ୍ପଷ୍ଟ ପ୍ରଭାବ ପଡ଼ିଥିଲା । କୃଷ୍ଣବିହାରୀଙ୍କର ବିବାହ ହୋଇଥିଲା ସୋମାଦେବୀଙ୍କ ସହିତ । କିନ୍ତୁ ପରେ ସେ କୃଷ୍ଣା ଦେବୀ ନାମରେ ହିଁ ପରିଚିତା ହୋଇଥିଲେ । କୃଷ୍ଣବିହାରୀ ନିଜର ଅଧାପନା ବୃତ୍ତି କାରଣରୁ ପ୍ରଥମେ ବାରାଣସୀରେ କିଛି ଦିନ ରହିବା ପରେ ଗ୍ୱାଲିୟର ଠାରେ ନିଜର ସ୍ଥାୟୀ ଗୃହ ନିର୍ମାଣ କରିଥିଲେ । ସେହିଠାରେ ହିଁ ତାଙ୍କର ଚତୁର୍ଥ ପୁତ୍ର ରୂପେ ଅଟଳଜୀ ଭୂମିଷ୍ଠ ହୋଇଥିଲେ । ତାଙ୍କର ତିନି ବଡ଼ ଭାଇଙ୍କର ନାମ : ଅବଧବିହାରୀ, ସଦାବିହାରୀ ଓ ପ୍ରେମବିହାରୀ । ବଡ଼ଭାଇ ଅବଧବିହାରୀଙ୍କର ସଂପ୍ରତି ୧୯୯୮ ମସିହା ଫେବୃଆରୀ ମାସରେ ହିଁ ପରଲୋକ ହୋଇଛି । ଅଧାପକ ପଣ୍ଡିତ କୃଷ୍ଣବିହାରୀ ବାଜପେୟୀ ଗ୍ୱାଲିୟରର ଗୋରଖୀ ବିଦ୍ୟାଳୟରେ ଅଧାପକ, ପ୍ରଧାନ ଅଧାପକ ଓ ଅଧକ୍ଷ ରୂପେ କାର୍ଯ୍ୟଭାର ତୁଲାଇବା ପରେ ଜିଲ୍ଲା ବିଦ୍ୟାଳୟ ନିରୀକ୍ଷକ ରୂପେ କାର୍ଯ୍ୟ କରି ପ୍ରଭୂତ ସମ୍ମାନ ଓ ଲୋକପ୍ରିୟତା ଅର୍ଜନ କରିଥିଲେ । ସେ ହିନ୍ଦୀ, ସଂସ୍କୃତ ଓ ଇଂରାଜୀ ଭାଷାରେ ଭଲ ବକ୍ତୃତା ମଧ ଦେଇ ପାରୁଥିଲେ । ପିତା ଶ୍ୟାମଲାଲଙ୍କ ପରି କୃଷ୍ଣବିହାରୀ ଜଣେ କବି ମଧ ଥିଲେ । ବହୁ ସଂସ୍କୃତ ଶ୍ଳୋକ ତଥା ହିନ୍ଦୀ କାବ୍ୟ-କବିତା ତାଙ୍କର କଣ୍ଠସ୍ଥ ଥିଲା ଏବଂ ସେ ସବୁକୁ ଆବୃତ୍ତି କରି ସେ ଶ୍ରୋତାମାନଙ୍କୁ ମୁଗ୍ଧ-ଚକିତ କରି ଦେଉଥିଲେ । କବି ସମ୍ମେଳନମାନଙ୍କରେ ସେ ବରାବର ଯୋଗ ଦେଇ ନିଜର ଛନ୍ଦ-କବିତାମାନ ଶୁଣାଉଥିଲେ, ଯାହାକି ଶ୍ରୋତାମାନଙ୍କ ଦ୍ୱାରା ଅତ୍ୟନ୍ତ ପ୍ରଶଂସିତ ହେଉଥିଲା । ଅଧୟନ ଓ ଅଧାପନା ଥିଲା ତାଙ୍କର ପ୍ରିୟ କର୍ମ ।

ଅଟଳଜୀଙ୍କ ଜନ୍ମଦାତ୍ରୀ କୃଷ୍ଣା ଦେବୀ ମଧ ଜଣେ କାବ୍ୟ-କବିତାନୁରାଗିଣୀ ତଥା କୋମଳହୃଦୟା ଓ ମୃଦୁଭାଷିଣୀ ମହିଳା ଥିଲେ । ଶାସ୍ତ୍ର-ପୁରାଣ ପାଠ, ଦେବ-ଦେବୀଙ୍କ

ପୂଜା ଅର୍ଚ୍ଚନା ଓ ବିଭିନ୍ନ ବ୍ରତ ପାଳନ ସହିତ ଜଣେ ସନ୍ତାନବତ୍ସଳା ଓ ଗୃହକର୍ମନିପୁଣା ହିନ୍ଦୁ ନାରୀ ରୂପେ ସେ ସବୁରି ପ୍ରୀତିଭାଜନା ଥିଲେ । ତାଙ୍କର ସବୁଠାରୁ ଭଲ ଗୁଣ ହେଲା- ସେ ନିଜ ପିଲାମାନଙ୍କ ଉପରେ ବା ଅନ୍ୟ କାହାରି ଉପରେ ବି ରାଗୁ ନଥିଲେ । ସେ ଥିଲେ ଚାରି ପୁତ୍ର ଓ ତିନି କନ୍ୟାଙ୍କର ସ୍ନେହମୟୀ ଜନନୀ । ପିଲାମାନଙ୍କ ଉପରେ ତାଙ୍କ ଚରିତ୍ରର ସୁସ୍ପଷ୍ଟ ପ୍ରଭାବ ରହିଥିଲା ।

**।। ଜନ୍ମ ତାରିଖ ।।**

ଅଟଳଜୀଙ୍କର ଜନ୍ମ ୧୯୨୪ ମସିହା ଡ଼ିସେମ୍ବର ୨୫ ତାରିଖରେ ବ୍ରାହ୍ମ ମୁହୂର୍ତ୍ତରେ ଗ୍ୱାଲିୟରର ଶିନ୍ଦେଠାରେ ହୋଇଥିଲା । ଅବଶ୍ୟ ସ୍କୁଲ ସାର୍ଟିଫିକେଟ୍‌ରେ ତାଙ୍କର ଜନ୍ମଦିନ ୨୫ ଡ଼ିସେମ୍ବର-୧୯୨୬ ବୋଲି ଲେଖାଯାଇଛି । ଏ ସଂକ୍ରାନ୍ତରେ ଅଟଳଜୀ ନିଜେ ୧୯୮୬ ଜାନୁଆରୀ ୭ ତାରିଖରେ ନିଜର ଜଣେ ବଂଧୁ ଗ୍ୱାଲିୟରର ଶ୍ରୀ ନାରାୟଣ ତରଟେଙ୍କୁ ଏକ ଚିଠିରେ ଲେଖିଥିଲେ ଯେ, ''ମୋର ଜନ୍ମ ୧୯୨୪ରେ ହୋଇଥିଲା । ପିତାଜୀ ସ୍କୁଲରେ ମୋର ନାମ ଲେଖାଇବା ସମୟରେ ୧୯୨୬ ବୋଲି ଲେଖି ଦେଇଥିଲେ । ହୁଏତ ସେ ଭାବିଥିଲେ, ପୁଅର ବୟସ କମ୍ କରି ଦେଖାଇଲେ ବେଶୀ ଦିନ ଚାକିରୀ କରିପାରିବ । ତାଙ୍କୁ କ'ଣ ଜଣା ଥିଲା ଯେ, ମୋର ଜନ୍ମଦିନ ପାଳିତ ହେବ ଏବଂ ଏହା ପାଳନ କରୁଥିବା ଲୋକେ ମୋତେ ଛୋଟ କରି ପେଶ୍ କରିବେ ।''

**।। ଘଣ୍ଟାଧ୍ୱନି, ତୋପଧ୍ୱନି ଓ ଶଙ୍ଖଧ୍ୱନିର ସମ୍ମିଶ୍ରଣ ।।**

ଯେଉଁ ସମୟରେ ଅଟଳଜୀ ଭୂମିଷ୍ଠ ହେଲେ, ସେତେବେଳେ ପ୍ରତିବେଶୀ ଗୀର୍ଜାଘରୁ ବଡ଼ଦିନ (ଯୀଶୁଖ୍ରୀଷ୍ଟଙ୍କ ଜନ୍ମଦିନ) ଉପଲକ୍ଷେ ଘଣ୍ଟା ଶବ୍ଦ ଏବଂ ଇସାଙ୍କ ଜନ୍ମଦିନ ଉପଲକ୍ଷେ ତୋପଧ୍ୱନି କରାଯାଉଥିଲା । ତା ସହିତ ମିଶିଗଲା କୃଷ୍ଣବିହାରୀ ବାଜପେୟୀଙ୍କ ଘରର ବିପୁଳ ଆନନ୍ଦ-ଉଲ୍ଲାସର ଶଙ୍ଖଧ୍ୱନି । ଅଟଳଜୀଙ୍କ ଜନ୍ମ ମୁହୂର୍ତ୍ତରେ ତିନି ଧ୍ୱନିର ସମ୍ମିଶ୍ରଣ ବାସ୍ତବିକ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ଥିଲା । ଖାଲି ସେତିକି ନୁହେଁ, ତାଙ୍କର ଜନ୍ମ, ଘରର ସମସ୍ତଙ୍କୁ ଆନନ୍ଦବିଭୋର କରିବା ସହିତ ପଡ଼ିଶା ଘରମାନଙ୍କରେ ମଧ୍ୟ ବିପୁଳ ଆନନ୍ଦ-ଉଲ୍ଲାସ ଖେଳାଇ ଦେଇଥିଲା । ଶିଶୁ ଅଟଳଙ୍କ ମୁହଁରେ ଜନ୍ମ ମୁହୂର୍ତ୍ତରୁ ହିଁ ବରାବର ହସ ଲାଗି ରହିଥିଲା । ତାଙ୍କର ଗୋଲଗାଲ ସୁନ୍ଦର ଚେହେରା ମଧ୍ୟ ଅତ୍ୟନ୍ତ ଆକର୍ଷଣୀୟ ଥିଲା । ସେଥିପାଇଁ ଶିଶୁଟିକୁ ଧରି ଗେଲ କରିବା ନିମନ୍ତେ ତାଙ୍କର ବଡ଼ଭାଇ ଓ ଭଉଣୀଙ୍କ ମଧ୍ୟରେ ବରାବର ପ୍ରତିଦ୍ୱନ୍ଦିତା ଲାଗି ରହିଥିଲା । ତେଣୁ ମା' କୃଷ୍ଣା ଦେବୀ ସେମାନଙ୍କ ପାଇଁ ପାଳି କରି ଶିଶୁଟିକୁ ଗେଲ କରିବା ଓ ଖେଳାଇବାର ବ୍ୟବସ୍ଥା କରି ଦେଇଥିଲେ । ଶିଶୁଟିକୁ କୋଳରେ ଧରି ଗେଲ କରିବା ଲାଗି ପଡ଼ିଶା ଘରର ଲୋକମାନେ ମଧ୍ୟ କୌଣସି ନା କୌଣସି ବାହାନାରେ

ବାଜପେୟୀ ଘରକୁ ଆସୁଥିଲେ । ଶିଶୁ ଅଟଳ ଯେତିକି ବଡ଼ ହେଉଥିଲେ, ଅନ୍ୟମାନଙ୍କ ନିକଟରେ ସେତିକି ସେତିକି ଆଦରଣୀୟ ହୋଇ ଉଠୁଥିଲେ । ତାଙ୍କର ସୁନ୍ଦର ଚେହେରା, ହସହସ ମୁହଁ, କଳାକଳା ଆଖି, ଚପଳତାପୂର୍ଣ୍ଣ ଢଙ୍ଗଢାଙ୍ଗ, ଚାଲାଖ-ଚତୁର ଗୁଲୁଗୁଲିଆ କଥାବାର୍ତ୍ତା ସବୁରି ମନ ମୋହି ନେଉଥିଲା । ସମସ୍ତେ କହୁଥିଲେ : ପିଲାଟି ବଡ଼ ହୋଇ ବାପ-ମା'ଙ୍କର ନାଁ ରଖିବ, ବାଜପେୟୀ ବଂଶର ମୁଖ ଉଜ୍ଜ୍ୱଳ କରିବ । ସେ କଥା ସତ ହୋଇଛି । କିନ୍ତୁ ସେତେବେଳେ ସେମାନେ ଯାହା କଳ୍ପନା ବି କରି ପାରି ନଥିଲେ, ତାହା ମଧ୍ୟ ଆଜି ବାସ୍ତବରେ ପରିଣତ ହୋଇଛି । କେବଳ ବାପ-ମା'ଙ୍କର ବା ବାଜପେୟୀ ବଂଶର ନୁହେଁ; ସେଦିନର ସେଇ ଶିଶୁ ବଡ଼ ହୋଇ ଆଜି ସମଗ୍ର ବିଶ୍ୱ-ଦରବାରରେ ଭାରତମାତାର ବରପୁତ୍ର ରୂପେ ଅଭିନନ୍ଦିତ ହୋଇ ଭାରତୀୟ ଜାତୀୟତାର ମୁଖ ଉଜ୍ଜ୍ୱଳ କରିଛନ୍ତି, ଗୌରବ ବଢ଼ାଇ ଚାଲିଛନ୍ତି । ସେଦିନର ସେଇ ବାଜପେୟୀ-କୁଳଭୂଷଣ ଶିଶୁ ଆଜି କେବଳ ଭାରତଭୂଷଣ ନୁହନ୍ତି, ବିଶ୍ୱଭୂଷଣ ।

**।। ନାମକରଣର ସାର୍ଥକତା ।।**

କୃଷ୍ଣବିହାରୀଙ୍କର ତିନି ପୁତ୍ର ଅବଧବିହାରୀ, ସଦାବିହାରୀ ଓ ପ୍ରେମବିହାରୀଙ୍କ ପରେ ଜନ୍ମ ଲାଭ କରିଥିବା ୪ର୍ଥ ପୁତ୍ରର ନାମ ରଖାଯାଇଥିଲା ଅଟଳବିହାରୀ । 'ଅଟଳ'-ଯାହା କେବେ ଟଳେ ନାହିଁ, 'ବିହାରୀ'-ଯିଏ ସବୁବେଳେ ବିହାର ବା ବିଚରଣ କରେ । ବାସ୍ତବିକ୍ ଅତ୍ୟନ୍ତ ସାର୍ଥକ ନାମଟିଏ । ନିଜର ଛାତ୍ରାବସ୍ଥାରୁ ସେ ନିଜର ରାଜନୈତିକ ବିଚାରଧାରା ଓ ଚାରିତ୍ରିକ ଦୃଢ଼ତାରେ ଯେପରି ଅଟଳ ରହି ଆସିଛନ୍ତି; ଦେଶର ଜଣେ ତୁଙ୍ଗ ରାଜନେତା ରୂପେ ସେହିପରି ସାରା ବିଶ୍ୱରେ ତଥା ଜଣେ କବି ଓ ପଣ୍ଡିତ ରୂପେ ଚିନ୍ତା ଓ ଚେତନାର ଜଗତରେ ସେହିପରି ବିହାର ବା ବିଚରଣ କରି ଚାଲିଛନ୍ତି !

**।। ବିଦ୍ୟାରମ୍ଭ ।।**

ଚାରିବର୍ଷ ବୟସରେ ଶିଶୁ ଅଟଳବିହାରୀଙ୍କର ବିଦ୍ୟାରମ୍ଭ ହେଲା । ଖଡ଼ିଛୁଆଁ ବେଳର ପୂଜା-ପାଠ ପରେ ଗୁରୁଜୀ ସ୍ଲେଟ୍‌ରେ "ଓଁ" ଲେଖି ତା ଉପରେ ଖଡ଼ି ମଡ଼ାଇବା ଲାଗି ତାଙ୍କୁ ନିର୍ଦ୍ଦେଶ ଦେଲେ । ଶିଶୁ ଅଟଳ ଅନାୟାସରେ "ଓଁ" ଉପରେ ଖଡ଼ି ମଡ଼ାଇ ଚାଲିଲେ । ତାହା ଦେଖି ଗୁରୁଜୀ, ପାଖରେ ବସିଥିବା କୃଷ୍ଣବିହାରୀଙ୍କୁ କହିଲେ : ଆପଣଙ୍କର ଏ ପୁଅ ଦେବୀ ସରସ୍ୱତୀଙ୍କର ଉପାସକ ହେବ । ତାହା ଶୁଣି ପିତା କୃଷ୍ଣବିହାରୀ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

କୃଷ୍ଣବିହାରୀ ଯେପରି ଦକ୍ଷ ଅଧ୍ୟାପକ ଥିଲେ, ସେପରି ଶୃଙ୍ଖଳାପ୍ରିୟ ଓ କର୍ତ୍ତବ୍ୟନିଷ୍ଠ ମଧ୍ୟ ଥିଲେ । ସେ ତାଙ୍କର ସବୁ ପିଲାଙ୍କୁ ମୂଳରୁ ହିଁ ବିଦ୍ୟାର୍ଜନ ସହିତ ଏହି ଅନୁଶାସନପ୍ରିୟତା ଓ କର୍ତ୍ତବ୍ୟପରାୟଣତାରେ ଅଭ୍ୟସ୍ତ କରାଇଥିଲେ । ତାଙ୍କର ସବୁ ପୁତ୍ର

କନ୍ୟା ଏହି ଅଭ୍ୟାସ ଯୋଗୁ ନିଜ ନିଜର ଜୀବନରେ ଯଥେଷ୍ଟ ସଫଳତାର ପରିଚୟ ଦେଇ ପାରିଥିଲେ । ବାଳକ ଅଟଳବିହାରୀ ଗୋରଖୀ ବିଦ୍ୟାଳୟରୁ ମାଇନର ପାସ୍ କରି ଭିକ୍ଟୋରିୟା କଲେଜିଏଟ୍ (ହାଇସ୍କୁଲ)ରେ ନାମ ଲେଖାଇଲେ ।

**।। ଆର.ଏସ୍.ଏସ୍.ରେ ଯୋଗଦାନ ।।**

ଏହି ସ୍କୁଲରେ ପଢୁଥିବା ସମୟରେ ହିଁ ବିଦ୍ୟାର୍ଥୀ ଅଟଳବିହାରୀ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହିତ ସଂଶ୍ଳିଷ୍ଟ ହୋଇଥିଲେ । ସେ କିପରି ସଂଘକୁ ଆସିଲେ, ସେ ସଂପର୍କରେ ତାଙ୍କର ସଂଘ-ମିତ୍ର ସହପାଠୀ ତଥା ଘନିଷ୍ଠ ବାଲ୍ୟବନ୍ଧୁ ବାବା ସାହେବ ଖାନ୍‌ବଲ୍‌କର କହନ୍ତି : ‘‘ଅଟଳ ଆଉ ମୁଁ ଆର୍ଯ୍ୟ କୁମାସଭାକୁ ଯିବା-ଆସିବା କରୁଥିଲୁଁ । ପ୍ରତି ରବିବାର ସେଠାରେ ଭଲଭଲ କାର୍ଯ୍ୟକ୍ରମ ରହୁଥିଲା । ଆଲିଗଡ଼ର ଶ୍ରୀ ଭୂଦେବ ଶାସ୍ତ୍ରୀ ଆର୍ଯ୍ୟସଭାର ପ୍ରଚାରକ ଥିଲେ । ସେ ସଂଧ୍ୟାବେଳେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଶାଖାକୁ ବି ଯାଉଥିଲେ । ମୁଁ ବି ଯାଉଥିଲି । ଦିନେ ସେ ଅଟଳଙ୍କୁ କହିଲେ - ତୁମେ ବି ସଂଧ୍ୟାରେ ଶାଖାକୁ ଆସ । ସେହିଦିନ ଠାରୁ ଅଟଳ ବି ଧଳାକାମିଜ୍, ଖାକି ହାଫ୍‌ପେଣ୍ଟ ଆଉ କଳାଟୋପି ପିନ୍ଧି ଶାଖାକୁ ଯିବା ଆରମ୍ଭ କଲେ । ପ୍ରଥମ ଦିନ ସେଠାକୁ ସେ ମୋ ସାଙ୍ଗରେ ହିଁ ଯାଇଥିଲେ ।

ଲକ୍ଷ୍ମୀଗଂଜରେ ଡ଼ଃ କମଲ କିଶୋରଙ୍କ ଘର ପଛପଟେ ରାମ ମନ୍ଦିର ପାଖ ପଡ଼ିଆରେ ଶାଖା ଲାଗୁଥିଲା । ୧୯୩୮ରୁ ଏହି ଶାଖା ଆରମ୍ଭ ହୋଇଥିଲା । ୧୯୩୮ ଜୁଲାଇରୁ ମୁଁ ଏହି ଶାଖାକୁ ଯିବା ଆରମ୍ଭ କରିଥିଲି । ତାର ପ୍ରାୟ ଛ’ସାତ ମାସ ପରେ ଅଟଳଜୀ ସେଠାକୁ ଯିବା ଆରମ୍ଭ କଲେ । ସେତେବେଳେ ଶ୍ରୀ ନାରାୟଣ ରାଓ ତରଟେ ସେଠାକାର ପ୍ରଚାରକ ଥିଲେ । ଗ୍ୱାଲିୟରରେ ସେହିଁ ଆର.ଏସ୍.ଏସ୍.ର ସଂଗଠନ ଆରମ୍ଭ କରିଥିଲେ । ଅଟଳଜୀ ଆଜି ବି ତାଙ୍କୁ ବହୁତ ସମ୍ମାନ ଦିଅନ୍ତି । କିଛି ଦିନ ପରେ ଅଟଳଜୀ ନୟାବଜାର ଶାଖାର କାର୍ଯ୍ୟବାହ ନିଯୁକ୍ତ ହେଲେ, ପରେ ତାଙ୍କୁ ଗ୍ୱାଲିୟରର ବୌଦ୍ଧିକ କାର୍ଯ୍ୟବାହ ମଧ କରାଯାଇଥିଲା । ସେ ୧୯୪୧ରେ ନାଗପୁରରୁ ଓ.ଟି.ସି.ର ପ୍ରଥମ ବର୍ଷ କରିଥିଲେ । ୧୯୪୨ରେ ଇନ୍ଦୌର କାଳୀଚରଣ ହାଇସ୍କୁଲରେ ଯେଉଁ ଶିବିର ହୋଇଥିଲା, ସେଥିରେ ଅଟଳଜୀ ଦ୍ୱିତୀୟ ବର୍ଷର ପ୍ରଶିକ୍ଷଣ ନେଇଥିଲେ ।

**।। କବି ପରିଚୟ ।।**

ସେହି ସମୟରେ ସେ ନିଜର ଏକ କବିତା ‘‘ହିନ୍ଦୁ ତନ-ମନ, ହିନ୍ଦୁ ଜୀବନ’’ ପାଠ କରିଥିଲେ । ତାଙ୍କର ସେହି ଓଜଃସ୍ୱିନୀ କବିତାବୃତ୍ତି ସମସ୍ତଙ୍କୁ ମୁଗ୍ଧ କରିଥିଲା । ପୂଜନୀୟ ଗୁରୁଜୀ ଅଟଳଜୀଙ୍କୁ ଆଶୀର୍ବାଦ ଦେଇଥିଲେ । ତାଙ୍କର ସେ କବିତା ଏତେ ବିଖ୍ୟାତ ଓ ଲୋକପ୍ରିୟ ହୋଇଥିଲା ଯେ, ସ୍ୱୟଂସେବକମାନେ ତାକୁ ପୂରାପୂରି ମୁଖସ୍ଥ

କରି ଦେଉଥିଲେ ଏବଂ ସେ ଯେଉଁଠାକୁ ଯାଉଥିଲେ, ତାଙ୍କୁ ସେ କବିତାଟି ଆବୃତ୍ତି କରିବା ଲାଗି ଅନୁରୋଧ କରାଯାଉଥିଲା । "ପରିଚୟ" ଶୀର୍ଷକର ଏହି କବିତାଟି ବସ୍ତୁତଃ ତାଙ୍କ ନିଜର ପରିଚୟ ହୋଇଯାଇଥିଲା । ପ୍ରବୀଣ କବି ବଚନଜୀଙ୍କର ବହୁଚର୍ଚ୍ଚିତ "ମିଟିକା ତନ୍ ମିଟିକା ମନ୍" କବିତାର ଅନୁକରଣରେ ହିଁ ଅଟଳଜୀ ଏ କବିତାଟି ଲେଖିଥିଲେ । (ତାଙ୍କର "ମେରୀ ଇକ୍ୟାବନ୍ କବିତାଏଁ"ରେ ଏ କବିତାଟି ସ୍ଥାନ ପାଇଛି ।)

**॥ ପ୍ରଥମ ବକ୍ତୃତା ॥**

ଛାତ୍ରାବସ୍ଥାରେ ହିଁ ଅଟଳଜୀ ଜଣେ ସଚ୍ଚା ଦେଶପ୍ରେମୀ, ସମାଜସେବୀ, ଦକ୍ଷ ସଂଗଠକ, ଜନନେତା, ପ୍ରଭାବଶାଳୀ କବି ଓ ବକ୍ତା ରୂପେ ପରିଚିତ ହୋଇ ପାରିଥିଲେ । ନିଜର ପ୍ରଥମ ବକ୍ତୃତା ତଥା ଅନ୍ୟ ଏକ ଭାଷଣ ସଂପର୍କରେ ସେ ନିଜେ କହନ୍ତି : "ଯେତେବେଳେ ମୁଁ ପ୍ରଥମ ଥର ଭାଷଣ ଦେବା ଲାଗି ଠିଆ ହେଲି, ସେତେବେଳେ ମୁଁ ବଡ଼ନଗରରେ ଥିଲି । ମୋର ବାପା ହେଡ଼ମାଷ୍ଟର ଥିଲେ । ସ୍କୁଲର ବାର୍ଷିକ ଉତ୍ସବ ପାଳିତ ହେଉଥିଲା । ବିନା ପ୍ରସ୍ତୁତିରେ ମୁଁ ମଞ୍ଚ ଉପରେ ଯାଇ ଠିଆ ହୋଇଗଲି । ସେତେବେଳେ ମୁଁ ପଞ୍ଚମ ଶ୍ରେଣୀର ଛାତ୍ର ଥିଲି । ଭାଷଣ ଦେବାକୁ ଠିଆ ହୋଇଗଲି ସିନା; କିନ୍ତୁ ବେଶୀ ସମୟ ଭାଷଣ ଦେଇ ପାରିଲି ନାହିଁ । ମଝିରେ ଭାଷଣ ବନ୍ଦ କରିବାକୁ ପଡ଼ିଲା । ସେହିପରି ଆଉ ଥରେ ଗ୍ୱାଲିୟରରେ ଏକ ତର୍କ ପ୍ରତିଯୋଗିତାରେ ଭାଗ ନେବାକୁ ଯାଇଥିଲି । ମୁଁ ମୋର ବିଷୟବସ୍ତୁକୁ ମୁଖସ୍ଥ କରି ଯାଇଥିଲି । କିନ୍ତୁ ମଝିରେ ଭୁଲିଗଲି । ଅଧାରୁ ମୋ ବକ୍ତୃତା ବନ୍ଦ ହୋଇଗଲା । ସେଥିଯୋଗୁ ମୋତେ ସେଠାରେ ଉପହାସର ଶରବ୍ୟ ହେବାକୁ ପଡ଼ିଥିଲା । ସେହିଦିନରୁ ମୁଁ ସଂକଳ୍ପ କଲି ଯେ, ଆଉ କେବେ ମୁଖସ୍ଥ କରି ବକ୍ତୃତା ଦେବାକୁ ଯିବିନାହିଁ ।" ('ନଈ ଦୁନିଆ' - ଇନ୍ଦୋର)

**॥ ପ୍ରଥମ ଶ୍ରେଣୀର ସ୍ନାତକ ଓ ତାର୍କିକ ॥**

ଭିକ୍ଟୋରିୟା କଲେଜିଏଟ୍ ସ୍କୁଲରୁ ହାଇସ୍କୁଲ ଓ ଇଣ୍ଟର୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଅଟଳଜୀ ଗ୍ୱାଲିୟରରେ ଭିକ୍ଟୋରିୟା କଲେଜ୍ (ଏବେ ରାଣୀ ଲକ୍ଷ୍ମୀବାଈ ମହାବିଦ୍ୟାଳୟ)ରୁ ଉଚ୍ଚ ଶ୍ରେଣୀରେ ହିନ୍ଦୀ ସାହିତ୍ୟ, ସଂସ୍କୃତ ଓ ଇଂରାଜୀ ସାହିତ୍ୟ ବିଷୟ ନେଇ ପ୍ରଥମ ଶ୍ରେଣୀରେ ବି.ଏ ପାସ୍ କରିଥିଲେ । କଲେଜ୍ ଛାତ୍ର ଥିବା ବେଳେ ସେ ବରାବର ତର୍କ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରି ପ୍ରଥମ ପୁରସ୍କାର ପାଉଥିଲେ । ହାଇସ୍କୁଲ ଛାତ୍ର ଥିବାବେଳେ ମଧ୍ୟ ତର୍କ ପ୍ରତିଯୋଗିତାରେ ସେ କେତେଥର ପୁରସ୍କାର ପାଇଥିଲେ ।

**।। ଭାଷଣ-କଳାର ଯାଦୁକର ।।**

ଥରେ ଆଲାହାବାଦ ବିଶ୍ୱବିଦ୍ୟାଳୟରେ ଆୟୋଜିତ ଜାତୀୟ ସ୍ତରର ଏକ ତର୍କ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଭିକ୍ଟୋରିଆ କଲେଜ୍ ପକ୍ଷରୁ ଅଟଳଜୀ ପ୍ରେରିତ ହୋଇଥିଲେ । ଟ୍ରେନ୍ ବିଳମ୍ବରେ ପହଞ୍ଚିବା କାରଣରୁ ସେଠାରେ ସେ ଠିକ୍ ସମୟରେ ପହଞ୍ଚି ପାରିଲେ ନାହିଁ । ବିଳମ୍ବରେ ପହଞ୍ଚି ଦେଖିଲେ ଯେ ତର୍କ ପ୍ରତିଯୋଗିତା ଶେଷ ହୋଇଯାଇଛି । ବିଚାରକମାନେ ଫଳାଫଳ ନିର୍ଣ୍ଣୟ କରିବାରେ ବ୍ୟସ୍ତ ଅଛନ୍ତି । ଛାତ୍ର ଓ ଅନ୍ୟ ଲୋକମାନେ ଫଳାଫଳ ଘୋଷଣାକୁ ଉଦ୍‌ଗ୍ରୀବତା ସହକାରେ ଅପେକ୍ଷା କରୁଛନ୍ତି । ଅଟଳଜୀ ସିଧା ମଞ୍ଚ ଉପରକୁ ଉଠିଯାଇ ଟ୍ରେନ୍ ବିଳମ୍ବରେ ପହଞ୍ଚିବା ବିଷୟ ଅଧ୍ୟକ୍ଷଙ୍କୁ ଜଣାଇଲେ ଏବଂ ପ୍ରତିଯୋଗିତାରେ ଭାଗ ନେବା ଲାଗି ତାଙ୍କର ଅନୁମତି ପ୍ରାର୍ଥନା କଲେ । ଅନୁମତି ପାଇବା ମାତ୍ରେ ସେ ନିଜର ଭାଷଣ ଆରମ୍ଭ କରି ଦେଲେ ଓ ଅନର୍ଗଳ କହିଚାଲିଲେ । ତାଙ୍କର ସେ ଭାଷଣରେ ଏପରି ଯାଦୁ ଥିଲା ଯେ ସବୁ ଶ୍ରୋତା ମନ୍ତ୍ରମୁଗ୍ଧ ! ନିର୍ଣ୍ଣାୟକ ବା ବିଚାରକମଣ୍ଡଳୀ ମଧ୍ୟ ମୁଗ୍ଧ-ଚକିତ ହୋଇ ତାଙ୍କର ଭାଷଣ ଶୁଣିବାକୁ ଲାଗିଲେ । ଶେଷରେ ସବୁ ନିର୍ଣ୍ଣୟ ବଦଳିଗଲା ଏବଂ ତାଙ୍କୁ ହିଁ ପ୍ରଥମ ପୁରସ୍କାର ମିଳିଲା । ଏହି ବିଚାରକମଣ୍ଡଳୀରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ 'ମଧୁଶାଳା'ର ଲେଖକ ପ୍ରସିଦ୍ଧ କବି ଡ଼ଃ ହରିବଂଶ ରାୟ 'ବଚ୍ଚନ' ।

ପ୍ରାଥମିକ ବିଦ୍ୟାଳୟରୁ ଆରମ୍ଭ ହୋଇଥିବା ଅଟଳଜୀଙ୍କର ସେହି ଯାଦୁକରୀ ଭାଷଣ-କଳା ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଚାଳିଶବର୍ଷବ୍ୟାପୀ ସାଂସଦ-ଜୀବନରେ ତାଙ୍କର ସମ୍ମୋହନକାରୀ ଭାଷଣ ସବୁ, ଦଳ-ମତ-ନିର୍ବିଶେଷରେ ସମସ୍ତଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇ ଆସିଛି । ପଣ୍ଡିତ ନେହେରୁ ପ୍ରଧାନମନ୍ତ୍ରୀ ଥିବା ବେଳେ ମଧ୍ୟ ତାଙ୍କର ଭାଷଣ ତଥା ବଳିଷ୍ଠ ଯୁକ୍ତି ଉପସ୍ଥାପନ ଶୈଳୀକୁ ଉଚ୍ଚ ପ୍ରଶଂସା କରୁଥିଲେ । ସାଧାରଣ ସଭାମାନଙ୍କରେ ତାଙ୍କର ରସିକତାପୂର୍ଣ୍ଣ, ବଳିଷ୍ଠ ଭାଷଣ-ଶୈଳୀ ସବୁ ଶ୍ରେଣୀର ଶ୍ରୋତାଙ୍କୁ ମୁଗ୍ଧ ଓ ପ୍ରଭାବିତ କରି ଆସିଛି । ତାଙ୍କର ଏହି ବାଗ୍ମିତା ବାସ୍ତବିକ୍ ଏକ ଈଶ୍ୱରଦତ୍ତ କଳା, ଦେବୀ ସରସ୍ୱତୀଙ୍କ ପ୍ରସାଦ !

**।। ସମର୍ପିତ ଜୀବନ ।।**

ପଣ୍ଡିତ କୃଷ୍ଣବିହାରୀ ବାଜପେୟୀଙ୍କ ନିଜ ପରିବାରରେ ଥିଲେ ପତ୍ନୀ କୃଷ୍ଣା ଦେବୀ; ଚାରିପୁତ୍ର- ଅବଧବିହାରୀ, ସଦାବିହାରୀ, ପ୍ରେମବିହାରୀ ଓ ଅଟଳବିହାରୀ ଏବଂ ତିନି କନ୍ୟା- ବିମଳା, କମଳା ଓ ଉର୍ମିଳା । ସେ ତାଙ୍କର ସବୁ ପୁତ୍ର-କନ୍ୟାଙ୍କୁ ସୁଶିକ୍ଷିତ କରାଇବା ସହିତ କେବଳ ଜଣକ ବ୍ୟତୀତ ଅନ୍ୟ ସମସ୍ତଙ୍କର ବିବାହ କାର୍ଯ୍ୟ ସଂପନ୍ନ କରିଥିଲେ । ଚତୁର୍ଥ ପୁତ୍ର ଅଟଳବିହାରୀ ବିବାହ କରିବାକୁ ଆଦୌ ରାଜି ନଥିଲେ । କେବଳ ପିତା-ମାତା ବା ଭାଇ-ଭଉଣୀମାନେ ନୁହନ୍ତି, ଅନ୍ୟ ବହୁ ଆତ୍ମୀୟ

ସ୍ୱଜନ ମଧ୍ୟ ବାରମ୍ବାର ଉଦ୍ୟମ କରି ତାଙ୍କୁ ଏଥିଲାଗି ରାଜି କରାଇବାରେ ବିଫଳ ହୋଇଥିଲେ । ତାଙ୍କର ଜଣେ ଭାଉଜ କହନ୍ତି : "ଅଟଳଜୀ ସମସ୍ତଙ୍କୁ ଗୋଟିଏ କଥା ସ୍ପଷ୍ଟ ଭାବରେ ଜଣାଉଥିଲେ । ସେ କହୁଥିଲେ- ମୁଁ ମୋର ଜୀବନକୁ ଭାରତମାତାଙ୍କ ସେବାରେ ସଂପୂର୍ଣ୍ଣ ରୂପେ ସମର୍ପଣ କରି ଦେଇଛି । ବର୍ତ୍ତମାନ ଅନ୍ୟ କିଛି କଥା ଭାବିବାର ପ୍ରଶ୍ନ ଉଠୁନାହିଁ ।"

ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କୁ ଯେତେବେଳେ ହତ୍ୟା କରି ଦିଆଗଲା, ସେତେବେଳେ ଅଟଳଜୀଙ୍କ ପ୍ରାଣନାଶ ପାଇଁ ମଧ୍ୟ ଧମକପୂର୍ଣ୍ଣ ବେନାମୀ ଚିଠି ସବୁ ଆସୁଥିଲା । ଦିନେ ତାଙ୍କର ଭାଉଜ ଆଖିରୁ ଲୁହ ଗଡ଼ାଇ ତାଙ୍କୁ କହିଲେ : "ଅଟଳ, ତୁମେ ରାଜନୀତି ଛାଡ଼ି ଦିଅ ।" ଉତ୍ତରରେ ସେ ମୁରୁକି ହସା ଦେଇ କହିଲେ "ଏଇଥିପାଇଁ ମୁଁ ବିବାହ କଲିନାହିଁ । ତୁମେ ଭାଉଜ ହୋଇ ଯଦି ମୋ ପାଇଁ ଏତେ କାନ୍ଦୁଛ, ତେବେ ସ୍ତ୍ରୀ ଥିଲେ କେତେ କାନ୍ଦୁ ନଥାନ୍ତା !" ଅଟଳଜୀଙ୍କ ଭଉଣୀ ବିମଳା ଦେବୀ କହନ୍ତି : "ମା' କାନ୍ଦି କାନ୍ଦି ମରିଗଲା ପଛେ, କିନ୍ତୁ ତାଙ୍କୁ ବିବାହ କରିବା ପାଇଁ ରାଜି କରାଇ ପାରିଲା ନାହିଁ । ବିବାହ ପ୍ରଶ୍ନ ଉଠିଲେ ସେ ଦୂରକୁ ଚାଲି ଯାଉଥିଲେ ଓ ମା'କୁ ଏଣୁ ତେଣୁ କରି କହି ବହଲାଇ ଦେଉଥିଲେ ।

**॥ ଚାରିତ୍ରିକ ବୈଶିଷ୍ଟ୍ୟ ॥**

ଅଟଳଜୀଙ୍କର ପାରିବାରିକ ଓ ସାମାଜିକ ଜୀବନଚର୍ଯ୍ୟା ତଥା ପରିବାରର ଲୋକମାନଙ୍କ ପ୍ରତି ତାଙ୍କର ଆଚରଣ ସଂପର୍କରେ ତାଙ୍କ ପୁତୁରା-ଝିଆରୀ, ଭଣଜା-ଭାଣିଜୀ ଓ ନାତି-ନାତୁଣୀମାନେ ନାନା ମଜା କଥା କହନ୍ତି । ସମସ୍ତଙ୍କୁ ସେ କିପରି ଭଲ ପାଆନ୍ତି ଏବଂ ପାରିବାରିକ ଉତ୍ସବାଦିରେ ଯୋଗ ଦେଲା ବେଳେ କିପରି ସମସ୍ତଙ୍କ ସାଙ୍ଗରେ ମିଶନ୍ତି, ତାର ଚଟୁଳ ବର୍ଣ୍ଣନା ସେମାନଙ୍କ ଠାରୁ ମିଳିଥାଏ । ତାଙ୍କର ଜଣେ ଝିଆରୀ ଶ୍ରୀମତୀ କାନ୍ତି ମିଶ୍ର କହନ୍ତି: "ଚାଚାଜୀଙ୍କର ଏକ ବିଶେଷ ଅଭ୍ୟାସ ହେଉଛି, ସେ ଯେତେବେଳେ ଘରେ ରହନ୍ତି, ବାହାର ଲୋକଙ୍କ ସହିତ ମିଶନ୍ତି ନାହିଁ; ଆଉ ଯେତେବେଳେ ଦଳୀୟ ବା ସରକାରୀ କାର୍ଯ୍ୟରେ ଆସିଥାନ୍ତି, ପରିବାରର ଲୋକଙ୍କ ସହିତ ମିଶନ୍ତି ନାହିଁ । ୧୯୭୭ ମସିହା ମଇ ମାସ ୪ ତାରିଖର ଗୋଟିଏ ଘଟଣା ଶୁଣନ୍ତୁ । ଚାଚାଜୀ ସେତେବେଳେ ଦେଶର ବିଦେଶ ମନ୍ତ୍ରୀ ଥା'ନ୍ତି । ସେଦିନ ବଡ଼ ଚାଚାଙ୍କ ଝିଅ ମାଳାର ବିବାହ ଉତ୍ସବ ଥାଏ । ସେଥିରେ ଯୋଗ ଦେବାକୁ ସେ ଆସିଥାନ୍ତି । ତାଙ୍କ ଦଳ ପକ୍ଷରୁ ମଧ୍ୟ ସେ ସହରରେ ଏକ ସାଧାରଣ ସଭାର ଆୟୋଜନ କରାଯାଇଥାଏ । ମୁଁ ଏବଂ ମୋର ପିଉସୀ ଝିଅ ଭଉଣୀ ଅଳକା ତାଙ୍କର ଭାଷଣ ଶୁଣିବାକୁ ଗଲୁଁ । ଭାଷଣ ସରିଲା । ଆମେ ଦିହେଁ ଯାଇ ଚାଚାଙ୍କ ପାଖରେ ପହଞ୍ଚିଲୁଁ । ପଚାରିଲୁଁ: 'ଆପଣ ଏବେ ଘରକୁ ଯିବେ' ? ସେ କହିଲେ: 'ହଁ' । ଆମେ କହିଲୁଁ: 'ତେବେ ଆମେ ବି ଆପଣଙ୍କ ସାଙ୍ଗରେ ଚାଲିଯିବୁଁ' । ସେ କହିଲେ: 'ନା । ଏ

ଗାଡ଼ି ଭାରତର ବିଦେଶ ବିଭାଗ ମନ୍ତ୍ରୀଙ୍କର; ତୁମ ଚାଚା ଅଟଳବିହାରୀ ବାଜପେୟୀଙ୍କର ନୁହେଁ ।' ଆମେ କହିଲୁଁ: 'ଘରକୁ ଫେରିବା ଲାଗି ଆମ ପାଖରେ ପଇସା ନାହିଁ ।' ସେ କହିଲେ: 'ପଇସା ନ ଆଣିଲ କାହିଁକି ? ଯେମିତି ଆସିଥିଲ, ସେଇମିତି ଯାଅ ।' ଏତିକି କହି ସେ ସିଧା ଗାଡ଼ିରେ ବସି ଚାଲିଗଲେ । ଆମେ ବାଧ ହୋଇ ପାଦରେ ଚାଲି ଚାଲି ଘରକୁ ଆସିଲୁଁ । ଘରେ ଚାଚାଙ୍କୁ ଦେଖି ଆମେ କାନ୍ଦି ପକାଇଲୁଁ । ସେ ଆମକୁ କୋଳେଇ ନେଇ ଓ ଗେଲ କରି ବୁଝାଇ ଲାଗିଲେ; "ଦେଖ, ମୁଁ ଯେତେବେଳେ ଦଳ ଅଥବା ସରକାରୀ କାମରେ ଥାଏଁ, ସେତେବେଳେ ପରିବାରର କାହା ସହିତ ମିଶେ ନାହିଁ ଏବଂ ଯେତେବେଳେ ପାରିବାରିକ କାର୍ଯ୍ୟରେ ଥାଏଁ, ସେତେବେଳେ କୌଣସି ସରକାରୀ ବା ଦଳୀୟ ଲୋକଙ୍କ ସହିତ ସଂପର୍କ ରଖେ ନାହିଁ । ଏହାହିଁ ନିୟମ । ତୁମେ ସବୁ ସେ କଥା ବୁଝିବା ଉଚିତ ।"

**॥ ପୁରାପୁରି ପାରିବାରିକ ॥**

ଅଟଳଜୀଙ୍କର ନିଜର ପରିବାର ନାହିଁ । କାରଣ ସେ ଚିରକୁମାର । କିନ୍ତୁ ନିଜର ଭାଇ-ଭଉଣୀମାନଙ୍କ ପରିବାର ତଥା ଅନ୍ୟ ବଂଧୁମାନଙ୍କ ପରିବାର ସହିତ ସେ ଯେପରି ଅନ୍ତରଙ୍ଗ ଭାବରେ ମିଶନ୍ତି, ତାହା ଦେଖିଲେ ମନେ ହେବ ସେ ଜଣେ ପୁରା ସଂସାରୀ ବା ପୂରାପୂରି ପାରିବାରିକ । ଗ୍ୱାଲିୟର ଓ ବଟେଶ୍ୱରକୁ ଆସିଲା ବେଳେ ସେମାନଙ୍କ ସହିତ ସେ କିପରି ମିଶନ୍ତି, ସେ ସଂପର୍କରେ ତାଙ୍କର ଝିଆରୀ-ପୁତୁରା, ଭଣଜା-ଭାଣିଜୀ ଓ ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନମାନଙ୍କଠାରୁ ବହୁତ ମଜାଦାର ଗପ ଶୁଣିବାକୁ ମିଳିଥାଏ । ବେଳେ ବେଳେ ସେ ସାଇକେଲରେ ଓ ପଦବ୍ରଜରେ ସେମାନଙ୍କ ଘରକୁ ବୁଲି ଯାଆନ୍ତି । ଗ୍ୱାଲିୟରରେ ପ୍ରତିବର୍ଷ ଡିସେମ୍ବର ୨୫ରୁ ଜାନୁଆରୀ ୧୪ ତାରିଖ ପର୍ଯ୍ୟନ୍ତ ଯେଉଁ ମେଳା ହୁଏ, ସେଥିରେ ସେ ଅନେକ ସମୟରେ ପରିବାରର ଲୋକମାନଙ୍କ ସହିତ ଯୋଗ ଦେଇଥାନ୍ତି, ଟାଙ୍ଗାରେ ବସି ସହର ପରିକ୍ରମା କରନ୍ତି; ଏପରିକି ମେଳାର ଚକ୍ରୀ ଝୁଲାରେ ପିଲାମାନଙ୍କ ସହିତ ବସି ମଜା-ମଉଜ କରନ୍ତି ଏବଂ ଭଲ ସିନେମା ଚାଲୁଥିଲେ ବେଳେ ବେଳେ ସେମାନଙ୍କୁ ନେଇ ସିନେମା ଦେଖିବାକୁ ମଧ୍ୟ ଯାଆନ୍ତି ।

ଥରେ ତାଙ୍କର କେତେଜଣ ଝିଆରୀ ସେକେଣ୍ଡ ସୋ' ସିନେମା ଦେଖିବାର କାର୍ଯ୍ୟକ୍ରମ କରିଥିଲେ । ଅଟଳଜୀ ବ୍ୟସ୍ତ ଥିବାରୁ ସେମାନଙ୍କ ସହିତ ଯିବା ସମ୍ଭବ ନଥିଲା । ପରିବାରର ଜଣେ ବୟସ୍କ ସଭ୍ୟ କହିଲେ: "ଏତେ ରାତିରେ ଝିଅପିଲାମାନେ ସିନେମା ଯିବା ଠିକ୍ ନୁହେଁ । ବଦ୍‌ମାସ ଟୋକାମାନେ ଛିଗୁଲେଇ ପାରନ୍ତି ।" ରୀତା ନାମର ଝିଅଟିଏ ସଙ୍ଗେ ସଙ୍ଗେ ଉତ୍ତର ଦେଲା: "ଯେ ଚପଲ ତା'ହେଲେ କାହିଁକି ଅଛି ?" ଅଟଳଜୀ ଏ କଥା ଶୁଣି ଭାରି ଖୁସି ହେଲେ ଏବଂ କହିଲେ: "ସାବାସ୍ ରୀତା, ତୁମମାନଙ୍କ ଠାରୁ ମୁଁ ଏୟାହିଁ ଆଶା କରେଁ ।"

ଅଟଳଜୀ, ଝିଅ-ପୁଅମାନଙ୍କର ଅସବର୍ଣ୍ଣ ବା ଅନ୍ତର୍ଜାତୀୟ ବିବାହ ତଥା ସ୍ୱେଚ୍ଛା-ବିବାହର ବରାବର ପକ୍ଷପାତୀ ଥିଲେ ଏବଂ ନିଜର ପୁତୁରା-ଝିଆରୀମାନଙ୍କୁ ବି ଏ ବିଷୟରେ ଖୋଲାଖୋଲି ଭାବରେ କେତେଥର କହିଛନ୍ତି । ସେମାନଙ୍କର ବିବାହ ସମୟରେ ସେ ବରାବର ପଚାରୁଥିଲେ: 'ନିଜ ଇଚ୍ଛାରେ ଓ ନିଜ ପସନ୍ଦ ମୁତାବକ ବିବାହ କରୁଛ ନା ନାହିଁ ?' ପିଲାମାନଙ୍କ ସହ ସେ ଅତ୍ୟନ୍ତ ଖୋଲାଖୋଲି ଭାବରେ କଥାବାର୍ତ୍ତା କରିଥାନ୍ତି, କେବେ କୌଣସି ବିଷୟରେ କପଟାଚାରଣ କରନ୍ତି ନାହିଁ ।

ତାଙ୍କର ସାନ ପୁତୁରା ଦୀପକ ଜଣେ ସ୍ୱୟଂସେବକ । ସେଥିପାଇଁ ସେ ଖୁବ୍ ଗର୍ବିତ । ନିଜର ଚାଚାଙ୍କ ସମ୍ବନ୍ଧରେ ସେ କହନ୍ତି: "ସେ ଆମ ସାଙ୍ଗରେ ପୂର୍ବରୁ ବହୁତ କଥାବାର୍ତ୍ତା କରୁଥିଲେ, ଆମର କବିତାବୃତ୍ତି ଶୁଣୁଥିଲେ, ଅନ୍ତାକ୍ଷରୀ କରାଉଥିଲେ । ମୋର ନାମ ସୁନୀଲ ଥିଲା, ସେ ତାକୁ ବଦଳାଇ 'ଦୀପକ' ରଖିଥିଲେ । 'ଦୀପ' ଜନସଂଘର ନିର୍ବାଚନ ଚିହ୍ନ ବି ଥିଲା । ତାଙ୍କ ସହିତ ଆମେ ସବୁ କୃଷ୍ଣା ଦୁଗ୍ଧ ଭଣ୍ଡାରରେ ଦୁଧ ପିଉଥିଲୁଁ । କଡ଼ାଇର ଗରମ ଗରମ ମୋଟା ମଲାଇଥିବା ଦୁଧ ସେ ଧୀରେ ଧୀରେ ପିଇବାକୁ ଭଲ ପାଉଥିଲେ । ଆମକୁ ବି ସେମିତି ପିଇବାକୁ କହୁଥିଲେ ।"

ଅଟଳଜୀଙ୍କ ପରିବାରର ମୋଟ ସଦସ୍ୟ ସଂଖ୍ୟା ଏବେ ପ୍ରାୟ ଦେଢ଼ ଶହ ପାଖାପାଖି । ସମସ୍ତଙ୍କର ଖବର ଅନ୍ତର ସେ ବରାବର ବୁଝୁଥିଲେ । ପିଲାମାନଙ୍କ ସହ ସେ ବେଶି ମିଶୁଥିଲେ । ତାଙ୍କର ନାତି-ନାତୁଣୀଙ୍କ ସଂଖ୍ୟା ପ୍ରାୟ ତିରିଶ । ତାଙ୍କର ଗୋଟିଏ ନାତି ପୁନୀତ୍ କହେ: "ନାନାଜୀଙ୍କ ନେଚର୍ ବହୁତ ଭଲ । ଆମ ସାଙ୍ଗରେ ସେ ଯେମିତି ମିଳା ମିଶା କରନ୍ତି, ମନେ ହୁଏନା ସେ ଏତେ ବଡ଼ ଜଣେ ନେତା । ଆମେ ତାଙ୍କ ଠାରୁ ଯେତେବେଳେ ଯାହା ଚାହୁଁଥିଲୁଁ, ସଙ୍ଗେ ସଙ୍ଗେ ତାହା ସେ କିଣି ଦେଉଥିଲେ । ନାନାଜୀଙ୍କ ସହିତ ମେଳାରେ ବୁଲିବା ଓ ଝୁଲାରେ ବସି ଝୁଲିବା ପାଇଁ ଆମକୁ ଭାରି ମଜା ଲାଗୁଥିଲା ।"

**।। କବିତ୍ୱ ଓ ସାହିତ୍ୟ-ପ୍ରୀତି ।।**

ବି.ଏ.ପାସ୍ କଲା ବେଳକୁ ଅଟଳଜୀ କେବଳ ଗ୍ୱାଲିୟରରେ ନୁହେଁ, ରାଜ୍ୟର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ପରିଚିତ ହୋଇ ଯାଇଥିଲେ । ବିଶେଷ କରି ଜଣେ ତରୁଣ କବି ଓ ଭଲ ବକ୍ତା ରୂପେ ବିଦଗ୍ଧ ମହଲରେ ସେ ପରିଚିତ ହୋଇ ପାରିଥିଲେ । ମଞ୍ଚ ଉପରେ ତାଙ୍କର କବିତାବୃତ୍ତି ଓ ଅକୁଣ୍ଠ ଅଭିଭାଷଣ ଶ୍ରୋତାମାନଙ୍କୁ ମୁଗ୍ଧ କରୁଥିଲା । ନବମ ଶ୍ରେଣୀରେ ପଢୁଥିବା ବେଳରୁ ସେ କବିତା ଲେଖିବା ଆରମ୍ଭ କରିଥିଲେ । 'ତାଜମହଲ' ଉପରେ ସେ ଲେଖିଥିଲେ ତାଙ୍କର ପ୍ରଥମ କବିତା । ଏ ସଂପର୍କରେ ଅଟଳଜୀ ନିଜେ ଥରେ କହିଥିଲେ: "ତାଜମହଲ ଉପରେ ମୁଁ ମୋର ପ୍ରଥମ କବିତା ରଚନା କରିଥିଲି । କିନ୍ତୁ ସେଥିରେ 'ତାଜ'ର ସୌନ୍ଦର୍ଯ୍ୟ ଚିତ୍ରଣ ବହୁତ କମ୍ ଥିଲା, ତାର ନିର୍ମାଣରେ କେତେ ଶୋଷଣ କରାଯାଇଥିବ, ତାର କଳ୍ପନାହିଁ ଅଧିକ ଥିଲା ।"

ସାହିତ୍ୟ-ପ୍ରୀତିର ଅଙ୍କୁର ତାଙ୍କ ଭିତରେ ବାଲ୍ୟକାଳରୁହିଁ ରହିଥିଲା । ତା'ଛଡ଼ା ଏ କ୍ଷେତ୍ରରେ ତାଙ୍କର ପିତା ତଥା ସବା ବଡ଼ ଭାଇଙ୍କର ଯଥେଷ୍ଟ ପ୍ରଭାବ ମଧ୍ୟ ତାଙ୍କ ଉପରେ ରହିଥିଲା । ଏ ସଂକ୍ରାନ୍ତରେ ଅଟଳଜୀ ଥରେ ଲେଖିଥିଲେ: ''କବିତା ତଥା ସାହିତ୍ୟ ପ୍ରେମ ମୋତେ ବଂଶ-ପରମ୍ପରାରୁହିଁ ମିଳିଥିଲା । ମୋର ପିତା ପଣ୍ଡିତ କୃଷ୍ଣବିହାରୀ ବାଜପେୟୀ ତାଙ୍କ ଅମଳରେ ଗ୍ୱାଲିୟରର ଜଣାଶୁଣା କବି ଓ ଲେଖକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ସେ ବ୍ରଜଭାଷା ଓ ଖଡ଼ିବୋଲି - ଉଭୟ ଭାଷାରେ ଲେଖୁଥିଲେ । ତାଙ୍କ ଦ୍ୱାରା ରଚିତ ଏକ ପ୍ରାର୍ଥନା ସର୍ବତ୍ର ଗାନ କରାଯାଉଥିଲା । ତାଙ୍କର ବହୁ କବିତାଂଶ ମୋର ଏବେ ବି ମନେ ଅଛି । ମୋର ପିତାମହ ପଣ୍ଡିତ ଶ୍ୟାମଲାଲ ବାଜପେୟୀ ଯଦ୍ୟପି ନିଜେ କବି ନଥିଲେ, ତଥାପି ସଂସ୍କୃତ ଓ ହିନ୍ଦୀ ଉଭୟ ଭାଷାର କାବ୍ୟ ସାହିତ୍ୟରେ ତାଙ୍କର ଗଭୀର ପାଣ୍ଡିତ୍ୟ ତଥା ରୁଚି ରହିଥିଲା । ଅସଂଖ୍ୟ କବିତା ତାଙ୍କର ମୁଖସ୍ଥ ଥିଲା । ମୋର ବଡ଼ ଭାଇ ପଣ୍ଡିତ ଅବଧ ବିହାରୀ ବାଜପେୟୀ ମଧ୍ୟ ଜଣେ ଭଲ କବି ଥିଲେ । ଆମ ପରିବାରରେ ବରାବର ଏକ ସାହିତ୍ୟିକ ବାତାବରଣ ରହି ଆସିଥିଲା । ସେତେବେଳେ ସର୍ବତ୍ର କବି ସମ୍ମିଳନୀର ଧୂମ୍ ଥିଲା । ମୁଖ୍ୟତଃ ବୀର ଓ ଶୃଙ୍ଗାର ରସର କବିତା ଓ ଧନ୍ଦାମୂଳକ କବିତା ଶ୍ରୋତାମାନେ ପସନ୍ଦ କରୁଥିଲେ । ଗାମ୍ଭୀର୍ଯ୍ୟପୂର୍ଣ୍ଣ ଓ ରସୋତ୍ତୀର୍ଣ୍ଣ ପରିବେଶରେହିଁ କବିତା ସବୁ ପାଠ କରାଯାଉଥିଲା । ପରିବାରର ଅନୁକୂଳ ବାତାବରଣ ସାଙ୍ଗକୁ ସଂଗୀ-ସାଥୀମାନଙ୍କ ଦେଖା-ଦେଖି ମୁଁ ବି କବି ସମ୍ମିଳନୀମାନଙ୍କରେ ଯୋଗ ଦେବାକୁ ଆରମ୍ଭ କଲି । ପ୍ରଥମେ ଶ୍ରୋତା ରୂପେ ଏବଂ ତା'ପରେ ଜଣେ ଉଦୀୟମାନ କିଶୋର କବି ରୂପେ । 'ତାଜ ମହଲ' ଥିଲା ମୋର ପ୍ରଥମ କବିତା । ତାହା ଆମ ହାଇସ୍କୁଲର ମୁଖପତ୍ରରେ ମଧ୍ୟ ପ୍ରକାଶ ପାଇଥିଲା ।''

**।। ନାମର ସାର୍ଥକତା ।।**

ଅଟଳବିହାରୀ ବାଜପେୟୀଙ୍କ ବ୍ୟକ୍ତିତ୍ୱର ଏକ ବିଶେଷତ୍ୱ ହେଉଛି ତାଙ୍କର ଚରିତ୍ରରେ ନିଜ ନାମର ସାର୍ଥକତା । ନିଜର ବିଶ୍ୱାସ, ନୀତି ଓ ଆଦର୍ଶରେ ସେ ବରାବର ଅଟଳ ରହି ଆସିଛନ୍ତି; କେବେ କୌଣସି ପ୍ରକାର ସାଲିସ୍ କରିନାହାନ୍ତି । ଛାତ୍ରାବସ୍ଥାରୁହିଁ ସେ ନିଜର ଏହି 'ଅଟଳତ୍ୱ'ର ପରିଚୟ ଦେଇଛନ୍ତି । ଭିକ୍ଟୋରିଆ କଲେଜରେ ପଢୁଥିବା ବେଳେ ସେ ୧୯୪୩ରେ କଲେଜ୍ ୟୁନିଅନ୍ ବା ଛାତ୍ର ସଂସଦର ସଂପାଦକ ରୂପେ ଓ ୧୯୪୪ରେ ସଂସଦର ଉପାଧ୍ୟକ୍ଷ ରୂପେ ନିର୍ବାଚିତ ହୋଇଥିଲେ । ସେତେବେଳେ କଲେଜର କୌଣସି ଅଧ୍ୟାପକଙ୍କୁ ୟୁନିଅନ୍‌ର ଅଧ୍ୟକ୍ଷ ରୂପେ ମନୋନୀତ କରାଯାଉଥିଲା । କଲେଜ୍ ୟୁନିଅନ୍‌ର ଉତ୍ସବ ପାଇଁ ଅଟଳଜୀ ମହାପଣ୍ଡିତ ରାହୁଲ ସାଂସ୍କୃତ୍ୟାୟନଙ୍କୁ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରଣ କରିଥିଲେ । କିନ୍ତୁ ସେ ନେଇ ୟୁନିଅନ୍ ସଂପାଦକଙ୍କ ସହିତ ତାଙ୍କର କେତେକ ମତଭେଦ ଉପୁଜିବାରୁ ସେହି ପ୍ରଶ୍ନ ଉପରେ ଅଟଳଜୀ ଇସ୍ତଫା ଦେଲେ ଏବଂ ୟୁନିଅନ୍ ପାଇଁ ପୁଣି ନିର୍ବାଚନ କରାଗଲା । ଅଟଳଜୀ

ପୁଣି ଉପାଧ୍ୟକ୍ଷ ରୂପେ ଅଧିକ ଭୋଟରେ ନିର୍ବାଚିତ ହେଲେ । ପରେ ରାହୁଳଜୀଙ୍କ ଯୋଗଦାନକ୍ରମେ କଲେଜ ୟୁନିଅନ୍‌ର ଉତ୍ସବ ସଫଳତା ସହକାରେ ସଂପନ୍ନ ହେଲା ।

ଛାତ୍ରାବସ୍ଥାରୁହିଁ ଅଟଳଜୀ ଶୃଙ୍ଖଳା, ଅନୁଶାସନ ଓ ନିୟମାନୁବର୍ତ୍ତିତା ଉପରେ ବିଶେଷ ଗୁରୁତ୍ୱ ଦେଇ ଆସିଛନ୍ତି । ଏ କ୍ଷେତ୍ରରେ ମଧ କୌଣସି ପ୍ରକାର ସାଲିସ୍ ନ କରି ନିଜର ନୀତିକୁ ନିଷ୍ଠାପର ଓ କଠୋର ଭାବରେ ପାଳନ କରି ଆସିଛନ୍ତି । ଭିକ୍ଟୋରିଆ କଲେଜରେ ସେ ଛାତ୍ର ୟୁନିଅନ୍‌ର ଉପାଧ୍ୟକ୍ଷ ଥିବା ବେଳେ ଘଟିଥିବା ଏକ ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ । ତାଙ୍କ ଉଦ୍ୟମରେ ୟୁନିଅନ୍ ପକ୍ଷରୁ ଏକ ଅଖିଳ ଭାରତୀୟ କବି ସମ୍ମେଳନର ଆୟୋଜନ କରାଯାଇଥାଏ । ଅଟଳଜୀ ନିଜେ ଏହାର ସଂଯୋଜକ ଥାନ୍ତି । ସେ ସମୟର ପ୍ରତିଷ୍ଠିତ କବି ଡଃ ଶିବ ମଙ୍ଗଳ ସିଂହ 'ସୁମନ୍' ଥାନ୍ତି ଭିକ୍ଟୋରିଆ କଲେଜର ହିନ୍ଦୀ ବିଭାଗ ପ୍ରାଧ୍ୟାପକ । କବି ସମ୍ମେଳନରେ ପଠିତ ହେବାକୁ ଥିବା କବିତା ଶୁଣିବା ଲାଗି ସହରର ବହୁ ସମ୍ଭ୍ରାନ୍ତ ନାଗରିକ, ଅଧ୍ୟାପକ ଓ ଆଗ୍ରହୀ ଛାତ୍ରମାନେ ଯଥା ସମୟରେ ପହଞ୍ଚି ଅପେକ୍ଷା କରିଥାନ୍ତି । ନିର୍ଦ୍ଧାରିତ ସମୟର ଏକ ଘଣ୍ଟା ପରେ ମଧ ନିମନ୍ତ୍ରିତ କବିମାନେ ସଭାସ୍ଥଳରେ ଉପସ୍ଥିତ ହୋଇ ନଥିଲେ । ସେମାନେ ସମସ୍ତେ ଅଧ୍ୟାପକ-କବି ସୁମନ୍‌ଙ୍କ ଘରେ ଚା'ଜଳଖିଆ ଖାଇବା ସହ ଗପ କରିବାରେ ବ୍ୟସ୍ତ ଥାନ୍ତି । ଶ୍ରୋତାମାନଙ୍କ ମଧରେ ବିରକ୍ତି କ୍ରମଶଃ ବଢୁଥାଏ । ଅଧ୍ୟାପକ 'ସୁମନ୍' ତଥା ଅନ୍ୟ କବିମାନଙ୍କର ଏ ପ୍ରକାର ବିଶୃଙ୍ଖଳ ଓ ଦାୟିତ୍ୱହୀନ ଆଚରଣ ଦେଖି ଅଟଳଜୀ ହଠାତ୍ କବି ସମ୍ମେଳନ କାର୍ଯ୍ୟକ୍ରମ ବାତିଲ କରାଗଲା ବୋଲି ଘୋଷଣା କରିଦେଲେ । ଶ୍ରୋତାମାନେ ଉଠି ଚାଲିଗଲେ । 'ସୁମନ' ସମେତ କବିମାନେ ଆସି ସେଠାରେ ପହଞ୍ଚିଲାବେଳକୁ ସଭାସ୍ଥଳ ଶୂନ୍ୟ ।

ସେହି ଘଟଣାର ଦୀର୍ଘ ପଚାଶ ବର୍ଷ ପରେ ଗତ ୧୯୯୫ ମସିହା ଅକ୍ଟୋବର ୧୩ ତାରିଖ ଦିନ ଦିଲ୍ଲୀରେ ଅଟଳଜୀଙ୍କର କବିତା ଗ୍ରନ୍ଥ "ମେରୀ ଇକ୍ୟାବନ୍ କବିତାଏଁ"ର ଲୋକାର୍ପଣ ବା ଉନ୍ମୋଚନ ଉତ୍ସବରେ ତାଙ୍କ ସହିତ ବିଶିଷ୍ଟ ଅତିଥି ରୂପେ ମଞ୍ଚାସୀନ ଥିଲେ କବି ଡଃ 'ସୁମନ୍' । ୫୦ ବର୍ଷ ତଳର ଉପରୋକ୍ତ ଘଟଣାଟି ସମ୍ଭବତଃ ଅଟଳଜୀଙ୍କ ଅବଚେତନରେ ରହିଥିଲା । ସେ ନିଜର ବକ୍ତବ୍ୟରେ କହିଥିଲେ: "ଛାତ୍ର-ଜୀବନରେ ଯଦି ମୋର କିଛି ଭୁଲ୍ ହୋଇଯାଇଥାଏ, ତେବେ ସେଥିଲାଗି ମୁଁ ମୋର ଗୁରୁଦେବଙ୍କ ନିକଟରେ କ୍ଷମା ଭିକ୍ଷା କରୁଛି । ନିଜର ନୀତି, ଆଦର୍ଶ ଓ ବିଶ୍ୱାସରେ ଯିଏ ଯଥାର୍ଥରେ ଅଟଳତ୍ୱର ପରିଚୟ ଦେଇପାରେ, ସେହିଁ ପ୍ରକୃତରେ ଏ ପ୍ରକାର ବିନୟଶୀଳତାର ନିଦର୍ଶନ ଦେଖାଇପାରେ !

**।। ପିତା ଓ ପୁତ୍ର ସହପାଠୀ ।।**

ଗ୍ୱାଲିୟରର ଭିକ୍ଟୋରିଆ କଲେଜରୁ ଅଟଳଜୀ ହିନ୍ଦୀ, ସଂସ୍କୃତ ଓ ଇଂରାଜୀ- ଏହି ତିନି ବିଷୟ ନେଇ ପ୍ରଥମ ଶ୍ରେଣୀରେ ବି.ଏ.ପାସ୍ କଲାପରେ ରାଜନୀତି ବିଜ୍ଞାନ ବିଷୟରେ ଏମ୍.ଏ. ପଢ଼ିବା ଲାଗି କାନପୁର ଗଲେ। ତତ୍‌ସହିତ ଆଇନ ଶିକ୍ଷା କରିବା ପାଇଁ ମଧ୍ୟ ସେ ଇଚ୍ଛା କଲେ। ସେତେବେଳେ ଆଗ୍ରା ବିଶ୍ୱବିଦ୍ୟାଳୟରେ ଏମ୍.ଏ. ଓ ଏଲ୍.ଏଲ୍.ବି. ଏକା ସାଙ୍ଗରେ ପଢ଼ିବା ପାଇଁ ଅନୁମତି ଦିଆଯାଉଥିଲା। କିନ୍ତୁ ଦୁଇ ବିଷୟର ଫାଇନାଲ ଏକା ସାଙ୍ଗରେ କରାଯାଇ ପାରୁ ନଥିଲା। ଅଟଳଜୀ ଡି.ଏ.ଭି. କଲେଜରେ ଏମ୍.ଏ.ରେ ନାମ ଲେଖାଇବା ବେଳକୁ ତାଙ୍କର ପିତା କୃଷ୍ଣବିହାରୀ ସରକାରୀ କାର୍ଯ୍ୟରୁ ସେବାନିବୃତ୍ତ ବା ଅବସରପ୍ରାପ୍ତ ହୋଇ ସାରିଥିଲେ। ତେଣୁ ସେ ମଧ୍ୟ କାନପୁର ଯାଇ ଆଇନ ଶିକ୍ଷା କରିବାକୁ ନିଷ୍ପତ୍ତି କଲେ। ତାଙ୍କର ବିଦ୍ୟାନୁରାଗ ଅତ୍ୟନ୍ତ ପ୍ରବଳ ଥିବା କାରଣରୁ ପରିଣତ ବୟସରେ ଛାତ୍ର ସାଜି କ୍ଲାସ୍‌ରେ ପାଠ ପଢ଼ିବା, ପୁଣି ନିଜ ପୁଅର ସହପାଠୀ ହେବା ଲାଗି ତାଙ୍କ ମନରେ ଆଦୌ କୁଣ୍ଠା ନଥିଲା। କେବଳ ସହପାଠୀ ନୁହେଁ, ପିତା ଓ ପୁତ୍ର ଉଭୟେ କାନପୁର ଯାଇ ଗୋଟିଏ ହଷ୍ଟେଲରେ ସହ-ଅନ୍ତେବାସୀ ହୋଇ ମଧ୍ୟ ରହିଲେ। ଉଭୟଙ୍କର ଏ ପ୍ରକାର ବିଦ୍ୟାନୁରାଗ ଦେଖି ସେତେବେଳେ ଉଭୟ କଲେଜ ତଥା ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ-ଅଧ୍ୟାପକ-ଛାତ୍ର ମହଲରେ ବ୍ୟାପକ ବିସ୍ମୟ ଓ କୌତୂହଳ ସୃଷ୍ଟି ହୋଇଥିଲା। କ୍ଲାସ୍‌ମେଟ୍ ତଥା ରୁମ୍‌ମେଟ୍ ରୂପେ ରହୁଥିବା ପିତା-ପୁତ୍ରଙ୍କୁ ଦେଖିବା ଲାଗି ସେତେବେଳେ ଅନ୍ୟ କଲେଜର ଛାତ୍ର ଓ ଅଧ୍ୟାପକମାନେ କାନପୁରକୁ ଆସୁଥିଲେ।

ଆଗ୍ରା ବିଶ୍ୱବିଦ୍ୟାଳୟରେ ଡି.ଏ.ଭି. କଲେଜ ଥିଲା ସର୍ବଶ୍ରେଷ୍ଠ ଶିକ୍ଷାନୁଷ୍ଠାନ। ସେଠାକାର ଅଧ୍ୟାପକମାନେ ଖ୍ୟାତିମାନ୍ ଥିଲେ। ଶିକ୍ଷାୟତନର ପରିବେଶ ମଧ୍ୟ ବହୁତ ଭଲ ବା ଅନୁକୂଳ ଥିଲା। ସେଥି ପାଇଁ ସାରା ଦେଶରେ ଏ କଲେଜର ସୁନାମ ରହିଥିଲା। ଅଟଳଜୀ ଏଠାରୁ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ପାଇ ଏମ୍.ଏ. ପାସ୍ କରିଥିଲେ। ପ୍ରଥମ ସ୍ଥାନ ଅଧିକାର କରିଥିଲେ ତାଙ୍କର ସହପାଠୀ ତ୍ରିଲୋକୀନାଥ ଶ୍ରୀବାସ୍ତବ। ତାଙ୍କଠାରୁ ଅଟଳଜୀ ମାତ୍ର ଦୁଇ ନମ୍ବର କମ୍ ପାଇଥିଲେ। ବିଶ୍ୱବିଦ୍ୟାଳୟର ପ୍ରଥମ ଚାରୋଟି ସ୍ଥାନ ଡି.ଏ.ଭି. କଲେଜକୁ ମିଳିଥିଲା।

କାନପୁରରେ ଥିବା ବେଳେ ଅଟଳଜୀ ପୂରା କାନପୁରିଆ ପାଲଟି ଯାଇଥିଲେ। ପଢ଼ାପଢ଼ି ସାଙ୍ଗକୁ ଆର୍.ଏସ୍.ଏସ୍.ର ବିଭିନ୍ନ କାର୍ଯ୍ୟକ୍ରମ ଓ ସଂଗଠନ ତଥା ସାହିତ୍ୟ- ସଂସ୍କୃତି କ୍ଷେତ୍ରରେ ସେ ସକ୍ରିୟ ଭୂମିକା ଗ୍ରହଣ କରୁଥିଲେ। ବିଭିନ୍ନ ସ୍ଥାନକୁ ଯାଇ ସେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ନୀତି, ଆଦର୍ଶ ଓ କାର୍ଯ୍ୟକ୍ରମ ସଂପର୍କରେ ଭାଷଣ ଦେଉଥିଲେ ଓ ଲୋକମାନଙ୍କୁ ବୁଝାଉଥିଲେ। ନିଜେ ମଧ୍ୟ ନିୟମିତ ଭାବେ ଶାଖାରେ ଯୋଗ ଦେଉଥିଲେ। ତାଙ୍କର ସାହିତ୍ୟ ଚର୍ଚ୍ଚା, କବିତା ଲେଖା, ସାଂସ୍କୃତିକ କାର୍ଯ୍ୟକ୍ରମ

ଓ କବି ସମ୍ମେଳନରେ ଯୋଗଦାନ ପ୍ରଭୃତି ମଧ୍ୟ ଅବ୍ୟାହତ ଥିଲା । ଏହି ସମୟ ତଥା ପରବର୍ତ୍ତୀ ସମୟରେ ସେ ବହୁତ କବିତା ଲେଖିଥିଲେ ମଧ୍ୟ ସେ ସବୁକୁ ସାଇତି ରଖିବାରେ ସେ ଆଦୌ ଯତ୍ନଶୀଳ ନ ଥିଲେ । ତେଣୁ ସେ କବିତା ଗୁଡ଼ିକ କୁଆଡ଼େ ହଜି ଯାଇଛି । ସେ ସବୁ କବିତା ଯଦି ସାଇତି ରଖାଯାଇ ପାରିଥାନ୍ତା, ତେବେ ଦେଶର କାବ୍ୟ ଜଗତରେ ଅଟଳଜୀ ଆଜି ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇ ପାରିଥାନ୍ତେ ।

**।। କାନପୁରରୁ ଯାଇ ଲକ୍ଷ୍ନୌରେ ।।**

କାନପୁରରେ ଏମ୍.ଏ. ଶିକ୍ଷା ସଂପୂର୍ଣ୍ଣ କରିବା ପରେ ଅଟଳଜୀ ଆଇନ ଶିକ୍ଷାର ଶେଷ ବର୍ଷ ପୂର୍ଣ୍ଣ କରି ନ ଥିବା ଅବସ୍ଥାରେହିଁ ଲକ୍ଷ୍ନୌ ଚାଲିଗଲେ । ସେଠା ବିଶ୍ୱବିଦ୍ୟାଳୟରେ ପି.ଏଚ୍.ଡ଼ି. କରିବାକୁ ସେ ମନସ୍ଥ କରିଥିଲେ । ସେତେବେଳେ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କରୁଥିବା ଛାତ୍ରମାନେ ଆଇ.ଏ.ଏସ୍. ହେବା ପାଇଁ ପ୍ରତିଯୋଗିତାମୂଳକ ପରୀକ୍ଷା ଦେବାକୁ ପ୍ରସ୍ତୁତି ଅଥବା ପି.ଏଚ୍.ଡ଼ି. କରୁଥିଲେ । ଅଟଳଜୀ ସରକାରୀ ଚାକିରୀ କରିବାକୁ ଚାହୁଁ ନଥିବା ଯୋଗୁଁ ଅଧ୍ୟାପନା ବୃତ୍ତିକୁହିଁ ପସନ୍ଦ କରୁଥିଲେ । କିନ୍ତୁ ଲକ୍ଷ୍ନୌରେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟଭାର ତାଙ୍କୁ ଅର୍ପଣ କରାଯିବା ଫଳରେ ସେ ପି.ଏଚ୍.ଡ଼ି. କରିବାକୁ ସମର୍ଥ ହେଲେ ନାହିଁ; ଅଧ୍ୟାପନା କରିବା ଲାଗି ତାଙ୍କର ସ୍ୱପ୍ନ ମଧ୍ୟ ସାକାର ହୋଇ ପାରିଲା ନାହିଁ । ଏ ସମ୍ବନ୍ଧରେ ସେ ୧୯୯୫ ଅଗଷ୍ଟ ୧୨ ତାରିଖ ଦିନ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ମାଳବ୍ୟ ହଲ୍‌ରେ ତାଙ୍କ ସମ୍ମାନାର୍ଥେ ଆୟୋଜିତ ସଭାରେ କହିଥିଲେ :

**।। ଦେଶ-ମାତୃକାର ଆହ୍ୱାନ ।।**

"ଏକଦା ସାରା ଭାରତରେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଖୁବ୍ ସୁନାମ ଥିଲା । ଏଠାକାର ଶିକ୍ଷା ଲାଭ କରିବା ଲାଗି ଦେଶର ବିଭିନ୍ନ ପ୍ରାନ୍ତରୁ ଛାତ୍ର-ଛାତ୍ରୀମାନେ ଏଠାକୁ ଆସୁଥିଲେ । ୧୯୪୩ରେ ମୁଁ ବି ଏଠାକୁ ସେହି ଉଦ୍ଦେଶ୍ୟରେ ଆସିବାକୁ ଚାହୁଁଥିଲି । କିନ୍ତୁ ଘଟଣାକ୍ରମେ କାନପୁରର ଡ଼ି.ଏ.ଭି. କଲେଜକୁ ଚାଲିଗଲି । ସେଠାରେ ରାଜନୀତି ବିଜ୍ଞାନରେ ଏମ୍.ଏ. ପାସ୍ କରିସାରି ଏ ବିଶ୍ୱବଦ୍ୟାଳୟରେ ପି.ଏଚ୍.ଡ଼ି. କରିବାକୁ ମୋର ଇଚ୍ଛା ଥିଲା । ସେ ସମୟରେ ଏଠାକାର ରାଜନୀତି ବିଜ୍ଞାନ ବିଭାଗର ଅଧ୍ୟାପକମାନଙ୍କର ଖୁବ୍ ନାମ-ଯଶ ଥିଲା ।

କିନ୍ତୁ ସେତେବେଳେ ଆମ ପାଇଁ ଆସିଥିଲା ରାଷ୍ଟ୍ରର ଏକ ବୃହତ୍ତର ଆଉ ମହତ୍ତର ଆହ୍ୱାନ... ସେହି ଆହ୍ୱାନରେ ଆମକୁ ଝାସ ଦେବାକୁ ପଡ଼ିଲା ଦେଶ-ମାତୃକାର କାର୍ଯ୍ୟରେ... ତାହା ଥିଲା ଏକ ସଂକଟର ସମୟ । ଅତଏବ ପି.ଏଚ୍.ଡ଼ି. କରିବାର ଇଚ୍ଛା ସେଇ ମନରେହିଁ ରହିଗଲା, ଆଉ ମୁଁ ମୋର ଜୀବନକୁ ଦେଶ ପାଇଁ ଉତ୍ସର୍ଗ କରିଦେଲି । ପରେ ଅବଶ୍ୟ ଏଠାରୁ ମୋତେ ସମ୍ମାନଜନକ ଉପାଧି ମିଳିଛି; କିନ୍ତୁ ତାହା

ଉଲ୍ଲେଖ କରିବା ପାଇଁ ମୁଁ ସଂକୋଚ ବୋଧ କରୁଛି।'' (ଦ୍ରଷ୍ଟବ୍ୟ: ଅଟଳ ବିହାରୀ ବାଜପେୟୀଙ୍କ 'କୁଛ ଲେଖ୍, କୁଛ ଭାଷଣ' -ପୃଷ୍ଠା ୨୭୯)

**॥ ଦେଶ-ବିଭାଜନର କୁପରିଣାମ ॥**

ସନ ୧୯୪୬ରେ ସାମ୍ପ୍ରଦାୟିକତା ଉପରେ ଜିନ୍ନା ଯେଉଁ ପ୍ରକାର ବୟାନ ଦେଲେ, ତଦ୍ୱାରା ଦେଶର ବିଭିନ୍ନ ସ୍ଥାନରେ ହିଂସାର ଉନ୍ମାଦ ଉପ୍ନନ ହୋଇଗଲା । ଏହି ପାଶବିକ ହାଣକାଟରୁ ସ୍ପଷ୍ଟ ହୋଇଗଲା ଯେ, ମୁସଲମାନମାନେ ଏବେ ନିଜର ଏକ ସ୍ୱତନ୍ତ୍ର ଦେଶ ଚାହାଁନ୍ତି । ଏହି ବିଭାଜନ ପାଇଁ ଯୁକ୍ତି ଦର୍ଶାଗଲା ଯେ, ମୁସଲମାନମାନଙ୍କର ଧର୍ମ ପୃଥକ୍, ଭାଷା ପୃଥକ୍, ସଂସ୍କୃତି ବି ପୃଥକ୍ । ତେଣୁ ସେମାନଙ୍କର ଦେଶ ମଧ୍ୟ ପୃଥକ୍ ହେବା ଦରକାର । ସେମାନେ ଆଉ ହିନ୍ଦୁସ୍ଥାନର ନାଗରିକ ହୋଇ ରହି ପାରିବେ ନାହିଁ । ପଣ୍ଡିତ ନେହେରୁ ଯେତେ ଶୀଘ୍ର ସମ୍ଭବ ଦେଶର ପ୍ରଧାନମନ୍ତ୍ରୀ ହେବାକୁ ଚାହୁଁଥିଲେ । ଗାନ୍ଧିଜୀ ପୂର୍ବରୁ, ଦେଶର ବିଭାଜନ ତାଙ୍କ ଶବ ଉପରେହିଁ ହେବ ବୋଲି କହୁଥିଲେ ମଧ୍ୟ, ନେହେରୁଙ୍କ ପ୍ରତି ନିଜର ଅତ୍ୟଧିକ ସ୍ନେହ କାରଣରୁ ସେ ସୁଦ୍ଧା ନୀରବ ହୋଇଗଲେ । ଶେଷରେ ଦେଶର ବିଭାଜନ ହୋଇଗଲା । କିନ୍ତୁ ପାକିସ୍ଥାନ ସୃଷ୍ଟି ହେବା ପରେ ମଧ୍ୟ ମୁସଲିମ୍ ସାଂପ୍ରଦାୟିକତାର ଅବସାନ ଘଟିଲା ନାହିଁ । ବରଂ ଦେଶର ଭୋଟ-କାରବାରୀମାନଙ୍କର ତୁଷ୍ଟିକରଣ-ନୀତି ଫଳରେ ତାହା ଦିନକୁ ଦିନ ବୃଦ୍ଧି ପାଇ ଆଜି କି ପ୍ରକାର ପରିସ୍ଥିତି ସୃଷ୍ଟି ହୋଇଛି, ତାର ବିଷମୟ ପରିଣାମ ଆଜି ସମସ୍ତେ ଭୋଗ କରୁଛନ୍ତି ।

**॥ ନବ ଜାଗରଣର ଶଙ୍ଖନାଦ ॥**

୧୯୪୬ରୁ ହିଁ ପୂଜ୍ୟ ଗୁରୁଜୀଙ୍କୁ ଏହାର ଆଭାସ ମିଳି ଯାଇଥିଲା । ତେଣୁ ସେ ଦେଶରେ ଏକ ନବ ଜାଗରଣ ସୃଷ୍ଟି କରିବା ଏବଂ ଦେଶପ୍ରେମ ଓ ସାଂସ୍କୃତିକ ଚେତନାର ଶଙ୍ଖନାଦ କରିବା ଉଦ୍ଦେଶ୍ୟରେ ଲକ୍ଷ୍ନୌରୁ ଏକ ମାସିକ ପତ୍ରିକା ପ୍ରକାଶ କରାଯିବା ନିମନ୍ତେ ସ୍ଥିର କଲେ । ସେ ସମୟରେ ସଂଘର ମୁଖ୍ୟ କାର୍ଯ୍ୟାଳୟ ଚାରବାଗ ଷ୍ଟେସନ୍ ନିକଟରେ ଏ.ପି.ସେନ୍ ରୋଡ୍‌ରେ ଅବସ୍ଥିତ ଥିଲା । ସେତେବେଳେ ପ୍ରାନ୍ତ ପ୍ରଚାରକ ଥିବା ଶ୍ରୀ ଭାଉରାଓ ଦେଓରସ୍ କାର୍ଯ୍ୟକର୍ତ୍ତାମାନଙ୍କର ଏକ ବୈଠକରେ ଜଣାଇଲେ ଯେ ପୂଜ୍ୟ ଗୁରୁଜୀ ଲକ୍ଷ୍ନୌରୁ ଏକ ମାସିକ ପତ୍ର ପ୍ରକାଶ କରିବାକୁ ଚାହାନ୍ତି । ସବୁ କାର୍ଯ୍ୟକର୍ତ୍ତା ଏ ପ୍ରସ୍ତାବକୁ ଆନନ୍ଦ ସହକାରେ ସ୍ୱାଗତ କଲେ । ପଣ୍ଡିତ ଦୀନ ଦୟାଲ ଉପାଧ୍ୟାୟଙ୍କୁ ଏହି ପତ୍ରିକା ପ୍ରକାଶନର ଦାୟିତ୍ୱ ଦିଆଗଲା । ତାଙ୍କୁହିଁ ବସ୍ତୁତଃ ଏହାର ମେନେଜିଂ ଡାଇରେକ୍ଟର୍ କରାଗଲା । ତାଙ୍କର ବିଜ୍ଞତା, ଦକ୍ଷତା ଓ ଦୂରଦୃଷ୍ଟି ଉପରେ ସମସ୍ତଙ୍କର ବିଶ୍ୱାସ ଥିଲା । ସେ ଜଣେ ଚିନ୍ତକ, ଲେଖକ ତଥା ଉତ୍ତମ ସଂଗଠକ ମଧ୍ୟ ଥିଲେ । ସମସ୍ତଙ୍କୁ ସାଙ୍ଗରେ ନେଇ କାର୍ଯ୍ୟ କରିବାର ପ୍ରଣାଳୀ ତାଙ୍କୁ ଜଣା ଥିଲା ।

ପତ୍ରିକା ପ୍ରକାଶନର କାର୍ଯ୍ୟକୁ ଏକ ଆହ୍ୱାନ ରୂପେ ସେ ସ୍ୱୀକାର କରି ନେଲେ ଏବଂ ପାଠକମାନେ ଯେପରି ଏ ପତ୍ରିକାକୁ କେବଳ ମନୋରଂଜନ ପାଇଁ ନପଢ଼ି, ନିଜ ଦେଶର ଗୌରବମୟ ଅତୀତକୁ ଜାଣିବା, ବର୍ତ୍ତମାନ୍‌ର ଦୁର୍ଦ୍ଦଶାକୁ ହୃଦୟଙ୍ଗମ କରିବା ଏବଂ ଭବିଷ୍ୟତ୍ ନିର୍ମାଣ କରିବା ଉଦ୍ଦେଶ୍ୟରେ ପଢ଼ନ୍ତି, ସେଥିପାଇଁ ବ୍ୟବସ୍ଥା କରିବାକୁ ମନସ୍ଥ କଲେ ।

**॥ ପତ୍ରକାର ଜୀବନର ଶୁଭାରମ୍ଭ ॥**

ଏହା ପରେ ପ୍ରଶ୍ନ ଉଠିଲା: ଏହି ପତ୍ରିକାର ସମ୍ପାଦକ ଦାୟିତ୍ୱ କାହାକୁ ଦିଆଯିବ ? ଦେଓରସ୍‌ଜୀ ଓ ଉପାଧ୍ୟାୟଜୀ ଏ ସଂପର୍କରେ ପରସ୍ପର ମଧ୍ୟରେ ପରାମର୍ଶ କରି ଏହି କାର୍ଯ୍ୟ ନିମିତ୍ତ ଦୁଇଜଣ ସାହିତ୍ୟପ୍ରେମୀ ତରୁଣଙ୍କୁ ବାଛିଲେ । ସେ ଦୁଇଜଣ ହେଲେ: ଶ୍ରୀ ଅଟଳ ବିହାରୀ ବାଜପେୟୀ ଓ ସ୍ୱର୍ଗତ ରାଜୀବ ଲୋଚନ ଅଗ୍ନିହୋତ୍ରୀ । ସଂଘ-ପରିବାର ଛଡ଼ା ଏ ଦୁଇଜଣ ବାହାରେ ମଧ୍ୟ ପରିଚିତ ଥିଲେ । ଅଟଳଜୀ ଜଣେ କବି ଓ ସୁବକ୍ତା ରୂପେ ଏବଂ ରାଜୀବଜୀ ଜଣେ ସାଂସ୍କୃତିକ ସଂଗଠକ ଓ ସଂସ୍କୃତିବିଦ୍ ରୂପେ ପରିଚିତ ଥିଲେ । ସେ ସଂଘର ଜଣେ ପ୍ରଚାରକ ମଧ୍ୟ ଥିଲେ ।

**॥ ମାସିକ 'ରାଷ୍ଟ୍ରଧର୍ମ'ର ପ୍ରକାଶନ ॥**

ମାସିକ ପତ୍ରିକା ପ୍ରକାଶନର ପୂରା ଯୋଜନା ପ୍ରସ୍ତୁତ ହୋଇଗଲା । ପତ୍ରିକାର ଦୁଇ ସମ୍ପାଦକ-ବନ୍ଧୁ କେବଳ ସ୍ୱୟଂସେବକ ନଥିଲେ, ନିଜର ଘର-ପରିବାର ଛାଡ଼ି ସଂଘ କାର୍ଯ୍ୟରେ ନିଜକୁ ଉତ୍ସର୍ଗ ମଧ୍ୟ କରିଥିଲେ । ଏହା ପରେ ପତ୍ରିକାର ନାମକରଣ ସଂପର୍କରେ ବିଚାର କରାଗଲା । ଶ୍ରୀ ବିଦ୍ୟାସାଗର ନାମଧେୟ ଜଣେ ସ୍ୱୟଂସେବକଙ୍କ ଦ୍ୱାରା ପ୍ରସ୍ତାବିତ ନାମ "ରାଷ୍ଟ୍ରଧର୍ମ" ସମସ୍ତଙ୍କ ମନକୁ ପାଇଗଲା । ତେଣୁ ନୂଆ ପତ୍ରିକାଟିର ନାମ ଏହାହିଁ ରଖାଗଲା । ଲକ୍ଷ୍ନୌର ଜଣେ ସଂସ୍କୃତି-ସଂପନ୍ନ ନାଗରିକ ତଥା ସ୍ୱୟଂସେବକ ଶ୍ରୀ ରାଧେଶ୍ୟାମ କପୁରଙ୍କୁ ପତ୍ରିକାର ପ୍ରକାଶକ କରାଗଲା । ପତ୍ରିକା ସଂପର୍କରେ ଏକ ପ୍ରଚାରପତ୍ର ଜଣେ ସ୍ୱୟଂସେବକ ଶ୍ରୀ ଚନ୍ଦ୍ରପାଲ ସିଂହଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇଥିଲା । 'ରାଷ୍ଟ୍ରଧର୍ମ' ପତ୍ରିକାର ଡ଼ିଜାଇନ୍ ସ୍ଥାନୀୟ କଳା ମହାବିଦ୍ୟାଳୟରେ ପଢୁଥିବା ଜଣେ ସ୍ୱୟଂସେବକ ଶ୍ରୀ ଶାନ୍ତିଦେବଙ୍କ ଦ୍ୱାରା ପ୍ରସ୍ତୁତ ହେଲା, ଯାହାକି ସମସ୍ତଙ୍କର ପସନ୍ଦ ହୋଇଥିଲା । ଏହା ପରେ ପରେ ପତ୍ରିକାର ଗ୍ରାହକ ସଂଗ୍ରହ, ବିକ୍ରୟ ଓ ଅନ୍ୟାନ୍ୟ କାର୍ଯ୍ୟ ଆରମ୍ଭ ହୋଇଗଲା । ଏହାର ବାର୍ଷିକ ଗ୍ରାହକ ଶୁଳ୍କ ଦଶଟଙ୍କା, ଅର୍ଦ୍ଧବାର୍ଷିକ ଛଅ ଟଙ୍କା ଏବଂ ପ୍ରତି ସଂଖ୍ୟାର ମୂଲ୍ୟ ବାର ଅଣା (୭୫ ପଇସା) ରଖାଗଲା । ପତ୍ରିକାର ପରିଚାଳନା ଓ ପ୍ରସାର କାର୍ଯ୍ୟର ଦାୟିତ୍ୱ ନେଲେ ଶ୍ରୀ ବଜରଙ୍ଗ ଶରଣ ତିୱାରୀ ।

ଅମିନାବାଦର ମାରଓ୍ୱାଡ଼ି ଗଳିରେ 'ରାଷ୍ଟ୍ରଧର୍ମ'ର ଅଫିସ୍ ଖୋଲାଗଲା । ସଂଘର ଜଣେ କାର୍ଯ୍ୟକର୍ତ୍ତା ଶ୍ରୀ କୃଷ୍ଣ ଗୋପାଳ କଳଂତ୍ରୀ ନିଜ ଘର ପାଖରେ ଥିବା ଏକ ମନ୍ଦିର ସଂଲଗ୍ନ ଏକ କୋଠରୀ ଏହି କାର୍ଯ୍ୟ ପାଇଁ ବିନା ଭଡ଼ାରେ ଯୋଗାଇ ଦେଲେ । ଅଫିସ୍ କାର୍ଯ୍ୟ ପାଇଁ କେତେକ ଉପକରଣ ମଧ ସେ ଯୋଗାଇ ଦେଇଥିଲେ । ଅବଧ ପ୍ରିଣ୍ଟିଂ ଓ୍ୱାର୍କ୍ସର ମାଲିକ ଶ୍ରୀ ରାଜେଶ୍ୱର ଭାର୍ଗବ 'ରାଷ୍ଟ୍ରଧର୍ମ'ର ମୁଦ୍ରଣ କାର୍ଯ୍ୟ କରିବା ପାଇଁ ରାଜି ହୋଇଗଲେ । ପରେ ପରେ ପତ୍ରିକାର ଆବଶ୍ୟକୀୟ ଘୋଷଣା-ପତ୍ର ମଧ୍ୟ ସ୍ୱୀକୃତ ହୋଇଗଲା । ଏହା ପରେ ପରେ ପତ୍ରିକା ପାଇଁ ଲେଖା ପଠାଇବାକୁ ଅଟଳଜୀ ଦେଶର ବିଦ୍ୱାନ୍, କବି, ଲେଖକ ଓ ସଂସ୍କୃତିପ୍ରେମୀମାନଙ୍କ ନିକଟକୁ ଚିଠି ଲେଖିବା ଆରମ୍ଭ କରିଦେଲେ ଏବଂ ପ୍ରତହ ଲେଖା ସବୁ ପହଞ୍ଚିବାକୁ ଲାଗିଲା । ଦୁଇ ସଂପାଦକ ସେଗୁଡ଼ିକର ସଂପାଦନା କାର୍ଯ୍ୟରେ ବ୍ୟାପୃତ ରହିଲେ । ଏଥି ସହିତ କମ୍ପୋଜିଂ, ତ୍ରୁଟୀ ସଂଶୋଧନ ଇତ୍ୟାଦି କାର୍ଯ୍ୟ ମଧ ଚାଲୁ ହୋଇଗଲା ।

ପ୍ରେସ୍ ମାଲିକ ଶ୍ରୀ ଭାର୍ଗବ ଆସି ଅଟଳଜୀଙ୍କୁ ପଚାରିଲେ: ''ପତ୍ରିକା କେତେ କପି ଛପାଯିବ ?'' ସେ ଉତ୍ତର ଦେଲେ: ''ତିନି ହଜାର'' । ଏହା ଶୁଣି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେତେବେଳେ କୌଣସି ପତ୍ରିକା ପାଞ୍ଚ ଶହରୁ ଅଧିକ ଛପାଯାଉ ନଥିଲା । ତେଣୁ ସେ ପୁନରାୟ କହିଲେ: ''ଭଲ ଭାବରେ ଭାବି ଚିନ୍ତି କହନ୍ତୁ । ଏମିତି ନ ହେଉ କି ପତ୍ରିକାର ୨ୟ ସଂଖ୍ୟା ଛପାଯାଇ ପାରିବ ନାହିଁ । ଅଟଳଜୀ ଧୀରସ୍ଥିର ଭାବରେ ଉତ୍ତର ଦେଲେ: ''ସେପରି ହେବ ନାହିଁ । ୨ୟ ସଂଖ୍ୟା ତ ଆହୁରି ଅଧିକ ଛାପିବାକୁ ପଡ଼ିବ । କାରଣ ଦୁଇ ହଜାରରୁ ଅଧିକ ଗ୍ରାହକ ତ ପୂରା ବର୍ଷକର ଚାନ୍ଦା ପଠାଇ ଦେଇ ସାରିଲେଣି ।'' ଏ କଥା ଶୁଣି ଭାର୍ଗବଜୀ ବହୁତ ଖୁସି ହୋଇଗଲେ ।

**॥ ପ୍ରଥମ ସଂଖ୍ୟାରୁହିଁ ବାଜି ମାତ୍ ॥**

'ରାଷ୍ଟ୍ରଧର୍ମ'ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଲା ବିକ୍ରମ ସଂବତ୍ ୨୦୦୪ ଶ୍ରାବଣ ମାସରେ । ପ୍ରଥମ ସଂଖ୍ୟାହିଁ ପାଠକ ମହଲରେ ଚହଳ ପକାଇ ଦେଲା । ସଂସ୍କୃତିପ୍ରେମୀ ରୁଚିଶୀଳ ପାଠକମାନଙ୍କ ନିକଟରେ ଏହା ଯଥେଷ୍ଟ ଆଦର ଲାଭ କରି ପାରିଥିଲା । ଏଥିରେ ସଂକଳିତ ଲେଖା ସମୂହ ଯେପରି ସୁସଂପାଦିତ ଥିଲା । ଏହାର ସଂପାଦକୀୟ ମଧ ସେହିପରି ବଳିଷ୍ଠ ଚିନ୍ତାର ଦ୍ୟୋତକ ଥିଲା, ଅଟଳଜୀ ଓ ରାଜୀବଜୀ ବହୁତ ଶ୍ରମ ସ୍ୱୀକାର କରି ଏହାକୁ ସୁସଂପାଦିତ ତଥା ଯଥାସମ୍ଭବ ତ୍ରୁଟିରହିତ କରି ପାରିଥିଲେ । ଏଥିରେ ପ୍ରକାଶିତ ଏକ ବ୍ୟଙ୍ଗ ଚିତ୍ର ସବୁରି ଦୃଷ୍ଟି ଆକର୍ଷଣ କରିଥିଲା । ମୋଟାମୋଟି ଭାବରେ ନବପ୍ରକାଶିତ ପତ୍ରିକାଟି ସବୁ ମହଲରେ ଚର୍ଚ୍ଚିତ ହୋଇଥିଲା । ଏହାର ପ୍ରଭାବରେ ହିଁ ରାଷ୍ଟ୍ରଧର୍ମର ୨ୟ ସଂଖ୍ୟା ଆଠ ହଜାର ଛପାଯାଇଥିଲା ।

## ।। କାର୍ଟୁନ୍‌ର କମାଲ୍ ।।

ଏହି ସଂଖ୍ୟାରେ ଯେଉଁ ବ୍ୟଙ୍ଗ ଚିତ୍ର ବା କାର୍ଟୁନ୍‌ଟି ଛପାଯାଇଥିଲା, ତାକୁ ପ୍ରସ୍ତୁତ କରିଥିଲେ ଗ୍ୱାଲିୟର-ନିବାସୀ ଚିତ୍ରକର ଶ୍ରୀ ହରିମୋହନ। କାର୍ଟୁନ୍ ତଳେ ଅମୀର ଖୁସ୍‌ରୋଙ୍କ କବିତାର ନିମ୍ନୋକ୍ତ ଦୁଇଟି ଧାଡ଼ି ଲେଖାଯାଇଥିଲା :

''ଖୀର୍ ପକାଇ ଯତନ୍ ସେ, ଚର୍‌ଖା ଦିୟା ଜଲାୟ
ଆୟା କୁତା ଖାଗୟା, ତୁ ବୈଠୀ ଢ଼ୋଲ୍ ବଜାୟ''

ଏହି କାର୍ଟୁନ୍‌ଟିକୁ ଦେଖି ପ୍ରେସ୍‌ର ମୁସଲମାନ୍ ମେସିନ୍ ଚାଳକ ବିଗିଡ଼ିଗଲା ଏବଂ ଏଥିରେ ଇସ୍‌ଲାମ ଧର୍ମ ପ୍ରତି ଅସମ୍ମାନ ପ୍ରଦର୍ଶନ କରାଯାଇଛି ବୋଲି ଦର୍ଶାଇ ତାକୁ ଛାପିବା ପାଇଁ ମନା କରିଦେଲା। ତାର ଏ ପ୍ରକାର ଆଚରଣରେ ପ୍ରେସ୍‌ର ହିନ୍ଦୁ କର୍ମଚାରୀମାନେ ବି ବିରକ୍ତ ହୋଇ ଉଠିଲେ। ଫଳରେ ପରିସ୍ଥିତି ଗରମାଗରମ ହୋଇଉଠିଲା। ପରେ ଅବଶ୍ୟ ପତ୍ରିକାର ଦୁଇ ଜଣ ସମ୍ପାଦକ କର୍ମଚାରୀମାନଙ୍କୁ ବୁଝାଇ ସୁଝାଇ ପରିସ୍ଥିତିକୁ ସମ୍ଭାଳି ନେଲେ ଏବଂ ପତ୍ରିକା ଛାପା ହେଲା। କିନ୍ତୁ ଏଇ ଛୋଟ ଘଟଣାଟି ସ୍ଥାନୀୟ ବୁଦ୍ଧିଜୀବୀ ମହଲରେ ଚହଳ ସୃଷ୍ଟି କରିଥିଲା, ଯାହାଫଳରେ ପତ୍ରିକାଟିର ଲୋକପ୍ରିୟତା ବଢ଼ି ଯାଇଥିଲା ଏବଂ ଏହା ପ୍ରକାଶ ପାଇବାର ଅଳ୍ପ ଦିନ ମଧ୍ୟରେ ହିଁ ସବୁ କପି ବିକ୍ରୀ ହୋଇଯାଇଥିଲା। ପ୍ରେସ୍‌ର ମାଲିକ ମଧ୍ୟ ଏଥିରେ ଅଧିକ ଉତ୍ସାହିତ ହୋଇ ପଡ଼ିଥିଲେ। ଗ୍ରାହକମାନଙ୍କ ଚାହିଦାକ୍ରମେ ସେ ଆହୁରି ୫୦୦ କପି ଛାପି ଦେଇଥିଲେ। 'ରାଷ୍ଟ୍ରଧର୍ମ'ର ଏହି ପ୍ରଥମ ସଂଖ୍ୟାରେ ଆଦି ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଏକ ରଙ୍ଗୀନ୍ ଚିତ୍ର, ଅଟଳଜୀଙ୍କର ଏକ ଲୋକପ୍ରିୟ କବିତା ତଥା ଦେଶ-ବିଭାଜନର ପରିଣାମ ସମ୍ପର୍କରେ ଏକ ଚିନ୍ତାଦ୍ୟୋତକ ନିବନ୍ଧ, ପୂଜ୍ୟ ଗୁରୁଜୀଙ୍କର ''ଆମର ରାଷ୍ଟ୍ରବାଦ'' ଶୀର୍ଷକ ଏକ ବୌଦ୍ଧିକ ତଥା ପ୍ରଭାବଶାଳୀ ଲେଖା, ରାଜୀବ ଲୋଚନଙ୍କର ଏକ ଧାରାବାହିକ ଉପନ୍ୟାସ 'ବିକ୍ରମାଦିତ୍ୟ'ର ପ୍ରଥମ ଅଧ୍ୟାୟ ଏବଂ ଅନ୍ୟ କେତେଜଣ ଗଣ୍ୟମାନ୍ୟ ଲେଖକଙ୍କର ଲେଖା ସହ ପଣ୍ଡିତ ଦୀନଦୟାଲଜୀଙ୍କର 'ବିନ୍ଦୁ ବିନ୍ଦୁ ବିଚାର' ଶୀର୍ଷକ ଲେଖା ସ୍ଥାନିତ ହୋଇଥିଲା। ଏସବୁ ଲେଖା ପାଠକ ମହଲରେ ଆଦୃତ ଓ ବହୁଚର୍ଚ୍ଚିତ ହେବା ଫଳରେ ପ୍ରଥମ ସଂଖ୍ୟାରୁ ହିଁ 'ରାଷ୍ଟ୍ରଧର୍ମ' ବାଜି ମାତ୍ କରି ପାରିଥିଲା।

## ।। ଅଭୂତପୂର୍ବ ସଫଳତା ।।

'ରାଷ୍ଟ୍ରଧର୍ମ' ତାର ପ୍ରଥମ ସଂଖ୍ୟାରୁ ହିଁ ଯେଉଁ ପ୍ରକାର ସଫଳତା, ସମାଦର ଓ ଲୋକପ୍ରିୟତାର ପରିଚୟ ଦେଲା, ସେଥିରେ ସମ୍ପାଦକ ଦ୍ୱୟ, ପ୍ରକାଶକ, ମୁଦ୍ରାକର, ପରିଚାଳକ ଓ ଅନ୍ୟାନ୍ୟ କର୍ମୀଗୋଷ୍ଠୀ ଏବଂ ସର୍ବୋପରି ଶ୍ରୀ ଦେଓରସ୍ ଜୀ, ପଣ୍ଡିତ ଉପାଧ୍ୟାୟଜୀ ତଥା ସମଗ୍ର ସଂଘ-ପରିବାର ଅତ୍ୟନ୍ତ ପ୍ରସନ୍ନ ହେଲେ ; ସମସ୍ତଙ୍କର

ଉତ୍ସାହ ଓ ମନୋବଳ ବହୁତ ବଢ଼ିଗଲା । ଅନ୍ୟ ପକ୍ଷରେ ସଂଘ-ପରିବାରର ଏହି ଅଭୂତପୂର୍ବ ସଫଳତା ଦେଖି କମ୍ୟୁନିଷ୍ଟମାନଙ୍କର ଗାତ୍ରଦାହ ହେଲା । ଏପର୍ଯ୍ୟନ୍ତ ସେମାନଙ୍କର ଭ୍ରମ ଧାରଣା ଥିଲା ଯେ, ସଂଘ କେବଳ ଶାଖା ଲଗାଇ ଜାଣେ, ଲାଠି ଚଳାଇ ଜାଣେ, କବାଡ଼ି ଖେଳି ଜାଣେ; କିନ୍ତୁ ପତ୍ରିକା ପ୍ରକାଶ କରି ଜାଣେ ନାହିଁ । 'ରାଷ୍ଟ୍ରଧର୍ମ' ସେମାନଙ୍କର ସେ ଭୁଲ୍ ଭାଙ୍ଗିଦେଲା, ସେମାନଙ୍କର ଅହଙ୍କାର ଉପରେ ଏକ ପ୍ରଚଣ୍ଡ ଆଘାତ ହାଣିଲା । ତେଣୁ 'ରାଷ୍ଟ୍ରଧର୍ମ'ର ପ୍ରଥମ ସଂଖ୍ୟାରୁ ପାଠକ- ଗ୍ରାହକମାନଙ୍କଠାରୁ ବହୁତ ପ୍ରଶଂସାସୂଚକ ପତ୍ର ମଧ ଆସିବାକୁ ଲାଗିଲା । ଅଟଳଜୀଙ୍କୁ ସେସବୁ ଚିଠିର ଉତ୍ତର ଦେବାପାଇଁ ରାତି ଅଧ ପର୍ଯ୍ୟନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ତା'ରି ଭିତରେ ପତ୍ରିକାର ଅନ୍ତତଃ ଛ'ହଜାର କପି ଛାପିବାପାଇଁ ସ୍ଥିର କରାଗଲା । କିନ୍ତୁ ସେଥିଲାଗି ଭାର୍ଗବଜୀଙ୍କ ପ୍ରେସ୍‌ର ଯଥେଷ୍ଟ କ୍ଷମତା ବା ସୁବିଧା ନ ଥିଲା । ତାଙ୍କର ଅସୁବିଧା ଲକ୍ଷ୍ୟ କରି ଦୀନଦୟାଲଜୀ 'ରାଷ୍ଟ୍ରଧର୍ମ'ର ଏକ ନିଜସ୍ୱ ପ୍ରେସ୍ ସ୍ଥାପନା କରିବା ଲାଗି ଚିନ୍ତା କଲେ ।

**।। ନିଜସ୍ୱ ପ୍ରେସ୍ ସ୍ଥାପନ ।।**

ଏହାପରେ କୌଣସିଠାରୁ ଏକ ପୁରୁଣା ପ୍ରେସ୍ କ୍ରୟ କରାଯିବା ଉଦ୍ଦେଶ୍ୟରେ ସନ୍ଧାନ କରାଗଲା । କାରଣ ସେତେବେଳେ ନୂତନ ପ୍ରେସ୍ ସ୍ଥାପନ କରାଯିବା କ୍ଷେତ୍ରରେ ସରକାରଙ୍କ ପକ୍ଷରୁ କେତେକ କଟକଣା ରହିଥିଲା । ଲକ୍ଷ୍ନୌର ବାବୁ ଗଞ୍ଜ ମହଲାରେ ଥିବା 'ଭାରତୀ ପ୍ରେସ୍' ବିକ୍ରୀ ହେବ ବୋଲି ଖବର ମିଳିଲା । କିନ୍ତୁ ଏହି ପ୍ରେସ୍‌ର ଟ୍ରେଡଲ୍ ମେସିନ୍ ବିଜୁଳୀ ଶକ୍ତି ସାହାଯ୍ୟରେ ଚାଲୁ ନ ଥିଲା, ତାର ଚକାକୁ ହାତରେ ଘୂରାଇବାକୁ ପଡୁଥିଲା । ତଥାପି ଠିକ୍ ସମୟରେ 'ରାଷ୍ଟ୍ରଧର୍ମ' ପ୍ରକାଶ କରିବା ଲାଗି ସତର ହଜାର ଟଙ୍କାରେ ଏହି ପ୍ରେସ୍‌ଟିକୁ କ୍ରୟ କରାଗଲା ଏବଂ ମାସିକ ଷାଠିଏ ଟଙ୍କାରେ ଏକ ଘର ଭଡ଼ା ନିଆଯାଇ ସେଠାରେ ଏହି ପ୍ରେସ୍‌ଟିକୁ ସ୍ଥାପନା କରାଗଲା । ଏହା ହେଲା 'ରାଷ୍ଟ୍ରଧର୍ମ'ର ନିଜସ୍ୱ ପ୍ରେସ୍ ।

ଅବଶ୍ୟ 'ରାଷ୍ଟ୍ରଧର୍ମ'ର ଦ୍ୱିତୀୟ ସଂଖ୍ୟାଟି ଅବଧ ପ୍ରିଣ୍ଟିଂ ୱାର୍କସ୍ ମାର୍ଫତ୍‌ରେ ହିଁ ଛପାଯାଇଥିଲା । ଏହାକୁ ଆହୁରି ଅଧିକ ସୁସମ୍ପାଦିତ ଓ ଆକର୍ଷଣୀୟ କରିବା ଲାଗି ଅଟଳଜୀ ଓ ରାଜୀବଜୀ ସବୁ ପ୍ରକାର ପ୍ରଯତ୍ନ କରିଥିଲେ । ପ୍ରଥମେ ଏହାକୁ ଛଅ ହଜାର ଛାପିବାପାଇଁ ମନସ୍ଥ କରାଯାଇଥିଲେ ମଧ ଚାହିଦା ବୃଦ୍ଧିଯୋଗୁ ଆଠ ହଜାର ଛପାଗଲା । ଏହାର କଭର୍ ଉପରେ ସିଂହଗଡ଼ର ଏକ ଚିତ୍ର ଥିଲା ଏବଂ ତା'ତଳେ ଲେଖାଯାଇଥିଲା 'ନ ଦୈନ୍ୟଂ ନ ପଲାୟନମ୍ ।' ଏଥିରେ ସ୍ଥାନିତ ଲେଖାଗୁଡ଼ିକ ସବୁରି ମନଃପୂତ ହୋଇଥିଲା । ତା'ଛଡ଼ା ଏଥିରେ ଗୋଟିଏ କାର୍ଟୁନ ଥିଲା, ଯାହାକି ବହୁ ଚର୍ଚ୍ଚିତ ହୋଇଥିଲା । ସେଥିରେ ଦର୍ଶାଯାଇଥିଲା ଯେ, ଗାନ୍ଧିଜୀ ଗଣେଶ ଠାକୁରଙ୍କର ଏକ ଚିତ୍ର

ଆଙ୍କୁଥିଲେ, କିନ୍ତୁ ଏହା ଏକ ମାଙ୍କଡ଼ର ଚିତ୍ରରେ ପରିଣତ ହୋଇଗଲା । ବ୍ୟଙ୍ଗଚିତ୍ରଟିର ବକ୍ତବ୍ୟ ଥିଲା : ଗାନ୍ଧିଜୀ ସ୍ୱରାଜ୍ୟର ଯେଉଁ ପରିକଳ୍ପନା କରିଥିଲେ, ବାସ୍ତବ କ୍ଷେତ୍ରରେ ତାହା ବିକୃତ ହୋଇଯାଉଛି । ଅର୍ଥାତ୍ ଦିଅଁ ଗଢୁ ଗଢୁ ମାଙ୍କଡ଼ ଗଢ଼ା ହୋଇଯାଉଛି । କାର୍ଟୁନ୍ ତଳେ ଲେଖାଯାଇଥିଲା : ''ବିନାୟକଂ ପ୍ରକୁର୍ବାଣୀ ରଚୟାମାସ ବାନରମ୍ ।''

ପ୍ରଥମ ସଂଖ୍ୟା ପରି ଦ୍ୱିତୀୟ ସଂଖ୍ୟା ତଥା ପରବର୍ତ୍ତୀ ସଂଖ୍ୟାଗୁଡ଼ିକ ପାଠକ ମହଲରେ ଯଥେଷ୍ଟ ସମାଦର ଲାଭ କରି ପାରିଥିଲା । ବିଜୟା ଦଶମୀ ଅବସରରେ 'ରାଷ୍ଟ୍ରଧର୍ମ'ର ଏକ ବିଶେଷାଙ୍କ ବୃହତ୍ତର କଳେବର ନେଇ ପ୍ରକାଶ ପାଇଥିଲା, ଯାହା କି ଅଧିକତର ସମାଦୃତ ଓ ପ୍ରଶଂସିତ ହୋଇଥିଲା । ପତ୍ରିକାର ପ୍ରସାର ସଂଖ୍ୟା ମଧ୍ୟ କ୍ରମଶଃ ବଢ଼ି ବଢ଼ି ଚାଲିଥିଲା । ତୃତୀୟ-ଚତୁର୍ଥ ଯୁକ୍ତ ସଂଖ୍ୟା ବେଳକୁ ଏହା ବାର ହଜାର ହୋଇଯାଇଥିଲା ।

ଏହି ପ୍ରକାର ସଫଳତା ଦେଖି ପଣ୍ଡିତ ଦୀନଦୟାଲଜୀଙ୍କର ଆନନ୍ଦର ସୀମା ନ ଥିଲା । ନିଜସ୍ୱ ପ୍ରେସ୍ ସହିତ ସେ ନିଜସ୍ୱ କମ୍ପୋଜିଂ ୟୁନିଟ୍, ବାଇଣ୍ଡିଂ ୟୁନିଟ୍ ଓ ଅନ୍ୟାନ୍ୟ ନିଜସ୍ୱ ବ୍ୟବସ୍ଥା ମଧ୍ୟ କରିଦେଲେ । ତାଙ୍କର ସ୍ୱପ୍ନ ପୂରା ସାକାର ହୋଇଗଲା । କୌଣସି ଅସୁବିଧାରୁ କେହି କମ୍ପୋଜିଟର ଆସି ନ ପାରିଲେ କାର୍ଯ୍ୟ ଯେପରି ବନ୍ଦ ନ ହୁଏ, ସେଥିପାଇଁ ସେ ନିଜର ଅବସର ସମୟରେ କମ୍ପୋଜିଂ କାମ ମଧ୍ୟ ଶିଖିନେଲେ ଏବଂ ବେଳେ ବେଳେ ନିଜେ କମ୍ପୋଜ ତଥା ପ୍ୟାକିଙ୍ଗ ଇତ୍ୟାଦି କାମ କରୁଥିଲେ । ଦୁଇ ସମ୍ପାଦକ ତଥା ଅନ୍ୟ କର୍ମଚାରୀମାନଙ୍କୁ ମଧ୍ୟ ଏହି କାମ ଶିଖାଇ ଦେଲେ । କେତେକଙ୍କୁ ମେସିନ୍ ଚଳାଇବା କାମ ମଧ୍ୟ ଶିଖାଇଲେ । ଏହି ସମୟରେ ଦୀନଦୟାଲଜୀଙ୍କୁ କିଛିଦିନ ପାଇଁ ମିରଟ ଯିବାକୁ ପଡ଼ିଥିଲା । ନାନାଜୀ ଦେଶମୁଖ ସେତେବେଳେ ପ୍ରେସ୍ କାର୍ଯ୍ୟ ବୁଝାଶୁଝା କରିଥିଲେ ।

ଉପାଧ୍ୟାୟଜୀ ପ୍ରେସ୍‌ର ଟେକ୍‌ନିକାଲ ଶବ୍ଦଗୁଡ଼ିକର ହିନ୍ଦୀକରଣ ମଧ୍ୟ କରାଇଥିଲେ । କମ୍ପୋଜିଟରକୁ ବିଯୋଜକ, ମେସିନ୍‌ମ୍ୟାନ୍‌କୁ ଯାନ୍ତ୍ରିକ ଇତ୍ୟାଦି ନାମକରଣ କରାଯାଇଥିଲା । ପ୍ରେସ୍‌ର ସବୁ ଲୋକ ଏହିସବୁ ଶବ୍ଦ ବ୍ୟବହାର କରୁଥିଲେ ।

**॥ 'ରାଷ୍ଟ୍ରଧର୍ମ' ପରେ 'ପାଞ୍ଚଜନ୍ୟ' ॥**

'ରାଷ୍ଟ୍ରଧର୍ମ'ର ଅପ୍ରତ୍ୟାଶିତ ସଫଳତାରେ ବିଶେଷ ଉତ୍ସାହିତ ହୋଇ ପଣ୍ଡିତ ଦୀନଦୟାଲଜୀ 'ପାଞ୍ଚଜନ୍ୟ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିବାପାଇଁ ନିଷ୍ପତ୍ତି କଲେ । 'ରାଷ୍ଟ୍ରଧର୍ମ' ସମ୍ପାଦନା କାର୍ଯ୍ୟ ସେ ରାଜୀବଲୋଚନଙ୍କ ଉପରେ ନ୍ୟସ୍ତ କରି 'ପାଞ୍ଚଜନ୍ୟ'ର ସମ୍ପାଦକ ରୂପେ ଅଟଳଜୀଙ୍କୁ ନିଯୁକ୍ତ କଲେ । ପ୍ରଥମ ସଂଖ୍ୟା ୨୦୦୪ ବିକ୍ରମ ସଂବତ୍ ପୌଷ ଶୁକ୍ଳ ତୃତୀୟାରେ ପ୍ରକାଶ ପାଇଲା । ନିଜସ୍ୱ 'ଭାରତ ପ୍ରେସ୍'ରୁ ହିଁ ଏହା ମୁଦ୍ରିତ ହେଉଥିଲା ।

॥ ପ୍ରେସ୍‌ରେ ତାଲା : ଅଟଳଜୀଙ୍କ ଆତ୍ମଗୋପନ ॥

ଇତିମଧ୍ୟରେ ମହାତ୍ମା ଗାନ୍ଧିଙ୍କର ହତ୍ୟାକାଣ୍ଡ ସଂଘଟିତ ହୋଇଗଲା । ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର କ୍ରମବର୍ଦ୍ଧିଷ୍ଣୁ ଲୋକପ୍ରିୟତା କଂଗ୍ରେସ ଦଳର ଦେହସୁହା ହେଉ ନ ଥିଲା । ତେଣୁ ଏହାକୁ ଦମନ କରିବାପାଇଁ କଂଗ୍ରେସ ସରକାର ସୁଯୋଗ ଉଣ୍ଢୁଥିଲା ଏବଂ ଗାନ୍ଧିଜୀଙ୍କ ହତ୍ୟାକାଣ୍ଡର ଦୁର୍ଯୋଗକୁ ଏକ ସୁଯୋଗ ମନେ କରି ସଂଘ ଉପରେ ପ୍ରତିବନ୍ଧ ଲଗାଇଦେଲେ ଏବଂ ସମଗ୍ର ଦେଶର ଆର୍.ଏସ୍.ଏସ୍. କର୍ମକର୍ତ୍ତା ତଥା ସକ୍ରିୟ ସ୍ୱୟଂସେବକମାନଙ୍କୁ ଗିରଫ କରି ଜେଲ୍‌ରେ ଭର୍ତ୍ତି କରିଦେଲେ । 'ଭାରତ ପ୍ରେସ୍'ରେ ତାଲା ପକାଇ ଦିଆଗଲା । ପଣ୍ଡିତ ଦୀନଦୟାଲ, ନାନାଜୀ ଦେଶମୁଖ ପ୍ରମୁଖ ବନ୍ଦୀ ହେବା ଦେଖି ଅଟଳଜୀ ଆତ୍ମଗୋପନ କରି ଲକ୍ଷ୍ନୌରୁ ଆଲାହାବାଦ ଚାଲିଗଲେ ।

॥ ଆଲାହାବାଦରେ ଅଟଳଜୀ ॥

ଅଟଳଜୀ ଆଲାହାବାଦରେ ପହଞ୍ଚିବା ପରେ ସେଠାରେ ଶ୍ରୀ ରାମରଖ ସିଂହ ସହଗଲଙ୍କ ସହିତ ଇଂରାଜୀ ସାପ୍ତାହିକ 'କ୍ରାଇସିସ୍'ରେ କାର୍ଯ୍ୟ କରିବାକୁ ଆରମ୍ଭ କଲେ । ଏହା ବ୍ୟତୀତ ସେ ତାଙ୍କର 'ଚାନ୍ଦ୍' ପତ୍ରିକାର ଏକ ବିଶେଷାଙ୍କ ପ୍ରସ୍ତୁତିରେ ମଧ୍ୟ ସହାୟତା କରିଥିଲେ । ସହଗଲଜୀ ସେଠାରୁ 'କର୍ମଯୋଗୀ' ନାମରେ ଏକ ମାସିକ ପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ । ଅଟଳଜୀ କିଛି ମାସ ଲାଗି ଏହାର ସମ୍ପାଦକ ରୂପେ କାର୍ଯ୍ୟ କରିଥିଲେ ।

॥ ଲକ୍ଷ୍ନୌ ପ୍ରତ୍ୟାବର୍ତ୍ତନ ॥

ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଉପରୁ ନିଷେଧାଦେଶ ପ୍ରତ୍ୟାହୃତ ହେବା ପରେ ପରେ ଅନ୍ୟମାନଙ୍କ ସହିତ ଦୀନଦୟାଲଜୀ ଜେଲ୍‌ରୁ ଛାଡ଼ ପାଇଲେ ଏବଂ ସିଧା ଲକ୍ଷ୍ନୌର ଭାରତ ପ୍ରେସ୍‌ରେ ଯାଇ ପହଞ୍ଚିଲେ । 'ରାଷ୍ଟ୍ରଧର୍ମ' ଓ 'ପାଞ୍ଚଜନ୍ୟ'ର ପୁନଃପ୍ରକାଶନ ପାଇଁ ପସ୍ତୁତି କାର୍ଯ୍ୟ ପୁଣି ଆରମ୍ଭ ହୋଇଗଲା । ଦୀନଦୟାଲ୍‌ଜୀଙ୍କଠାରୁ ଖବର ପାଇବା ପରେ ଅଟଳଜୀ ଲକ୍ଷ୍ନୌ ଫେରିଯାଇ ପୁଣି 'ପାଞ୍ଚଜନ୍ୟ'ର ସମ୍ପାଦନା କାର୍ଯ୍ୟ ଆରମ୍ଭ କଲେ । ଇତି ମଧ୍ୟରେ ଜନସାଧାରଣଙ୍କ ମଧ୍ୟରେ ସୃଷ୍ଟି କରାଯାଇଥିବା ବିଭିନ୍ନ ଭୁଲ୍ ଧାରଣା ଓ ବିଭ୍ରାନ୍ତିକୁ ଦୂର କରିବାପାଇଁ ସେ ଏହି ପତ୍ରିକା ମାଧ୍ୟମରେ ବିଶେଷ ଉଦ୍ୟମ ଚଳାଇଲେ । ଜନମାନସକୁ ସଠିକ୍ ଦିଗ୍‌ଦର୍ଶନ ଦେବା ହିଁ ତାଙ୍କର ପ୍ରଧାନ କାର୍ଯ୍ୟ ହେଲା । ଏହା ଫଳରେ, କଂଗ୍ରେସ ସରକାର ଯେ କେବଳ ନିଜ ଦଳର ସ୍ୱାର୍ଥପାଇଁ ଆର୍.ଏସ୍.ଏସ୍. ବିରୁଦ୍ଧରେ ଅଯଥା ଅଭିଯୋଗମାନ ପ୍ରଚାର କରିଥିଲା, ତାହା ଲୋକେ କ୍ରମଶଃ ହୃଦୟଙ୍ଗମ କଲେ । ଅଟଳଜୀ ସଂଘ ସମ୍ପର୍କରେ 'ପାଞ୍ଚଜନ୍ୟ'ର ଏକ ବିଶେଷାଙ୍କ ମଧ୍ୟ ପ୍ରକାଶ କଲେ । ଏଥିପାଇଁ ତାଙ୍କୁ ରାତିଦିନ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା । 'ରାଷ୍ଟ୍ରଧର୍ମ' ଓ 'ପାଞ୍ଚଜନ୍ୟ'ର କଣ୍ଠରୋଧପାଇଁ ବିରୋଧୀ ଶିବିରରୁ କରାଯାଉଥିବା

ଷଡ଼ଯନ୍ତ୍ର ଓ ମକଦ୍ଦମା ଇତ୍ୟାଦି ସମସ୍ତ ଅପଚେଷ୍ଟାକୁ ମଧ୍ୟ ଭଣ୍ଡୁର କରିବାପାଇଁ ତାଙ୍କୁ ସଜାଗ ପ୍ରୟାସ କରିବାକୁ ପଡୁଥିଲା ।

॥ 'ପାଞ୍ଚଜନ୍ୟ'ର ଅର୍ଦ୍ଧଶତବର୍ଷ ପୂର୍ତ୍ତି ॥

'ପାଞ୍ଚଜନ୍ୟ' ପ୍ରକାଶନର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଏହାର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଗତବର୍ଷ ଅନୁଷ୍ଠିତ ହୋଇଥିଲା । ଏହାର ପ୍ରଥମ ସମ୍ପାଦକ ରୂପେ ଅଟଳଜୀ ୫୦ତମ ବର୍ଷ ପ୍ରାରମ୍ଭରେ ନିମ୍ନୋକ୍ତ ମର୍ମରେ ଏକ ଶୁଭେଚ୍ଛା ବାର୍ତ୍ତା ପ୍ରେରଣ କରିଥିଲେ:

'ପାଞ୍ଚଜନ୍ୟ' ପ୍ରକାଶନର ୫୦ ବର୍ଷ ପୂର୍ଣ୍ଣ ହେବାକୁ ଯାଉଛି ଏବଂ ଏହା ନିଜର ସୁବର୍ଣ୍ଣ ଜୟନ୍ତୀ ମହୋତ୍ସବ ପାଳନ କରିବାକୁ ଏବେ ପ୍ରସ୍ତୁତ ହେଉଛି । ଏହା ବାସ୍ତବିକ୍ ଆମ ସମସ୍ତଙ୍କ ପକ୍ଷରେ ଅତ୍ୟନ୍ତ ଆନନ୍ଦର ବିଷୟ । ଯେଉଁମାନେ ଏହି ପତ୍ରିକାଟିର ପ୍ରସବ-ବେଦନାଠାରୁ ଆରମ୍ଭ କରି ଏହାର ପ୍ରକାଶନ ତଥା ଉତ୍ତରୋତ୍ତର ଉନ୍ନତିର ସାକ୍ଷୀ ତଥା ଅଂଶୀଦାର ରହି ଆସିଥିଲେ, ସେମାନଙ୍କ ମଧ୍ୟରେ ଜଣେ ହୋଇ ରହିବାର ସୌଭାଗ୍ୟ ମୋତେ ମିଳି ପାରିଥିଲା । ତେଣୁ ବ୍ୟକ୍ତିଗତ ଭାବରେ ମୁଁ ଆଜି ବହୁତ ଖୁସି ।

ବିଚାର ଏବଂ ପ୍ରଚାର ଉଭୟ କଷଟୀରେ 'ପାଞ୍ଚଜନ୍ୟ' ଶୁଦ୍ଧ ସୁବର୍ଣ୍ଣ ପରି ଉତ୍ତୀର୍ଣ୍ଣ ହୋଇ ପାରିଛି । ଏକ ଦିଗରେ ଏହା ଯେପରି ନିଜର କ୍ରମବର୍ଦ୍ଧିଷ୍ଣୁ ପାଠକମାନଙ୍କ ନିକଟରେ ଅଧିକରୁ ଅଧିକ ବିଶ୍ୱାସଭାଜନ ଓ ସମାଦୃତ ହେବାର ସଫଳତା ଅର୍ଜନ କରିଛି, ସେହିପରି ଅନ୍ୟ ଦିଗରେ ସମାଜର ପ୍ରବୁଦ୍ଧ ଓ ପ୍ରାଜ୍ଞ ମହଲରେ ମଧ୍ୟ ବୈଚାରିକ ମନ୍ଥନର ପ୍ରକ୍ରିୟାକୁ ପ୍ରୋତ୍ସାହିତ କରିଛି । ରାଷ୍ଟ୍ରବାଦର ମଶାଲକୁ ନିରନ୍ତର ପ୍ରଜ୍ୱଳିତ ରଖି 'ପାଞ୍ଚଜନ୍ୟ', ବହୁ ବର୍ଷ ଧରି ପ୍ରଚାରିତ ହୋଇ ଆସିଥିବା ଅନେକ ଭ୍ରମ ଓ ବିଭ୍ରାନ୍ତିକୁ ନଷ୍ଟ କରିବା ସହିତ ବିଚାର ସମୂହର କୁରୁକ୍ଷେତ୍ରରେ 'ରାଷ୍ଟ୍ର ଜାଗୃୟାମ୍ ବୟମ୍'ର ଶଂଖନାଦ କରି ଆମର ରାଷ୍ଟ୍ରକୁ ଅଖଣ୍ଡ ଓ ଅଜେୟ କରିବା ଉଦ୍ଦେଶ୍ୟରେ ମହତ୍ତ୍ୱପୂର୍ଣ୍ଣ ଭୂମିକା ତୁଲାଇ ଆସିଛି ।

କେବଳ ସେତିକି ନୁହେଁ, ଭାରତୀୟ ପତ୍ରକାରିତା କ୍ଷେତ୍ରରେ ମଧ୍ୟ 'ପାଞ୍ଚଜନ୍ୟ'ର ଉଲ୍ଲେଖଯୋଗ୍ୟ ଅବଦାନ ରହିଛି । ଏହାର ବିଶେଷାଙ୍କଗୁଡ଼ିକ ଏ କ୍ଷେତ୍ରରେ ଗୋଟିଏ ଗୋଟିଏ ମାଇଲ୍ ଖୁଣ୍ଟି ସଦୃଶ । ଭବିଷ୍ୟତ୍ ପାଇଁ ନାନା ସଂଗ୍ରହଣୀୟ ସାମଗ୍ରୀ ପ୍ରସ୍ତୁତ କରି ଏହା ଭାରତୀୟ ପତ୍ରକାରିତାକୁ ସମୃଦ୍ଧ କରିବାରେ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଦେଇ ଚାଲିଛି ।

ଏହି ଅବସରରେ 'ପାଞ୍ଚଜନ୍ୟ' ପ୍ରକାଶନର ପ୍ରେରଣାଦାତା ପୂଜନୀୟ ଗୁରୁଜୀ, ପରାମର୍ଶଦାତା ଭାଉରାଓ ଦେଓରସ୍ଜୀ ଓ ଦିଗ୍‌ଦର୍ଶକ ପଣ୍ଡିତ ଦୀନଦୟାଲଜୀଙ୍କୁ ମୁଁ ବିଶେଷ ଭାବେ ସ୍ମରଣ କରୁଛି । ସେମାନଙ୍କ ଦ୍ୱାରା ବପନ କରାଯାଇଥିବା ଏହି ବୀଜ,

ଅନ୍ୟ ବଂଧୁମାନଙ୍କର ଉଦ୍ୟମ ଓ ସହାୟତାରେ ଆଜି ଏକ ବିଶାଳ ବୃକ୍ଷରେ ପରିଣତ ହୋଇଛି, ଯାହାର ଛାୟା ସମଗ୍ର ଭାରତୀୟ ପତ୍ରକାରିତାକୁ ପ୍ରଭାବିତ କରୁଛି । ମୁଁ 'ପାଞ୍ଚଜନ୍ୟ'ର ସବୁ ସମ୍ପାଦକ, ଲେଖକ, କର୍ମଚାରୀ, ଏହାର ପ୍ରକାଶନ ଓ ପ୍ରସାର ସହ ସଂପୃକ୍ତ ସବୁ ବଂଧୁ ତଥା ଏହାର ବିଦଗ୍ଧ ପାଠକମାନଙ୍କୁ ଗଭୀର ସାଧୁବାଦ ତଥା ଅଭିନନ୍ଦନ ଜଣାଉଛି ।''

**॥ ଦୈନିକ 'ସ୍ୱଦେଶ'ର ସମ୍ପାଦନା ॥**

'ରାଷ୍ଟ୍ରଧର୍ମ' ଓ 'ପାଞ୍ଚଜନ୍ୟ' ପ୍ରକାଶନର ଆଶାତୀତ ସଫଳତାରେ ଦୀନଦୟାଲଜୀଙ୍କ ଉତ୍ସାହ ଆହୁରି ବୃଦ୍ଧି ପାଇଲା ଏବଂ ସେ ଏକ ଦୈନିକ ସମ୍ବାଦପତ୍ର ପ୍ରକାଶ କରିବା ଲାଗି ସ୍ଥିର କଲେ । ଏହାର ନାମ ରଖାଗଲା ଦୈନିକ 'ସ୍ୱଦେଶ' । ଅଟଳଜୀଙ୍କୁ ଏହାର ସମ୍ପାଦକ କରାଗଲା । ପ୍ରଥମେ ଏକ ମାସିକ, ଦ୍ୱିତୀୟରେ ଏକ ସାପ୍ତାହିକ ଏବଂ ଏବେ ଏକ ଦୈନିକ ପତ୍ରର ସଂପାଦନା କରିବାର ଦାୟିତ୍ୱ ତାଙ୍କୁ ବହନ କରିବାକୁ ପଡ଼ିଲା ।

**॥ ଭିନ୍ନ ଧାତୁର ମଣିଷ ॥**

ଜଣେ ପ୍ରଖର ରାଷ୍ଟ୍ରବାଦୀ ପ୍ରବକ୍ତା, ପ୍ରତିଭାସମ୍ପନ୍ନ ପ୍ରାଜ୍ଞ ଚିନ୍ତକ, ପ୍ରତିଷ୍ଠିତ କବି, ସୁଦକ୍ଷ ସମ୍ପାଦକ ଏବଂ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରି ପାରିବା ଭଳି ଜଣେ ବାଗ୍ମୀ ରୂପେ ଅଟଳଜୀ ସେତେବେଳକୁ ସାଧାରଣରେ ସୁପରିଚିତ ହୋଇ ଯାଇଥିଲେ । ତେଣୁ କେତେକ କୋଟିପତି ଶେଠ ତାଙ୍କୁ ନିଜ ସମ୍ବାଦପତ୍ରର ସଂପାଦକ କରିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ । କିନ୍ତୁ ଅଟଳଜୀ ଥିଲେ ଭିନ୍ନ ଧାତୁର ମଣିଷ । ଚାକିରୀ କରିବାର ଅଭିଳାଷ ତ ମୂଳରୁ ତାଙ୍କର ନଥିଲା; ତା'ଛଡ଼ା ସେ ନିଜକୁ ଦେଶ-ମାତୃକାର କାର୍ଯ୍ୟ ପାଇଁ ଉତ୍ସର୍ଗ କରି ଦେଇଥିଲେ । ସେ କହୁଥିଲେ: ''ମୁଁ ବଞ୍ଚିବି ତ ଦେଶ ଲାଗି, ମରିବି ତ ସେହି ଦେଶ ପାଇଁ ।'' ତେଣୁ ସେ କୌଣସି ଚାକିରୀ ଫାନ୍ଦରେ ପଡ଼ିଥାନ୍ତେ ବା କିପରି ? ପୁଞ୍ଜିପତିମାନଙ୍କ ଟ୍ରେଜେରୀର ସୁନା-ଚାନ୍ଦିଠାରୁ ଭାରତ ଭୂମିର ମୁଠାଏ ଧୂଳି-ମାଟି ତାଙ୍କ ପାଇଁ ଅଧିକ ମୂଲ୍ୟବାନ୍ ଥିଲା । ତାଙ୍କ ଜୀବନର ବ୍ରତ ଥିଲା ପୂଜ୍ୟ ଗୁରୁଜୀଙ୍କ ବାର୍ତ୍ତାକୁ ଘରେ ଘରେ ନେଇ ପହଞ୍ଚାଇବା, ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ବିଚାରଧାରାକୁ ଦେଶବାସୀଙ୍କ ନିକଟରେ ପରିଚିତ କରାଇବା ଏବଂ ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କ ଏକାତ୍ମ ମାନବବାଦର ବିଜୟ ବୈଜୟନ୍ତୀ ଉଡ଼ାଇବା । ତେଣୁ ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ସେ ସେହି କାର୍ଯ୍ୟହିଁ କରି ଚାଲିଛନ୍ତି ।

**॥ 'ଚେତନା'ର ସମ୍ପାଦନା ॥**

ଅଟଳଜୀ କିଛି ଦିନ ପାଇଁ କାଶୀରୁ ପ୍ରକାଶିତ 'ଚେତନା' ପତ୍ରିକାର ସମ୍ପାଦକ ମଧ୍ୟ ଥିଲେ । ସେତେବେଳେ ପଣ୍ଡିତ କମଳାପତି ତ୍ରିପାଠୀ ସେଠାରୁ ପ୍ରକାଶ ପାଉଥିବା

'ସଂସାର' ପତ୍ରିକାର ସମ୍ପାଦକ ଥିଲେ। 'ଚେତନା'ର ଆବିର୍ଭାବକୁ ସେ ସୁନଜରରେ ଦେଖି ପାରି ନଥିଲେ। ନିଜ ପତ୍ରିକାରେ ତା' ବିରୁଦ୍ଧରେ କଡ଼ା ଟିପ୍ପଣୀ ମଧ୍ୟ ଦେଉଥିଲେ। ଅଟଳଜୀ ତାର ଜବାବ ଆହୁରି କଡ଼ା ଭାଷାରେ ଦେଉଥିଲେ। ସେ ସଂପର୍କରେ ତାଙ୍କର କିଛି ବକ୍ତବ୍ୟ ଏଠାରେ ଉଦ୍ଧାର କରାଯାଇପାରେ:

''ପଣ୍ଡିତ କମଳାପତି ତ୍ରିପାଠୀଙ୍କ 'ସଂସାର' ପତ୍ରିକା 'ଚେତନା'କୁ ସ୍ୱାଗତ କରି ନଥିଲା, ବରଂ 'ଚେତନା' ବିରୁଦ୍ଧରେ ତୀକ୍ଷ୍ଣ କଟାକ୍ଷ କରିଥିଲା। ମୁଁ ତାର ଜବାବ ଆହୁରି ତୀକ୍ଷ୍ଣ ଭାବରେ ଦେଉଥିଲି। ମୁଁ କହିଥିଲି - 'ସଂସାର' ଭଲ ଭାବରେ ଜାଣି ରଖୁ, ଯେତେ ସମାଲୋଚନା କଲେ ମଧ୍ୟ 'ଚେତନା' ତାର ନିର୍ଦ୍ଧାରିତ ପଥ ଓ ଆଦର୍ଶରୁ କଦାପି ହଟିବ ନାହିଁ। ପାଠକମାନେ, ବିଶେଷ କରି ବୁଦ୍ଧିଜୀବୀମାନେ 'ଚେତନା'ର ଏହି ଦୃଢ଼ତା ତଥା ତାର ବକ୍ତବ୍ୟଗୁଡ଼ିକୁ ଯଥେଷ୍ଟ ଆଦର କରିଥିଲେ। ଏହା ଲୋକଙ୍କ ମଧ୍ୟରେ ରାଷ୍ଟ୍ରପ୍ରେମର ଏକ ଲହର ଖେଳାଇ ଦେଉଥିଲା।''

(ଦ୍ରଷ୍ଟବ୍ୟ : 'କୁଛ ଲେଖ୍, କୁଛ ଭାଷଣ' ପୃଷ୍ଠା ୨୭୩)

**॥ ଅପୂର୍ଣ୍ଣ ସ୍ୱାଧୀନତା ॥**

୧୯୪୭ ଅଗଷ୍ଟ ୧୫ରେ ଦେଶକୁ ସ୍ୱାଧୀନତା ମିଳିଲା ସିନା, କିନ୍ତୁ ଦେଶ ଖଣ୍ଡିତ ବା ବିଭାଜିତ ହୋଇଗଲା। ଅଟଳଜୀ ଏଥିରେ ବହୁତ ମର୍ମାହତ ହୋଇଥିଲେ। କାରଣ ଦେଶର ବିଭାଜନକୁ ସେ ବରାବର ବିରୋଧ କରି ଆସୁଥିଲେ ଏବଂ ଏହାଦ୍ୱାରା ଦେଶର ବହୁତ କ୍ଷତି ହେବ ବୋଲି ଅନୁଭବ କରୁଥିଲେ। କିନ୍ତୁ ସେଥିରେ ତାଙ୍କର କିଛି କରି ପାରିବାର ନଥିଲା। ସେ ଜଣେ କବି ଥିଲେ। ତେଣୁ ସେଦିନ ସେ ନିଜର ମନୋଭାବ ବ୍ୟକ୍ତ କରି ଏକ କବିତା ଲେଖିଥିଲେ। ସେଥିରୁ ଦୁଇଟି ଧାଡ଼ି ଏଠାରେ ଉଦ୍ଧାର କରାଯାଇପାରେ।

''ପନ୍ଦ୍ରହ୍ ଅଗସ୍ତ କା ଦିନ୍ କହତା
ଆଜାଦୀ ଅଭି ଅଧୁରୀ ହୈ
ସପ୍‌ନେ ସଚ୍ ହୋନେ ବାକୀ ହୈ
ରାବୀ କୀ ଶପଥ୍ ନ ପୁରୀ ହୈ''।

**॥ 'ବୀର ଅର୍ଜୁନ'ର ସମ୍ପାଦନା ॥**

ଦିଲ୍ଲୀରୁ ପ୍ରକାଶିତ ଦୈନିକ ତଥା ସାପ୍ତାହିକ ସମ୍ବାଦପତ୍ର ''ବୀର ଅର୍ଜୁନ''ର ସମ୍ପାଦକ ଦାୟିତ୍ୱ ମଧ୍ୟ ଅଟଳଜୀ କିଛି କାଳ ପାଇଁ ଗ୍ରହଣ କରିଥିଲେ। ସମ୍ପାଦନା କ୍ଷେତ୍ରରେ ତାଙ୍କର ପରିପକ୍ୱ ଅଭିଜ୍ଞତା ରାଷ୍ଟ୍ରବାଦୀ ଚିନ୍ତାଧାରାର ସ୍ପଷ୍ଟତା, ଭାଷଣ–ଶୈଳୀର ବଳିଷ୍ଠତା ଓ ସ୍ୱଚ୍ଛତା, ମତବାଦ ପ୍ରକାଶନର ନିର୍ଭୀକତା ଯୋଗୁଁ ଏହି ସଂବାଦପତ୍ର

ଯଥେଷ୍ଟ ପ୍ରଭାବ ବିସ୍ତାର କରି ପାରିଥିଲା । ବିଶେଷ କରି ଏହାର ସମ୍ପାଦକୀୟ ବୁଦ୍ଧିଜୀବୀ ପାଠକମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରୁଥିଲା ।

**॥ ହିନ୍ଦୀ ସାହିତ୍ୟ ସମ୍ମେଳନ ସହ ସଂପୃକ୍ତି ॥**

ସେ ସମୟରେ ହିନ୍ଦୀ ସାହିତ୍ୟ ସମ୍ମେଳନ ଏକ ଜାତୀୟ ସ୍ତରର ମହତ୍ତ୍ୱପୂର୍ଣ୍ଣ ସଂସ୍ଥା ଥିଲା । ଜଣେ କବି, ପତ୍ରକାର ଓ ଭାଷାବିଦ୍ ରୂପେ ଅଟଳଜୀ ମଧ୍ୟ ଏଥି ସହିତ ସଂପୃକ୍ତ ଥିଲେ । ହିନ୍ଦୀ ସାହିତ୍ୟର ପରମ ଭକ୍ତ ତଥା ହିନ୍ଦୀକୁ ରାଷ୍ଟ୍ରଭାଷାର ଗୌରବ ଦିଆଯିବା କ୍ଷେତ୍ରରେ ବିଶେଷ ଉଦ୍ୟମ କରିଥିବା ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ୍ ୧୯୫୦ରେ ଲକ୍ଷ୍ନୌଠାରେ ଏହି ସଂସ୍ଥାର ଜାତୀୟ ଅଧିବେଶନ କରାଇବାକୁ ସ୍ଥିର କଲେ । ପଣ୍ଡିତ କମଳାପତି ତ୍ରିପାଠୀଙ୍କୁ ଏହାର ସଭାପତି ପଦ ପାଇଁ ବଛାଗଲା । ସ୍ୱାଗତ ସମିତିର ଅଧ୍ୟକ୍ଷ ହେଲେ ଚନ୍ଦ୍ରଭାନୁ ଗୁପ୍ତା । ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ ଏହାର ଉପାଧ୍ୟକ୍ଷ ରହିଲେ । ଜାତୀୟତାବାଦର ପ୍ରତିଷ୍ଠା ପାଇଁ ହିନ୍ଦୀ ଭାଷାର ମର୍ଯ୍ୟାଦା ବୃଦ୍ଧି ଏକାନ୍ତ ଆବଶ୍ୟକ ବୋଲି ସେ ମନେ କରୁଥିବାରୁ ଏଥି ସହିତ ସଂଶ୍ଳିଷ୍ଟ ହେବାକୁ ସମ୍ମତି ଦେଇଥିଲେ । କେବଳ ସେତିକି ନୁହେଁ, ଲକ୍ଷ୍ନୌ-ଅଧିବେଶନର ଆୟୋଜନ ଓ ପ୍ରଚାର କାର୍ଯ୍ୟର ଦାୟିତ୍ୱ ନେଇ ସେ ଅନ୍ୟ ଯୁବକମାନଙ୍କ ସହିତ ପ୍ରତି ମହଲାରେ ବୁଲି ସଂଗଠନ ଓ ପ୍ରଚାର କାର୍ଯ୍ୟ ଚଳାଇଥିଲେ । ତାଙ୍କର ବିଶେଷ ଉଦ୍ୟମକ୍ରମେ ଏହି ଜାତୀୟ ସମ୍ମିଳନୀ ସବୁ ଦିଗରୁ ବିଶେଷ ସାଫଲ୍ୟମଣ୍ଡିତ ହୋଇଥିଲା । ଅଧିବେଶନର ମୁଖ୍ୟ କାର୍ଯ୍ୟକ୍ରମରେ ଅଟଳଜୀହିଁ ସ୍ୱାଗତ-ଭାଷଣ ଦେଇଥିଲେ, ଯାହାକି ଶ୍ରୋତା ମହଲରେ ବିଶେଷ ପ୍ରଶଂସିତ ହୋଇଥିଲା ।

**॥ ଭାରତୀୟ ଜନସଂଘର ପ୍ରତିଷ୍ଠା ॥**

ଦେଶରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ବିସ୍ତାର ଓ ସଂଗଠନ କ୍ରମଶଃ ବଢ଼ିବାରେ ଲାଗିଥିଲା । ଏହାର ରାଷ୍ଟ୍ରପ୍ରେମମୂଳକ ବିଚାରଧାରା ଲୋକଙ୍କୁ ଅଧିକରୁ ଅଧିକ ଆକୃଷ୍ଟ କରୁଥିଲା । ତେଣୁ ଏହା କଂଗ୍ରେସ ଦଳ ତଥା ସରକାରର ଦେହସୁହା ହେଉ ନଥିଲା । ସଂଘକୁ କୌଣସି ମତେ ଦମନ କରିବା ଲାଗି ସେମାନେ ବରାବର ସୁଯୋଗ ଉଣ୍ଡୁଥିଲେ । ମହାତ୍ମା ଗାନ୍ଧିଙ୍କର ଆକସ୍ମିକ ହତ୍ୟା ଘଟଣାକୁ ଆଳ କରି ବିନା ଦୋଷରେ ସେମାନେ ସଂଘ ଉପରେ ନିଷେଧାଦେଶ ଜାରୀ କରିଦେଲେ । ଏହା ସଂପୂର୍ଣ୍ଣ ଅନ୍ୟାୟୋଚିତ ହୋଇଥିଲେ ମଧ୍ୟ ପାର୍ଲିଆମେଣ୍ଟରେ କେହି ଜଣେ ହେଲେ ଏ ନେଇ ପାଟି ଫିଟାଇ ନଥିଲେ । ତାର କାରଣ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ଏକ ରାଜନୈତିକ ସଂଗଠନ ହୋଇ ନଥିବାରୁ ଏବଂ ଏହା କେବଳ ସାଂସ୍କୃତିକ ଓ ସାମାଜିକ କ୍ଷେତ୍ରରେ ନିଜର କାର୍ଯ୍ୟକୁ ସୀମାବଦ୍ଧ କରିଥିବାରୁ ପାର୍ଲାମେଣ୍ଟ ବା ବିଭିନ୍ନ ରାଜ୍ୟ ବିଧାନସଭାରେ ଏହାର କୌଣସି ସଦସ୍ୟ ନଥିଲେ । ତେଣୁ ଏହି ସବୁ ସଦନରେ ସଂଘର ଦେଶପ୍ରେମମୂଳକ

ବିଚାରଧାରାକୁ ଉପସ୍ଥାପନ କରାଯିବାର ଜରୁରୀ ଆବଶ୍ୟକତା ସଂପର୍କରେ କାର୍ଯ୍ୟକର୍ତ୍ତାମାନଙ୍କ ମଧ୍ୟରେ ବ୍ୟାପକ ବିଚାର-ବିମର୍ଶ କରାଗଲା । ସ୍ଥିର କରାଗଲା ଯେ, ଆର୍.ଏସ୍.ଏସ୍. ସମର୍ଥକମାନଙ୍କ ଦ୍ୱାରା ଏକ ରାଜନୈତିକ ସଂଗଠନ ବା ଦଳ ଗଢ଼ାଯିବା ଆବଶ୍ୟକ ଏବଂ ଏହି ଦଳ ନିର୍ବାଚନରେ ମଧ୍ୟ ଭାଗ ନେବା ଉଚିତ । ତଦନୁଯାୟୀ ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ନେତୃତ୍ୱରେ ଭାରତୀୟ ଜନସଂଘ ନାମରେ ଏକ ନୂଆ ଦଳ ଗଠନ କରାଗଲା । ଡଃ ମୁଖାର୍ଜୀଙ୍କ ବିଦ୍‌ବତ୍ତା ଓ ବୈଧାନିକ ସ୍ଥାନ ତଥା ଅଭିଜ୍ଞତା ସହିତ ସମଗ୍ର ଦେଶ ସେତେବେଳେ ପରିଚିତ ଥିଲା । ଅଟଳଜୀ ସେତେବେଳେ ତାଙ୍କର ବ୍ୟକ୍ତିଗତ ସଚିବ ଥିଲେ ।

୧୯୫୧ ମସିହା ଅକ୍ଟୋବର ୨୧ ତାରିଖରେ ଭାରତୀୟ ଜନସଂଘର ପ୍ରଥମ ଅଧିବେଶନ ଦିଲ୍ଲୀରେ ଅନୁଷ୍ଠିତ ହେଲା । ୧୯୫୨ରେ ଲୋକସଭା ନିମନ୍ତେ ଯେଉଁ ପ୍ରଥମ ସାଧାରଣ ନିର୍ବାଚନ ହେଲା, ସେଥିରେ କେତେକ ସ୍ଥାନରୁ ଜନସଂଘର ପ୍ରାର୍ଥୀମାନେ ପ୍ରତିଦ୍ୱନ୍ଦିତା କଲେ । ନିର୍ବାଚନ ପରେ ପରେ ଜନସଂଘକୁ ଦେଶର ଏକ ଅଧିକୃତ ରାଜନୈତିକ ଦଳର ମାନ୍ୟତା ମିଳିଗଲା । ଏ ଦଳର ନିର୍ବାଚନ ଚିହ୍ନ ଥିଲା 'ଦୀପ' । ରାଷ୍ଟ୍ରବାଦ, ସକାରାତ୍ମକ ସଂପ୍ରଦାୟ-ନିରପେକ୍ଷତାବାଦ ଏବଂ ହିନ୍ଦୁତ୍ୱକୁହିଁ ଜନସଂଘ ପ୍ରାଧାନ୍ୟ ଦେଲା । ଏ ଦଳ ପକ୍ଷରୁ ଦେଶ ସମକ୍ଷରେ ସ୍ପଷ୍ଟ ଭାବେ ନିଜର ଆଭିମୁଖ୍ୟ ପ୍ରକାଶ କରାଯାଇ କୁହାଗଲା ଯେ: ହିନ୍ଦୁ ଏକ ପନ୍ଥବିଶେଷ ବା ନିଛକ ଏକ ରିଲିଜିୟନ୍ ନୁହେଁ, ଏହା କୌଣସି ନିର୍ଦ୍ଦିଷ୍ଟ ଉପାସନା-ପଦ୍ଧତିର ଦ୍ୟୋତକ ବି ନୁହେଁ । ଏହା ବାସ୍ତବରେ ଏକ ଜୀବନ-ଚର୍ଯ୍ୟାର ପରିଚାୟକ, ଯାହା ମଧ୍ୟରେ ଅନେକ ସଂପ୍ରଦାୟ, ମତ-ମତାନ୍ତର ତଥା ଉପାସନା - ପଦ୍ଧତିର ସମାବେଶ ହୋଇଛି । ତେଣୁ କେବଳ ହିନ୍ଦୁମାନଙ୍କ ପାଇଁ ନୁହେଁ, ସବୁ ଭାରତୀୟ ନାଗରିକଙ୍କ ଲାଗି ଭାରତୀୟ ଜନସଂଘର ଦ୍ୱାର ଖୋଲା ରହିଛି ।

ଡଃ ମୁଖାର୍ଜୀ ତଥା ଅଟଳଜୀ ଏହି କଥାକୁ ସୁସ୍ପଷ୍ଟ କରିବାକୁ ଯାଇ କହିଥିଲେ ଯେ, ଜନସଂଘରେ ହିନ୍ଦୁ ରାଷ୍ଟ୍ରର ପ୍ରୟୋଗ ବର୍ଜିତ ନୁହେଁ । ଆମ ପାଇଁ ରାଷ୍ଟ୍ରୀୟତାର ସଂଦର୍ଭରେ 'ଭାରତୀୟ' ଏବଂ 'ହିନ୍ଦୁ' ପର୍ଯ୍ୟାୟବାଚୀ ଶବ୍ଦ । ସମସ୍ତେ ଜାଣନ୍ତି ଭାରତ ଏକ ପ୍ରାଚୀନ ରାଷ୍ଟ୍ର । ଆମକୁ କୌଣସି ନୂଆ ରାଷ୍ଟ୍ର ନିର୍ମାଣ କରିବାକୁ ନାହିଁ, ଏହି ପ୍ରାଚୀନ ରାଷ୍ଟ୍ରକୁ ସୁଦୃଢ଼, ସମୃଦ୍ଧ ଏବଂ ଆଧୁନିକ ରୂପ ଦେବାକୁ ପଡ଼ିବ ।

ଜନସଂଘ 'ସେକ୍ୟୁଲାର'ର ଅର୍ଥ 'ଧର୍ମନିରପେକ୍ଷ' ବୋଲି ମାନେ ନାହିଁ, ଏହାର ଅର୍ଥ 'ପନ୍ଥନିରପେକ୍ଷ' ବୋଲି ଗ୍ରହଣ କରିଥାଏ । ବାସ୍ତବରେ ରାଜ୍ୟ ଧର୍ମସାପେକ୍ଷ, କିନ୍ତୁ ସମ୍ପ୍ରଦାୟନିରପେକ୍ଷ ହେବା ଆବଶ୍ୟକ । ଆମେ ଜାଣୁ ଏ ଦେଶରେ ବସବାସ କରୁଥିବା ଅଧିକାଂଶ ମୁସଲମାନଙ୍କ ପୂର୍ବଜ ହିନ୍ଦୁହିଁ ଥିଲେ । ସେମାନଙ୍କ ଧମନୀରେ ହିନ୍ଦୁ ରକ୍ତ

ପ୍ରବାହିତ ହେଉଛି । ସବୁ ମୁସଲମାନ୍ କଦାପି ବାହାରୁ ଆସିନାହାନ୍ତି । ସେମାନଙ୍କର 'ମଜହବ୍' ବଦଳି ଯାଇଛି ସିନା, ପୂର୍ବ ଇତିହାସ ବା ସଂସ୍କୃତି ବଦଳିଯାଇନାହିଁ । ବର୍ତ୍ତମାନ ସେମାନେ ନିଜର 'ମଜହବ୍' ବା ଧର୍ମବିଶ୍ୱାସ ଛାଡ଼ି ଦିଅନ୍ତୁ ଏବଂ ହିନ୍ଦୁ ଦେବ-ଦେବୀଙ୍କୁ ମାନନ୍ତୁ - ଏ କଥା କେହି କହୁନାହିଁ । ସମସ୍ତେ ନିଜର ଭାରତୀୟତା, ସଂସ୍କୃତି, ରାଷ୍ଟ୍ରୀୟତାକୁହିଁ ସମ୍ମାନ ଦିଅନ୍ତୁ - ଜନସଂଘ କେବଳ ଏତିକି ଚାହୁଁଥିଲା ।

**।। ଶ୍ୟାମାପ୍ରସାଦଙ୍କ ଅକାଳ ବିୟୋଗର ପ୍ରଭାବ ।।**

ଜନସଂଘର ଏହି ଯଥାର୍ଥ ଓ ସ୍ପଷ୍ଟ ଆଭିମୁଖ୍ୟ ଜନସାଧାରଣଙ୍କ ଦ୍ୱାରା ଆଦୃତ ହେଲା । ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ନେତୃତ୍ୱରେ ଏହି ଦଳ ପ୍ରଗତିର ପଥରେ ଆଗେଇ ଚାଲିଲା ଏବଂ ଦେଶର ବିଭିନ୍ନ ଅଞ୍ଚଳରେ ଏହାର ପ୍ରଭାବ ମଧ ବଢ଼ିବାକୁ ଲାଗିଲା । କିନ୍ତୁ ଠିକ୍ ଏତିକି ବେଳେ, ୧୯୫୩ ମସିହା ଜୁନ୍ ୨୩ ତାରିଖ ଦିନ କାଶ୍ମୀରରେ ସଂଦେହଜନକ ଅବସ୍ଥାରେ ଡଃ ଶ୍ୟାମାପ୍ରସାଦଙ୍କର ରହସ୍ୟଜନକ ଓ ଅସ୍ୱାଭାବିକ ମୃତ୍ୟୁ ହୋଇଗଲା । ଭାରତୀୟ ଜନସଂଘ ପାଇଁ, ଦେଶବାସୀଙ୍କ ପାଇଁ ଏବଂ ବ୍ୟକ୍ତିଗତ ଭାବେ ଅଟଳଜୀଙ୍କ ପାଇଁ ଏହା ଥିଲା ଏକ ଦାରୁଣତମ ଧକ୍କା ।

**।। ରାଜନୀତିର ବନ୍ଧୁର ପଥରେ ।।**

ରାଜନୀତିର ପଥ ଅତି ବନ୍ଧୁର । ଅତ୍ୟନ୍ତ ସାବଧାନତା ସହକାରେ ପାଦ ଗଣି ଗଣି ଏହି ରାସ୍ତାରେ ଚାଲିବାକୁ ପଡ଼େ । ଯଦି କେହି ବେପରୁଆ ଭାବରେ ଚାଲିବାକୁ ଆରମ୍ଭ କରେ, ତେବେ ତାକୁ ଶକ୍ତ କଚଡ଼ା ଖାଇବାକୁ ପଡ଼େ । ପୁଣି ଉଠି ଚାଲିବାକୁ କିଛି ସମୟ ଲାଗିଯାଏ ଅଥବା ସବୁଦିନ ପାଇଁ ପଛରେ ପଡ଼ିଯିବାକୁ ହୁଏ । ବେଳେ ବେଳେ ନିଜର ଜୀବନ ବି ଶେଷ ହୋଇଯାଏ । ଅଟଳଜୀ ଏ କଥା ବୁଝିଥିଲେ । ତା'ଛଡ଼ା ସକ୍ରିୟ ରାଜନୀତି ପ୍ରତି ତାଙ୍କର ନିଜସ୍ୱ ଆଗ୍ରହ ବା ରୁଚି ମଧ୍ୟ ନଥିଲା । କିନ୍ତୁ ପରିସ୍ଥିତରେ ପଡ଼ି ତାଙ୍କୁ ରାଜନୀତିର ଏହି ବନ୍ଧୁର, କଣ୍ଟକମୟ କଙ୍କରିଳ ରାସ୍ତାରେ ପାଦ ଦେବାକୁ ପଡ଼ିଲା । ପତ୍ରକାର ଅଥବା ଅଧ୍ୟାପକ ରୂପେ ଦେଶମାତୃକାର ସେବା କରିବା ପାଇଁ ତାଙ୍କର୍ ଯେଉଁ ସ୍ୱାଭାବିକ ଇଚ୍ଛା ଓ ଆଗ୍ରହ ଥିଲା, ତାକୁ ଜଳାଞ୍ଜଳି ଦେଇ ଅନିଶ୍ଚିତ ଓ ବିପଦସଂକୁଳ ରାଜନୀତିର ପଥରେ ତାଙ୍କୁ ଆଗେଇବାକୁ ହେଲା । ଏହାକୁହିଁ ସେ ନିଜର ନିୟତି ରୂପେ ମାନି ନେଲେ । ତାଙ୍କ ଭିତରେ ଦେଶଭକ୍ତିର ଯେଉଁ ଉଦ୍ଦାମ ଭାବନା ରହିଥିଲା, ତାର ପ୍ରେରଣାରେ ଏବଂ ଡଃ ଶ୍ୟାମାପ୍ରସାଦଙ୍କର ଆକସ୍ମିକ ଓ ଅସ୍ୱାଭାବିକ ମୃତ୍ୟୁଜନିତ ପରିସ୍ଥିତିର ଜରୁରୀ ଆବଶ୍ୟକତାରେ ଅଟଳଜୀଙ୍କୁ ନିୟତିର ଏହି ନିର୍ଦ୍ଦେଶ ମାନି ନେବାକୁ ପଡ଼ିଥିଲା । ଏହି ଘଟଣା ତାଙ୍କର ହୃଦୟକୁ ଏତେ ଆନ୍ଦୋଳିତ କରିଥିଲା ଯେ, ଶ୍ୟାମାପ୍ରସାଦଙ୍କ ଦ୍ୱାରା ପ୍ରଦର୍ଶିତ ମାର୍ଗକୁ ଆହୁରି ପ୍ରଶସ୍ତ କରାଇବା ଏବଂ ତାଙ୍କର ସ୍ୱପ୍ନକୁ ସାକାର କରାଇବା ଲାଗି ସେ ସଂକଳ୍ପ କଲେ ।

ତା'ପରଠାରୁ ତାଙ୍କୁ ଆଉ କେବେ ପଛକୁ ଫେରି ଚାହିଁବାର ଅବକାଶ ମିଳିନାହିଁ। ୪୫ବର୍ଷ ତଳର ସେହି ସଂକଳ୍ପକୁ ଚରିତାର୍ଥ କରିବା ଲାଗି ଏବେ ବି ସେ ସାଧନାରତ ଅଛନ୍ତି ।

।। 'ଅମର ବଳିଦାନ'ର ସ୍ମୃତି ।।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଡଃ ଶ୍ୟାମାପ୍ରସାଦ, ଦେଶବାସୀଙ୍କୁ ବଳିଦାନର ପଥରେ ଆଗେଇ ଆସିବା ପାଇଁ ଆହ୍ୱାନ ଦେଉଥିବା ବେଳେହିଁ ନିଜେ ବଳି-ବେଦୀ ଉପରେ ବଳି ହୋଇଯାଇଥିଲେ । କାଶ୍ମୀରରେ ଯେପରି ରହସ୍ୟଜନକ ଭାବରେ ତାଙ୍କର ମୃତ୍ୟୁ ଘୋଷଣା କରାଯାଇଥିଲା, ତାହା ସମସ୍ତଙ୍କୁ ସ୍ତବ୍ଧ-ଚକିତ କରି ଦେଇଥିଲା । ତାଙ୍କର ଗୁଣମୁଗ୍ଧ ମହଲରେ ଦାରୁଣ ଶୋକ ଓ କ୍ଷୋଭର ଲହରୀ ଖେଳିଯାଇଥିଲା । ତାଙ୍କର ଅତି ନିକଟ ସଂପର୍କରେ ଆସିଥିବା ଅଟଳଜୀଙ୍କ ପରି ଦୃଢ଼ମନା ବ୍ୟକ୍ତି ମଧ୍ୟ କୋହ ସମ୍ଭାଳି ନ ପାରି କହିଁ କହିଁ କରି କାନ୍ଦି ପକାଇଥିଲେ । ସେହି କୋହ ଓ କ୍ରନ୍ଦନ ଭିତରୁହିଁ, ଶ୍ୟାମାପ୍ରସାଦଙ୍କ ଅପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣ କରିବା ପାଇଁ ତାଙ୍କର ବଜ୍ର-କଠୋର ଶପଥ ଜନ୍ମ ନେଇଥିଲା ।

୧୯୫୩ ମସିହା ମେ' ମାସର ଘଟଣା । ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କୁ ଗିରଫ କରାଯାଇ ଶ୍ରୀନଗରକୁ ନିଆଗଲା ଏବଂ ସେଠାରେ ତାଙ୍କୁ ନଜରବନ୍ଦୀ ରୂପେ ରଖାଗଲା । ଏହା ହେଉଛି ପ୍ରଥମ ସାଧାରଣ ନିର୍ବାଚନର ପରବର୍ତ୍ତୀ ସମୟର ଘଟଣା । ଗିରଫଦାରୀର ୪୨ ଦିନ ପରେ ଜୁନ୍ ୨୩ ତାରିଖ ଦିନ ହଠାତ୍ ଅତ୍ୟନ୍ତ ରହସ୍ୟଜନକ ଭାବରେ ତାଙ୍କୁ ମୃତ ବୋଲି ଘୋଷଣା କରି ଦିଆଗଲା ।

ଏ ସମ୍ବନ୍ଧରେ ଅଟଳଜୀ କହନ୍ତି: "ଶ୍ୟାମାପ୍ରସାଦ ବାସ୍ତବରେ ମରି ନାହାନ୍ତି; ବିଭାଜିତ ଭାରତବର୍ଷର ଅବଶିଷ୍ଟ ଏକତାକୁ ବଜାୟ ରଖିବା ଲାଗି ରାଷ୍ଟ୍ରର ବେଦୀ ଉପରେ ନିଜର ସର୍ବସ୍ୱକୁ ବଳି ଦେଇ ସେ ଅମର ହୋଇଯାଇଛନ୍ତି । ଦେଶ-ମାତୃକା ପାଇଁ ଅନ୍ୟମାନଙ୍କୁ ବଳିଦାନ ନିମନ୍ତେ ଡାକରା ଦେଇ ଦେଇ ସେ ନିଜେ ବଳି ହୋଇ ଯାଇଛନ୍ତି । ଧ୍ୟେୟର ସିଦ୍ଧି ଲାଗି ନିଜର ଅମୂଲ୍ୟ ଜୀବନକୁ ଭାରତ ଜନନୀର ଚରଣ ତଳେ ସମର୍ପି ଦେଇ ଯାଇଛନ୍ତି । ବିଘଟନକାରୀ ଶକ୍ତିମାନଙ୍କ ସହିତ ଲଢ଼ିବାକୁ ଯାଇ ସେ ଶହୀଦ ହୋଇଯାଇଛନ୍ତି । ଭାରତ-ଜନନୀର ମସ୍ତକକୁ କାଶ୍ମୀରର କିରୀଟରେ ମଣ୍ଡିତ ରଖିବା ଲାଗି ନିଜ ପ୍ରାଣକୁ ବାଜି ରଖି ଯାଇଛନ୍ତି । ଗଣତନ୍ତ୍ରର ସୁରକ୍ଷା ପାଇଁ ସେ ନିଜକୁ ଉତ୍ସର୍ଗ କରି ଯାଇଛନ୍ତି, ଅତ୍ୟାଚାରର ଶିକାର ହୋଇଛନ୍ତି । ଅନ୍ଧକାରର ଶକ୍ତିମାନଙ୍କ ସହିତ ଲଢ଼େଇ କରୁଁ କରୁଁ ସେ ଅନନ୍ତ ଜ୍ୟୋତିରେ ବିଲୀନ ହୋଇ ଯାଇଛନ୍ତି । ନିଜର ଧର୍ମ ପାଳନ କରିବାକୁ ଯାଇ କର୍ମଭୂମିରେ ସବୁ ଦିନ ଲାଗି ଶୋଇଯାଇଛନ୍ତି ।" (ଦ୍ରଷ୍ଟବ୍ୟ: ୧୯୫୬ରେ ପ୍ରକାଶିତ ଅଟଳବିହାରୀ ବାଜପେୟୀଙ୍କର ଏକ ପୁସ୍ତକ "ଅମର

ବଳିଦାନ") ଡଃ ଶ୍ୟାମାପ୍ରସାଦଙ୍କ ମୃତ୍ୟୁ ପରେ ପରେ ଅଟଳଜୀ "କାଶ୍ମୀରକୀ ବେଦୀ ପର ୟହ୍ ଆତ୍ମବଳିଦାନ" ଶୀର୍ଷକ ଏକ ନିବନ୍ଧ ମଧ୍ୟ ଲେଖିଥିଲେ, ଯାହାକି ସେତେବେଳେ ବହୁଚର୍ଚ୍ଚିତ ହୋଇଥିଲା ।

॥ ନିର୍ବାଚନ-ସଂଗ୍ରାମର ମୈଦାନରେ ॥

ଶ୍ୟାମାପ୍ରସାଦଙ୍କ ମୃତ୍ୟୁ ପରେ ପରେ ଅଟଳଜୀ ସକ୍ରିୟ ରାଜନୀତିରେ ତଥା ଭାରତୀୟ ଜନସଂଘର ସଂଗଠନ କାର୍ଯ୍ୟରେ ନିଜକୁ ପୂରାପୂରି ସାମିଲ କରି ଦେଲେ । ନିଜର ଅପ୍ରତିମ ଭାଷଣ-କୌଶଳ ତଥା ନିର୍ବିବାଦୀୟ ବ୍ୟକ୍ତିତ୍ୱ ଓ ଗଭୀର ବିଦ୍ୱତ୍ତା ଯୋଗୁଁ ଉତ୍ତର ଭାରତରେ ତାଙ୍କର ଖ୍ୟାତି ପୂର୍ବରୁହିଁ ରହିଥିଲା । ଏଥର ତାହା ଆହୁରି ବୃଦ୍ଧି ପାଇବାକୁ ଆରମ୍ଭ କଲା । ୧୯୫୭ର ଦ୍ୱିତୀୟ ସାଧାରଣ ନିର୍ବାଚନରେ ଜନସଂଘ ତାଙ୍କୁ ନିର୍ବାଚନ ଯୁଦ୍ଧର ମୈଦାନରେ ଠିଆ କରାଇବା ନିମିତ୍ତ ସ୍ଥିର କଲା । ଏକାଥରକେ ତିନୋଟି ଆସନ (ଉତ୍ତର ପ୍ରଦେଶର ରାଜଧାନୀ ଲକ୍ଷ୍ନୌ, ମଥୁରା ଓ ବଳରାମପୁର)ରୁ ତାଙ୍କୁ ପ୍ରାର୍ଥୀ କରାଗଲା । ଅବଶ୍ୟ ସେଥର ସେ କେବଳ ବଳରାମପୁରରୁହିଁ ନିର୍ବାଚିତ ହୋଇ ପାରିଥିଲେ ଏବଂ ପ୍ରଥମ ଥର ପାଇଁ ଲୋକସଭାର ସଦସ୍ୟ ହୋଇଥିଲେ । ଅନ୍ୟ ଦୁଇଟି ସ୍ଥାନରୁ ସେ ଜୟଲାଭ କରି ପାରି ନଥିଲେ ମଧ୍ୟ ମର୍ଯ୍ୟାଦାଜନକ ଲଢ଼େଇ ଦେଇ ପାରିଥିଲେ । ସ୍ମରଣ ରଖିବାକୁ ହେବ ଯେ, ସେତେବେଳେ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ପଣ୍ଡିତ ଜବାହର ଲାଲ ନେହେରୁଙ୍କର ବ୍ୟକ୍ତିତ୍ୱ ଦେଦୀପ୍ୟମାନ ଥିଲା ।

ବଳରାମପୁରର ସେହି ନିର୍ବାଚନ ସମ୍ବନ୍ଧରେ ଅଟଳଜୀ ସଂପ୍ରତି ନିଜର ସରଳ, ସରସ ଓ ବିନୋଦପୂର୍ଣ୍ଣ ଶୈଳୀରେ ଯାହା ଲେଖିଛନ୍ତି, ସେଥିରୁ କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି ।

"ସମୟ କେତେ ଶୀଘ୍ର ଚାଲିଯାଉଛି । ଦେଖୁଁ ଦେଖୁଁ ଚାରି ଦଶକ (୪୦ ବର୍ଷ) ବିତିଗଲାଣି । ତଥାପି ମନେ ହେଉଛି, ଯେମିତି କାଲିର ଘଟଣା ! ସେ ଥିଲା ୧୯୫୭ ସାଲର କଥା । ସାଧାରଣ ଜନତା ମଧ୍ୟରେ ଜନସଂଘର ସେତେଟା ବ୍ୟାପକ ସଂଗଠନ ହୋଇ ପାରି ନଥିଲା । ତାର ପ୍ରଧାନ କାରଣ ଥିଲା, ଦଳର ପ୍ରତିଷ୍ଠାତା ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କର ଅକାଳ ବିୟୋଗ ଫଳରେ ଦଳରେ ନେତୃତ୍ୱର ସଂକଟ ସୃଷ୍ଟି ହୋଇଥିଲା । ଦଳରେ ଆଉ କେହି ବିଶେଷ ଖ୍ୟାତିମାନ୍ ଓ ପ୍ରଭାବଶାଳୀ ନେତା ନଥିଲେ କି ଦଳର ବିସ୍ତୃତ ଜନାଧାର ଓ ସଂଗଠନ ମଧ୍ୟ ନଥିଲା । ନିର୍ବାଚନ ଲଢ଼ିବା ପାଇଁ ପ୍ରାର୍ଥୀ ମିଳିବା ବି ମୁସ୍କିଲ ଥିଲା । କିଏ ବା ହାତରୁ ଖର୍ଚ୍ଚ କରି ନିଜର ଅମାନତ ହରାଇବାକୁ ରାଜି ହେବ ! ତଥାପି ଆମକୁ ତ ନିର୍ବାଚନ ଲଢ଼ିବାକୁ ଥିଲା । କାରଣ ନିର୍ବାଚନ ଜିତିବାର ସଫଳତା ମିଳୁ କି ନ ମିଳୁ, ଦଳର ନୀତି ଓ ବାର୍ତ୍ତାକୁ ଅଧିକରୁ ଅଧିକ ଲୋକଙ୍କ ନିକଟରେ ପହଞ୍ଚାଇବା ଲାଗି ନିର୍ବାଚନଠାରୁ ବେଶି ଭଲ ସୁଯୋଗ ବା ଆଉ କେବେ ମିଳି ପାରନ୍ତା ?

ଅତଏବ ମୋତେ ଏକାବେଳେକେ ତିନୋଟି ଆସନରୁ ଠିଆ କରାଇବା ପାଇଁ ଦଳ ସ୍ଥିର କଲା । ଏହି ନିର୍ବାଚନମଣ୍ଡଳୀଗୁଡ଼ିକ ହେଉଛି - ଲକ୍ଷ୍ନୌ, ମଥୁରା ଆଉ ବଳରାମପୁର । ପୂର୍ବରୁ ମୁଁ ଲକ୍ଷ୍ନୌ ନିର୍ବାଚନମଣ୍ଡଳୀରୁ ଥରେ ଲୋକସଭାର ଏକ ଉପନିର୍ବାଚନ ଲଢ଼ି ସାରିଥିଲି । ସେଥିରେ ଜିତିବାର ତ ପ୍ରଶ୍ନ ନ ଥିଲା...ତେବେ ହଁ, ଆମକୁ ଭୋଟ ବେଶ୍ ଭଲ ମିଳିଥିଲା । ପାର୍ଟିର ପ୍ରଭାବ କିଛି ବଢ଼ିଥିଲା । ତେଣୁ ସେଠାରୁ ପୁଣି ମୋତେ ଦଳର ପ୍ରାର୍ଥୀ କରାଯିବା କଥା ସ୍ଥିର ହେଲା । ମଥୁରାରୁ ପାର୍ଟିର ପ୍ରାର୍ଥୀ ହେବା ପାଇଁ କୌଣସି ଉପଯୁକ୍ତ ବ୍ୟକ୍ତି ଆମକୁ ମିଳି ପାରୁ ନଥିଲେ । ଯେଉଁମାନେ ପ୍ରାର୍ଥୀ ହେବାକୁ ଆଗ୍ରହୀ ଥିଲେ, ସେମାନେ ସମସ୍ତେ ବିଧାନସଭା ନିର୍ବାଚନରେହିଁ ଠିଆ ହେବାକୁ ଚାହୁଁଥିଲେ । ତାର କାରଣ ଅମାନତ ପରିମାଣ କମ୍ ଥିଲା ଏବଂ ତାକୁ ବଞ୍ଚାଇ ପାରିବାର ଆଶା ମଧ ରହିଥିଲା । କିନ୍ତୁ ଲୋକସଭା ନିର୍ବାଚନ ଲଢ଼ିବାକୁ କେହି ରାଜି ନଥିଲେ । ଅତଏବ ମୋ ଉପରେ ନଜର ପଡ଼ିଲା । ସେତେବେଳେକୁ ମୋର କିଛିଟା ନାମ ହୋଇଯାଇଥିଲା । ଭାଷଣ ଶୁଣିବାକୁ ଲୋକମାନେ ଆସୁଥିଲେ । ତେଣୁ ମୋତେ ସେଠାରୁ ବି ଠିଆ କରାଇବା ପାଇଁ ଦଳର ଲୋକମାନେ ସ୍ଥିର କରି ଦେଲେ । ଆଉ ବଳରାମପୁର ସଂକ୍ରାନ୍ତରେ କହିବାକୁ ଗଲେ... ସେଠାରେ ଆମ ପାର୍ଟିର ସ୍ଥିତି ଅପେକ୍ଷାକୃତ ଭାବରେ ବେଶ୍ ଭଲ ଥିଲା । ସ୍ୱର୍ଗତ ପ୍ରତାପ ନାରାୟଣ ତିୱାରୀ ପ୍ରଥମେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ପୂର୍ଣ୍ଣକାଳିକ ପ୍ରଚାରକ ରୂପେ ଏବଂ ପରେ ଭାରତୀୟ ଜନସଂଘର ଜଣେ କର୍ମକର୍ତ୍ତା ରୂପେ ବଳରାମପୁର କ୍ଷେତ୍ରରେ ଖୁବ୍ ଭଲ ସଂଗଠନ କରି ପାରିଥିଲେ । ବହୁ ସଂଖ୍ୟାରେ ଯୁବକ, ଛାତ୍ର, ଚାଷୀ, କର୍ମଚାରୀ, ଶିକ୍ଷକ, ବ୍ୟବସାୟୀ ପ୍ରଭୃତି ବିଭିନ୍ନ ଶ୍ରେଣୀର ଲୋକେ ପାର୍ଟି ସହିତ ସଂପୃକ୍ତ ହୋଇ ଯାଇଥିଲେ । ଦଳର ଦୃଷ୍ଟିରୁ ବଳରାମପୁରରେ ଆମର ଜିତିବାର ଯଥେଷ୍ଟ ସମ୍ଭାବନା ରହିଥିଲା । ତେଣୁ ସେଠାରୁ ମଧ ମୋତେ ପ୍ରାର୍ଥୀ କରାଯିବା ପାଇଁ ସ୍ଥିର କରାଗଲା । ମୁଁ ଲକ୍ଷ୍ନୌ ଏବଂ ମଥୁରାରେ ନିଜର ନାମାଙ୍କନ ପତ୍ର ଦାଖଲ କରିସାରି ବଳରାମପୁରରେ ପହଞ୍ଚିଗଲି । ତା'ପୂର୍ବରୁ ମୁଁ ଆଉ କେବେ ବଳରାମପୁର ଯାଇ ନଥିଲି । ମୋତେ ତାର ଭୂଗୋଳ କିମ୍ବା ଇତିହାସ ସଂପର୍କରେ କିଛି ଜଣା ନଥିଲା । ଗୋଣ୍ଡାରୁ ଗୋରଖପୁର ପର୍ଯ୍ୟନ୍ତ ଯେଉଁ ଛୋଟ ଅଣଓସାରିଆ ରେଳପଥ ଯାଇଥିଲା, ସେଇଥିରେ ଥିଲା ବଳରାମପୁର ଷ୍ଟେସନ୍ । ରେଳଗାଡ଼ି ରାତି ଅଧରେ ଗୋଣ୍ଡା ଛାଡ଼ି ଭୋର ବେଳକୁ ସେଠାରେ ପହଞ୍ଚୁଥିଲା । ମୁଁ ସେହିଭଳି ଛୋଟ ଲାଇନ୍ ସହିତ ସୁପରିଚିତ ଥିଲି । ଗ୍ୱାଲିୟର ଓ ଭିଣ୍ଡ୍ ମଧରେ ତ ତା'ଠାରୁ ଆହୁରି ଛୋଟ ଲାଇନ୍ ବି ଥିଲା । ରେଳଗାଡ଼ି ସବୁ ବେଶ୍ ଆରାମରେ ଚାଲୁଥିଲା ଏବଂ ପହଞ୍ଚିବା ପାଇଁ ବହୁତ ସମୟ ନେଉଥିଲା । ଏକା ଟିକେଟ୍‌ରେ, ଏକା ପଇସାରେ ଲମ୍ବା ରେଳଯାତ୍ରାର ଆନନ୍ଦ ମିଳି ପାରୁଥିଲା । ମୁଁ ରାତିରେ ଗୋଣ୍ଡାଠାରୁ ରେଳଗାଡ଼ିରେ ଉଠି ଉପରର ଜିନିଷପତ୍ର ରଖିବା ଜାଗାରେ ନିଜର ବିଛଣା ବିଛାଇ ବେଶ୍ ଆରାମରେ ଶୋଇଗଲି । ଆଖି ଖୋଲିଲା ବେଳକୁ ଗାଡ଼ି

ଗୋଟିଏ ଷ୍ଟେସନ୍‌ରେ ଠିଆ ହୋଇଥିଲା । ଝରକା ଖୋଲି ଦେଖିଲି, ଶହ ଶହ କାଉ ଗଛମାନଙ୍କରେ ବସି କା' କା' କରୁଛନ୍ତି । ସେମାନଙ୍କ ରାବରେ ସାରା ଆକାଶ ଉଛୁଳି ପଡୁଥିଲା । କାହାକୁ ଜଣେ ମୁଁ ପଚାରିଲି - ଯେ କୋଉ ଷ୍ଟେସନ୍ ? ଉତ୍ତର ମିଳିଲା: ଗୋଣ୍ଡାପୁର ।

ଗୋଣ୍ଡାପୁର ଓ ଇଣ୍ଡିଆଥୋକ୍ ମଝିରେ ଥିବା ବଳରାମପୁର ଷ୍ଟେସନ୍ ନେପାଳ ଯାଉଥିବା ଯାତ୍ରୀମାନଙ୍କ ପାଇଁ ଏକ ବିଶ୍ରାମ ସ୍ଥଳର କାର୍ଯ୍ୟ କରିଥାଏ । ନଗର ଘାଘରାର କୂଳରେ ଏହା ଅବସ୍ଥିତ । ବଳରାମପୁର ଏକ ଛୋଟ ରାଜ୍ୟ ଥିଲା । ୧୯୪୭ରେ ଉତ୍ତର ପ୍ରଦେଶରେ ଅଙ୍ଗୀଭୂତ ହେଲା । ଭାରତୀୟ ଜନସଂଘ ରୂପରେ ଲୋକଙ୍କୁ କଂଗ୍ରେସର ଏକ ନୂଆ ବିକଳ୍ପ ମିଳିଲା । ଲୋକେ ଏଥିପ୍ରତି ଆକୃଷ୍ଟ ହେଲେ । ଜନସଂଘର ଜାତୀୟତାବାଦୀ ଚିନ୍ତାଧାରା ଲୋକଙ୍କୁ ପ୍ରଭାବିତ କଲା । ରାଜତନ୍ତ୍ର ସମାପ୍ତ ହୋଇଯାଇଥିଲା । କିନ୍ତୁ ଜମିଦାରୀ କାଏମ୍ ଥିଲା । ବହୁତ ଜମିଦାର ମୁସଲମାନ ଥିଲେ, ଯେଉଁମାନେ ଆର୍ଥିକ ଉତ୍ପୀଡ଼ନ ସହିତ ଧାର୍ମିକ ଭେଦଭାବ ବି କରୁଥିଲେ । ମୋର ନିର୍ବାଚନୀ ଗସ୍ତ ଭିତରେ ମୋତେ ଏପରି କେତେକ ଅଞ୍ଚଳ ମିଳିଲା, ଯେଉଁଠି ଘଣ୍ଟ ଓ ଶଙ୍ଖ ବଜାଇବା ବି ମନା ଥିଲା । ସ୍ୱାଧୀନତା ପରେ ଏହି ପରିସ୍ଥିତିର ପରିବର୍ତ୍ତନ ହୋଇଥିଲା । ତେବେ ପରିବର୍ତ୍ତନର ଲହର ଦୂରବର୍ତ୍ତୀ ଇଲାକାଗୁଡ଼ିକରେ ପହଞ୍ଚି ପାରି ନଥିଲା । ଜମିଦାରମାନଙ୍କ ଦ୍ୱାରା ଅତ୍ୟାଚାରିତ ଓ ଆତଙ୍କିତ ଛୋଟ ଏବଂ ମଧ୍ୟମ ବର୍ଗର ଚାଷୀମାନେ ଭାରତୀୟ ଜନସଂଘ ସହିତ ରହିଲେ । ଏହାର ଫଳ ସ୍ୱରୂପ ମୁଁ ବଳରାମପୁର ନିର୍ବାଚନମଣ୍ଡଳୀରୁ ଲୋକସଭାକୁ ନିର୍ବାଚିତ ହୋଇଗଲି । ସେଠାରେ ମୋଟ ମତଦାତାଙ୍କ ସଂଖ୍ୟା ଥିଲା ୪,୮୨,୮୦୦ । ତନ୍ମଧ୍ୟରୁ ୨,୨୬,୯୪୮ ମତଦାତା ନିଜ ମତାଧିକାର ଉପଯୋଗ କରିଥିଲେ । ମୋତେ ୧,୧୮, ୩୮୦ ଭୋଟ ମିଳିଥିଲା । କଂଗ୍ରେସ ପ୍ରାର୍ଥୀ ହାଇଦର ହୁସେନ ପ୍ରାୟ ୧୦ ହଜାର ଭୋଟରେ ନିର୍ବାଚନ ହାରିଗଲେ । ହୁଏତ କଂଗ୍ରେସ ପ୍ରାର୍ଥୀ ହିନ୍ଦୁ ହୋଇଥିଲେ ମୁଁ ସେଥର ନିର୍ବାଚନରେ ଜିତି ପାରି ନ ଥାନ୍ତି । ଅବଶ୍ୟ ହାଇଦର ହୁସେନ୍ ଲକ୍ଷ୍ନୌର ନାମୀ ଓକିଲ ଥିଲେ । କିନ୍ତୁ ବଳରାମପୁରରେ ଲୋକଙ୍କ ସହିତ ବିଶେଷ ପ୍ରତ୍ୟକ୍ଷ ସମ୍ପର୍କ ରକ୍ଷା କରିବା ତାଙ୍କ ପକ୍ଷରେ ସହଜ ନ ଥିଲା । ସେ କଂଗ୍ରେସର ଶକ୍ତି ବଳରେ ହିଁ ଗତଥର ନିର୍ବାଚନ ଜିତିଥିଲେ । କଂଗ୍ରେସବିରୋଧୀ ମନୋଭାବ ବଢ଼ିଥିଲା । ତେଣୁ ମୋତେ ସେଠାରୁ ନିର୍ବାଚନର ସଫଳତା ମିଳିଯାଇଥିଲା ।

କିନ୍ତୁ ମୋତେ ଅନ୍ୟ ଦୁଇ ନିର୍ବାଚନମଣ୍ଡଳୀରେ ଘୋର ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମଥୁରାରେ ତ ମୋର ଅମାନତ ବି ରହି ପାରିଲା ନାହିଁ । ଅବଶ୍ୟ ସେଠାରେ କଂଗ୍ରେସ ଜିତି ନ ଥିଲା । କିନ୍ତୁ ବିରୋଧୀ ମନୋଭାବ ମଧ୍ୟ ପ୍ରବଳ ଥିଲା । ସେଠାରେ କଂଗ୍ରେସକୁ ହରାଇବା ପାଇଁ ଶେଷ ମୁହୂର୍ତ୍ତରେ ଜନସଂଘର ସମର୍ଥକମାନେ ମଧ୍ୟ ସ୍ୱାଧୀନ ପ୍ରାର୍ଥୀ ରାଜା ମହେନ୍ଦ୍ର ପ୍ରତାପଙ୍କ ସପକ୍ଷରେ ଚାଲି ଯାଇଥିଲେ । ରାଜା

ସାହେବଙ୍କ ପାଇଁ ଲୋକଙ୍କ ହୃଦୟରେ ବହୁତ ଆଦର ଥିଲା । ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ । ବିଦେଶରେ ଗଠିତ ସ୍ୱତନ୍ତ୍ର ଭାରତର ସରକାରରେ ସେ 'ରାଷ୍ଟ୍ରପତି' ହୋଇଥିଲେ । ତାଙ୍କଦ୍ୱାରା ସ୍ଥାପିତ 'ପ୍ରେମ ଆଶ୍ରମ' ଶିକ୍ଷା କ୍ଷେତ୍ରରେ ବେଶ୍ ଭଲ କାମ କରୁଥିଲା । ତେଣୁ ସେ ସେଠାକାର କଂଗ୍ରେସବିରୋଧୀ ମନୋଭାବର ପୂରା ଲାଭ ଉଠାଇବାକୁ ସକ୍ଷମ ହୋଇଥିଲେ । ତା'ଛଡ଼ା ସେ ଜାଟ ହୋଇଥିବାରୁ ତାହା ମଧ୍ୟ ତାଙ୍କ ପାଇଁ ଯଥେଷ୍ଟ ସହାୟକ ହୋଇଥିଲା । ଏକାଧିକ ଆସନରୁ ମୋତେ ଲଢ଼ିବାକୁ ପଡ଼ିଥିବାରୁ ସବୁ ଅଞ୍ଚଳ ପ୍ରତି ଦୃଷ୍ଟି ଦେବା ବି ମୋ ପକ୍ଷରେ ସମ୍ଭବ ନ ଥିଲା । ଏହି ସବୁ କାରଣରୁ ମୋତେ ସେଠାରେ ଶୋଚନୀୟଭାବେ ହାରିବାକୁ ପଡ଼ିଥିଲା । ସେଥିପାଇଁ ଅବଶ୍ୟ ମୋ ମନରେ ଦୁଃଖ ହୋଇଥିଲା । ପାର୍ଟିର ସ୍ଥାନୀୟ ଲୋକେ ମୋତେ ହୁଏତ ସେଠାରୁ ଠିଆ ହେବାପାଇଁ ବାଧ କରିବା ଉଚିତ ନ ଥିଲା ଅଥବା ଯଦି ମୋତେ ଠିଆ କରାଗଲା, ତେବେ ମୋ ସପକ୍ଷରେ ପୂରାଦମ୍‌ରେ ଶେଷ ପର୍ଯ୍ୟନ୍ତ ଲାଗିବା ଉଚିତ ଥିଲା ।

ଲକ୍ଷ୍ନୌରେ ମୁଁ ହାରିଗଲେ ମଧ୍ୟ, ପାର୍ଟିକୁ ବେଶ୍ ଭଲ ଜନସମର୍ଥନ ମିଳିଥିଲା । କଂଗ୍ରେସର ବିଜୟୀ ପ୍ରାର୍ଥୀ ପୁଲିନବିହାରୀ ବାନାର୍ଜୀଙ୍କୁ ୬୯,୫୧୯ ଭୋଟ ମିଳିଥିଲା ଏବଂ ମୋତେ ମଳିଥିଲା ୫୭,୦୩୪ ଭୋଟ । ଯଦି ସେଠାରେ କମ୍ୟୁନିଷ୍ଟପ୍ରାର୍ଥୀ କିଛି ଅଧିକ ଭୋଟ ନେଇ ଯାଇ ପାରିଥାନ୍ତେ, ତେବେ ହୁଏତ କଂଗ୍ରେସକୁ ହରାଇ ଦିଆଯାଇ ପାରିଥାନ୍ତା । ସେଠାରେ ଜନସଂଘକୁ ହରାଇବା ଉଦ୍ଦେଶ୍ୟରେ ହିଁ ବାମପନ୍ଥୀ ମନୋଭାବସମ୍ପନ୍ନ ମତଦାତାମାନେ କେତେକ ଅଞ୍ଚଳରେ କଂଗ୍ରେସ ସପକ୍ଷରେ ଭୋଟ ଦେଇଥିବାର ଲକ୍ଷ୍ୟ କରାଯାଇଥିଲା ।

**॥ ଲୋକସଭାରେ ଜନସଂଘର ପ୍ରତିନିଧିତ୍ୱ ॥**

୧୯୫୭ର ଲୋକସଭା ନିର୍ବାଚନରେ ମୋତେ ମିଶାଇ ଜନସଂଘର ୪ ଜଣ ସଦସ୍ୟ ନିର୍ବାଚିତ ହୋଇଥିଲେ । ଉତ୍ତରପ୍ରଦେଶର ହରଦୋଇ ସଂରକ୍ଷିତ ଆସନରୁ ଜଣେ ଏବଂ ମହାରାଷ୍ଟ୍ରର ଧୁଲିୟା ଓ ରତ୍ନଗିରି ଆସନରୁ ଆଉ ଦୁଇଜଣ ନିର୍ବାଚିତ ହୋଇଥିଲେ । ମୋ ଛଡ଼ା ଅନ୍ୟ ତିନିଜଣଙ୍କ ମଧ୍ୟରୁ ଜଣେ ହରିଜନ, ଜଣେ ଓକିଲ ଓ ଆଉ ଜଣେ ବ୍ୟବସାୟୀ ଥିଲେ । ସୁତରାଂ ଲୋକସଭାରେ ସେଥର ଜନସଂଘର ମାତ୍ର ୪ ଜଣ ସଦସ୍ୟ ଥିଲେ ମଧ୍ୟ ଗୋଟିଏ ଦୃଷ୍ଟିରୁ ପୂରା ସମାଜର ପ୍ରତିନିଧିତ୍ୱ କରୁଥିଲେ ।

୧୯୫୭ର ପ୍ରାରମ୍ଭରେ, ନିର୍ବାଚନ ଠିକ୍ ସମୟରେ ହୋଇ ପାରିବ କି ନା, ସେ ନେଇ କିଛିଟା ଆଶଙ୍କା ଥିଲା । ତାର କାରଣ ବର୍ଷକ ପୂର୍ବରୁ ଭାଷାଭିତ୍ତିରେ ରାଜ୍ୟଗୁଡ଼ିକର ପୁନର୍ଗଠନ ହୋଇଥିଲା । ସେ ନେଇ କେତେକ ଅଞ୍ଚଳରେ ଅଶାନ୍ତିର ବାତାବରଣ ସୃଷ୍ଟି ହୋଇଥିଲା । ତେବେ ଠିକ୍ ସମୟରେ ହିଁ ନିର୍ବାଚନ କରାଯାଇଥିଲା । ପ୍ରାୟ କୋଡ଼ିଏ କୋଟି ମତଦାତା ଏହି ନିର୍ବାଚନରେ ଭାଗ ନେଇଥିଲେ । ଲୋକସଭା ସହିତ

ବିଧାନସଭାଗୁଡ଼ିକ ପାଇଁ ମଧ୍ୟ ନିର୍ବାଚନ ହୋଇଥିଲା । କଂଗ୍ରେସକୁ ୪୭.୮ ପ୍ରତିଶତ ଭୋଟ ମିଳିଥିଲା ଏବଂ ଲୋକସଭାରେ ଏହାର ସଦସ୍ୟ ସଂଖ୍ୟା ଗତଥର ତୁଳନାରେ ୭ ଅଧିକ ହେଲା । ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ ୮.୯ ପ୍ରତିଶତ ଭୋଟ ମିଳିଲା ଏବଂ ଏହାର ସଦସ୍ୟ ସଂଖ୍ୟା ୧୬ରୁ ବଢ଼ି ୨୭ ହେଲା । ପ୍ରଜା-ସମାଜବାଦୀ ପାର୍ଟିକୁ କମ୍ୟୁନିଷ୍ଟ ପାର୍ଟି ଠାରୁ ଅଧିକ ଭୋଟ ମିଳିଲେ ମଧ୍ୟ ଏହାର ପ୍ରାର୍ଥୀମାନେ କେବଳ ୧୯ଟି ଆସନରୁ ଜିତି ପାରିଥିଲେ । ଭାରତୀୟ ଜନସଂଘ ଶତକଡ଼ା ୬ ଭାଗରୁ ଅଧିକ ଭୋଟ ପାଇ ନିଜର ଅଖିଳ ଭାରତୀୟ ମାନ୍ୟତା ବଜାୟ ରଖି ପାରିଥିଲା । ଅନେକ ଦଳ ନିଜର ମାନ୍ୟତା ହରାଇ ବସିଲେ । ହିନ୍ଦୁ ମହାସଭା, ପରିଗଣିତ ଜାତି ମହାସଂଘ ଓ ରାମରାଜ୍ୟ ପରିଷଦ ଶତକଡ଼ା ୩ ଭାଗ ଭୋଟ ପାଇବାକୁ ସକ୍ଷମ ନ ହେବା ଫଳରେ ନିଜର ମାନ୍ୟତା ବଜାୟ ରଖି ପାରିଲେ ନାହିଁ । ହିନ୍ଦୁ ମହାସଭାର ଅଧ୍ୟକ୍ଷ ନିର୍ମଳଚନ୍ଦ୍ର ଚାଟାର୍ଜୀ ଓ ସାଧାରଣ ସମ୍ପାଦକ ବିଷ୍ଣୁ ଘନଶ୍ୟାମ ଦେଶପାଣ୍ଡେ ନିର୍ବାଚନରେ ହାରିଗଲେ । ଓଡ଼ିଶାରେ ଗଣତନ୍ତ୍ର ପରିଷଦ ଓ ତାମିଲନାଡୁରେ ଦ୍ରାବିଡ଼ ମୁନ୍ନେତ୍ର କଡ଼ଗମ୍ ପ୍ରଭୃତି ଆଞ୍ଚଳିକ ଦଳକୁ ଯଥେଷ୍ଟ ସଫଳତା ମିଳି ପାରିଥିଲା । ମହାରାଷ୍ଟ୍ରରେ ସଂଯୁକ୍ତ ମହାରାଷ୍ଟ୍ର ସମିତି ଓ ଗୁଜୁରାଟରେ ମହାଗୁଜରାଟ ଜନତା ପରିଷଦ ମଧ୍ୟ ନିର୍ବାଚନରେ ଭାଗ ନେଇ ଯଥେଷ୍ଟ ସଫଳତା ହାସଲ କରି ପାରିଥିଲେ ।

॥ ପ୍ରଥମ **ସଂସଦୀୟ ଅଭିଜ୍ଞତା** ॥

ଏହି ନିର୍ବାଚନ ପରେ ପଣ୍ଡିତ ଜବାହରଲାଲ ନେହେରୁ ଯେଉଁ ୨ୟ ମନ୍ତ୍ରିମଣ୍ଡଳ ଗଠନ କଲେ, ସେଥିରେ ମୌଲାନା ଆବୁଲ କଲାମ ଆଜାଦ, ଗୋବିନ୍ଦ ବଲ୍ଲଭ ପନ୍ଥ, ମୋରାରଜୀ ଦେଶାଇ ତଥା ଜଗଜ୍ଜୀବନ ରାମଙ୍କ ଭଳି ମୂର୍ଦ୍ଧନ୍ୟ ନେତାମାନେ ସାମିଲ ଥିଲେ । କୃଷ୍ଣ ମେନନ୍ ବି ଜଣେ ବିଭାଗବିହୀନ ମନ୍ତ୍ରୀ ଥିଲେ । ବିରୋଧୀ ପକ୍ଷରେ ଆଚାର୍ଯ୍ୟ ଜେ.ବି. କୃପାଲନୀ, ଶ୍ରୀପାଦ ଅମୃତ ଡାଙ୍ଗେ, ଏନ୍.ଜି.ଗୋରେ, ପ୍ରଫେସର ହୀରେନ୍ ମୁଖାର୍ଜୀ, ମିନୁ ମାସାନୀ ପ୍ରମୁଖ କୁଶଳୀ ସାଂସଦ ଓ ଅଭିଜ୍ଞ ରାଜନେତା ଉପସ୍ଥିତ ଥିଲେ । ଶ୍ରୀମତୀ ବିଜୟା ରାଜେ ସିନ୍ଧିଆ, ଯେ କି ଆଜି ଲୋକସଭାରେ ବିରୋଧୀ ପକ୍ଷରେ ପ୍ରଥମ ଧାଡ଼ିରେ ବିରାଜମାନ ଅଛନ୍ତି, ସେତେବେଳେ ସେ କଂଗ୍ରେସରେ ଥିଲେ । ତାଙ୍କ ବ୍ୟତୀତ ଶ୍ରୀମତୀ ସୁଚେତା କୃପାଲନୀ, କୁମାରୀ ପାର୍ବତୀ କୃଷ୍ଣନ୍, ଶ୍ରୀମତୀ ତାରକେଶ୍ୱରୀ ସିହ୍ନା ପ୍ରମୁଖ ନାରୀନେତ୍ରୀମାନେ ସଦନରେ ବେଶ୍ ସକ୍ରିୟ ଥିଲେ ଓ ଆଲୋଚନାରେ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଦେଉଥିଲେ ।

ଭାରତୀୟ ଜନସଂଘର ଆମେ ଚାରିଜଣଯାକ ସଦସ୍ୟ ପ୍ରଥମ ଥର ଲାଗି ଲୋକସଭାକୁ ଆସିଥିଲୁଁ । ଆମ ଭିତରୁ କେହି ପୂର୍ବରୁ ବିଧାନସଭାର ସଭ୍ୟ ମଧ୍ୟ ନ ଥିଲେ । ବୈଧାନିକ କାର୍ଯ୍ୟରେ ଆମେ ସମସ୍ତେ ନୂଆ । ଆମ ନିଜର କୌଣସି ପୂର୍ବ ଅଭିଜ୍ଞତା ନ ଥିଲା କି ଆମକୁ ସେ କ୍ଷେତ୍ରରେ ସହାୟତା କରିବାପାଇଁ କୌଣସି ଅଭିଜ୍ଞ

ସଦସ୍ୟ ବି ଉପଲବ୍ଧ ନ ଥିଲେ । ଆମେ ସଂଖ୍ୟାରେ ବହୁତ କମ୍ ଥିବା ଦୃଷ୍ଟିରୁ ଆମ ସମସ୍ତଙ୍କୁ ପଛ ବେଞ୍ଚରେ ହିଁ ସ୍ଥାନ ମିଳିଥିଲା । ଲୋକସଭା ଅଧ୍ୟକ୍ଷ (ବାଚସ୍ପତି)ଙ୍କ ଦୃଷ୍ଟି ଆକର୍ଷଣ କରିବା ଆମ ପକ୍ଷରେ ବହୁତ ମୁସ୍କିଲ ଥିଲା । ବିଭିନ୍ନ ବିଷୟର ଆଲୋଚନା ବେଳେ ସେଥିରେ ଭାଗ ନେବାପାଇଁ ପାର୍ଟିଗୁଡ଼ିକର ସଂଖ୍ୟାବଳ ଅନୁସାରେ ହିଁ ସମୟ ମିଳିଥାଏ । ଛୋଟ ଛୋଟ ଦଳର ସଦସ୍ୟମାନଙ୍କୁ କହିବାପାଇଁ ପୂର୍ବରୁ ସମୟ ମିଳୁ ନ ଥିଲା, ଏବେ ବି ମିଳୁ ନାହିଁ ।

ଦେଶର ବହିର୍ବ୍ୟାପାର ବା ବିଦେଶ- ନୀତି ମୋର ପ୍ରିୟ ବିଷୟ ଥିଲା । ଅନ୍ତଃରାଷ୍ଟ୍ରୀୟ ପରିସ୍ଥିତି ଉପରେ ଆଲୋଚନା ସେ ସମୟରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଘଟଣା ଥିଲା । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ନିଜେ ବିଦେଶ ବିଭାଗ ମନ୍ତ୍ରୀ ମଧ୍ୟ ଥିଲେ । ବିଦେଶ ମନ୍ତ୍ରଣାଳୟ ସଂକ୍ରାନ୍ତ ବ୍ୟୟଦାବୀ ଉପରେ ଯେତେବେଳେ ଚର୍ଚ୍ଚା ହେଉଥିଲା, ଦର୍ଶକ ଗ୍ୟାଲେରୀରେ ଭାରି ଭିଡ଼ ହେଉଥିଲା । କୁଟନୀତିଜ୍ଞମାନଙ୍କ କକ୍ଷରେ ବସିବାକୁ ସ୍ଥାନ ମିଳୁ ନ ଥିଲା । କମ୍ୟୁନିଷ୍ଟ ପାର୍ଟି ମୁଖ୍ୟ ବିରୋଧୀ ଦଳ ହୋଇଥିବା ଦୃଷ୍ଟିରୁ ଏ ଦଳର ନେତା ଆନ୍ତର୍ଜାତିକ ପରିସ୍ଥିତି ଓ ସେ ସମ୍ବନ୍ଧରେ ଭାରତର ନୀତି ଉପରେ ଆଲୋଚନା ଆରମ୍ଭ କରୁଥିଲେ । ପ୍ରଜାସମାଜବାଦୀ ଦଳ ପକ୍ଷରୁ ନିଜର ବକ୍ତବ୍ୟ ଉପସ୍ଥାପନ କରାଯାଉଥିଲା । କିନ୍ତୁ ଭାରତୀୟ ଜନସଂଘର ବକ୍ତବ୍ୟ ପ୍ରକାଶ କରିବା ଲାଗି ସମୟ ପାଇବାରେ ବଡ଼ ଅସୁବିଧା ହେଉଥିଲା । ପାର୍ଟିର ଭାଗରେ . ବଡ଼ କଷ୍ଟରେ ଦୁଇ-ଚାରି ମିନିଟ୍ ସମୟ ପଡୁଥିଲା । ଥରେ ଆମକୁ ସମୟ ନ ମିଳିବାର ପ୍ରତିବାଦରେ ମୋତେ କକ୍ଷତ୍ୟାଗ କରିବାକୁ ପଡ଼ିଥିଲା । ତେବେ ତା'ରି ଭିତରେ ଯେତେବେଳେ ଯେତିକି ସମୟ ଆମକୁ ମିଳୁଥିଲା, ଆମେ ତାର ପୂରା ଫାଇଦା ଉଠାଇବାପାଇଁ ପ୍ରୟାସ କରୁଥିଲୁଁ ।.

**।। ବିଦେଶ-ନୀତି ଉପରେ ପ୍ରଥମ ଭାଷଣ ।।**

ବିଦେଶ-ନୀତି ଉପରେ ମୁଁ ମୋର ପ୍ରଥମ ଭାଷଣରେ ହିଁ ଗୃହର ଦୃଷ୍ଟି ଆକର୍ଷଣ କରିଥିଲି । ସଦନରେ ସେତେବେଳେ ଇଂରାଜୀ ଭାଷାର ପ୍ରାଧାନ୍ୟ ରହିଥିଲା । ବିଶେଷ କରି ବିଦେଶ-ନୀତି ଉପରେ ପ୍ରାୟ ସବୁ ଭାଷଣ ଇଂରାଜୀରେ ଦିଆଯାଉଥିଲା । ସମାଜବାଦୀ ଦଳର ଶ୍ରୀ ବ୍ରଜରାଜ ସିଂହ ଅବଶ୍ୟ କେବଳ ହିନ୍ଦୀରେ ହିଁ ଭାଷଣ ଦେଉଥିଲେ । ମୋର ପ୍ରାଞ୍ଜଳ ହିନ୍ଦୀ ଭାଷଣ ଓ ଧାରାପ୍ରବାହ-ଶୈଳୀ ସଦସ୍ୟମାନଙ୍କର ପସନ୍ଦ ହୋଇଥିଲା । ୧୯୫୮ ଅଗଷ୍ଟ ୨୦ ତାରିଖ ଦିନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ବିଦେଶ-ନୀତି ସମ୍ବନ୍ଧୀୟ ଆଲୋଚନାର ଉତ୍ତର ଦେବାକୁ ଯାଇ ନିଜର ଇଂରାଜୀ ଭାଷଣ ଶେଷ କରିବା ପରେ ହିନ୍ଦୀରେ କିଛି କହିବା ଲାଗି ଅଧ୍ୟକ୍ଷଙ୍କର ଅନୁମତି ମାଗିଲେ । ସଦସ୍ୟମାନେ ତାଳି ମାରି ଏହାକୁ ସ୍ୱାଗତ କଲେ । ନେହେରୁଜୀ ଯେତେବେଳେ ମୋର ନାମ ଉଲ୍ଲେଖ କରି ହିନ୍ଦୀରେ କହିବାକୁ ଆରମ୍ଭ କଲେ, ସଦସ୍ୟମାନେ ଆନନ୍ଦ ପ୍ରକାଶ

କରି ପୁଣି ତାଳି ଦେଉଥିଲେ। ପଣ୍ଡିତ ନେହେରୁଙ୍କର ସେ ଭାଷଣ ନିମ୍ନୋକ୍ତ ମର୍ମରେ ଥିଲା:

॥ ପଣ୍ଡିତ ନେହେରୁଙ୍କ ପ୍ରଶଂସା ॥

''କାଲି ବହୁ ମାନ୍ୟବର ସଦସ୍ୟ ଯେଉଁ ଭାଷଣ ସବୁ ଦେଉଥିଲେ, ତନ୍ମଧ୍ୟରେ ଶ୍ରୀ ଅଟଳବିହାରୀ ବାଜପେୟୀଙ୍କର ମଧ୍ୟ ଏକ ଭାଷଣ ଥିଲା। ଆମର ବିଦେଶ-ନୀତି ସମ୍ପର୍କରେ ତାଙ୍କର ବିଶ୍ଳେଷଣ ସ୍ୱାଗତଯୋଗ୍ୟ। ମୋଟାମୋଟି ଭାବରେ ଆମର ଏ ନୀତିର ଔଚିତ୍ୟକୁ ସେ ସ୍ୱୀକାର କରିଥିବାରୁ ମୁଁ ଆନନ୍ଦିତ। ସେ ତାଙ୍କ ଭାଷଣରେ ଆଉ ଗୋଟିଏ ଭଲ କଥା ମଧ୍ୟ କହିଥିଲେ। ସେ କହିଥିଲେ ଯେ, କହିବାପାଇଁ ବାଣୀର ଆବଶ୍ୟକତା ରହିଛି; କିନ୍ତୁ ଚୁପ୍ ରହିବାପାଇଁ ବାଣୀ ଓ ବିବେକ ଉଭୟ ଆବଶ୍ୟକ। ଏ କଥା ସହିତ ମୁଁ ସମ୍ପୂର୍ଣ୍ଣ ସହମତ। ଆଉ ଗୋଟିଏ କଥା ଶ୍ରୀ ବାଜପେୟୀ କହିଥିଲେ, ଆଚାର୍ଯ୍ୟ କୃପାଲନୀ ମଧ୍ୟ ସେ ନେଇ କିଛି ଆଲୋଚନା କରିଥିଲେ ଯେ ଯେଉଁ ଶିଖର ସମ୍ମିଳନୀର ଚର୍ଚ୍ଚା ହେଲା ଏବଂ ଏହାର ଯେଉଁ ଜବାବ ଆମେ ଜଲ୍‌ଦି ଦେଲୁ, ତଦ୍ୱାରା କିଛି ଲୋକଙ୍କର ଧାରଣା ହେଲା ଯେ ଆମେ ବହୁତ ଲାଳାୟିତ ଥିଲୁଁ ସେଠାକୁ ଯିବାପାଇଁ, ସେଥିରେ ଭାଗ ନେବାପାଇଁ। କିନ୍ତୁ ପ୍ରକୃତ ପରିସ୍ଥିତି କ'ଣ କିପରି ଥିଲା, ତାହା ମୁଁ ମାନ୍ୟବର ସଦସ୍ୟମାନଙ୍କୁ ଜଣାଇ ଦେବାକୁ ଚାହେଁ। କୋରିଆ ବ୍ୟାପାରରେ ଆଉ ଇଣ୍ଡୋଚୀନ ବ୍ୟାପାରରେ ଆମେ ଏଇଥିପାଇଁ ସମ୍ପୃକ୍ତ ହେଲୁଁ- ସେ ସମ୍ମିଳନୀରେ ଯୋଗ ଦେବାପାଇଁ ମନା କରିବା ଆମ ପକ୍ଷରେ ଏକ ପ୍ରକାର ଅସମ୍ଭବ ହୋଇ ପଡ଼ିଥିଲା। କାରଣ ସବୁ ପକ୍ଷ ସେଠାରେ ଆମର ଉପସ୍ଥିତି ଚାହୁଁଥିଲେ। ସେଇଥିପାଇଁ ଆମେ କୋରିଆ ଗଲୁଁ, ସେଇଥିପାଇଁ ଆମେ ଇଣ୍ଡୋଚୀନ ଗଲୁଁ।''

॥ ଚୁମ୍ବକୀୟ ଭାଷଣ-କ୍ଷମତା ॥

କାଳକ୍ରମେ ଅଟଳଜୀ ସଂସଦ ସଦସ୍ୟ ରୂପେ ଜଣେ ମୁଖର ଅଥଚ ସଂଯତ ବକ୍ତା ରୂପେ ପରିଚିତ ହେଲେ। ସଂସଦରେ ଜନସଂଘର ମାତ୍ର ଚାରିଜଣ ସଦସ୍ୟ ରହିଥିଲେ। ସେମାନଙ୍କର ସକ୍ରିୟ ଯୋଗଦାନ ଯୋଗୁ ସେମାନେ ଯଥେଷ୍ଟ ପ୍ରଭାବ ସୃଷ୍ଟି କରି ପାରୁଥିଲେ। ବିଶେଷ କରି ଅଟଳଜୀଙ୍କ ଭାଷଣ ଓ ମତାମତକୁ ଅନ୍ୟ ଦଳର ସଦସ୍ୟମାନେ ଯଥେଷ୍ଟ ଗୁରୁତ୍ୱ ଦେଉଥିଲେ। ନିଜେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ତାଙ୍କ ଭାଷଣକୁ ଗମ୍ଭୀରତା ସହକାରେ ଧ୍ୟାନ ଦେଇ ଶୁଣୁଥିଲେ। ବିଶେଷତଃ ଭାରତ ବୈଦେଶିକ ନୀତି ଉପରେ ତାଙ୍କର ବିଶ୍ଳେଷଣାତ୍ମକ ମତାମତକୁ ସବୁ ଦଳର ସଦସ୍ୟମାନେ ପସନ୍ଦ କରୁଥିଲେ। ଏପରିକି ତାଙ୍କର ଭାଷଣ ଶୁଣିବାପାଇଁ ସେମାନେ ସ୍ୱତନ୍ତ୍ରଭାବେ ପ୍ରଯତ୍ନ କରିବାର ଲକ୍ଷ୍ୟ କରାଯାଉଥିଲା। ତର୍କପୂର୍ଣ୍ଣ ଓ ବିଶ୍ଳେଷଣାତ୍ମକ ରୀତିରେ ଭାଷଣ ଦେବାରେ ତାଙ୍କର ଏକ ଚୁମ୍ବକୀୟ କ୍ଷମତା ରହିଥିଲା।

ପ୍ରଥମ ସାଂସଦରୂପେ ଅଟଳଜୀଙ୍କଦ୍ୱାରା ସେତେବେଳେ ପ୍ରଦତ୍ତ କେତେକ ଭାଷଣର କିଛି ଅଂଶ ପାଠ କରିବାପାଇଁ ପାଠକମାନେ ଉତ୍ସୁକ ହେବା ସ୍ୱାଭାବିକ। ସୁତରାଂ ଏଠାରେ ତାଙ୍କର କେତେକ ମହତ୍ତ୍ୱପୂର୍ଣ୍ଣ ଭାଷଣର ଅଂଶବିଶେଷ ଉଦ୍ଧାର କରାଯାଉଛି।

॥ ଆମେ ବନ୍ଧୁହୀନ ହୋଇ ପଡୁଛୁ ॥

ଭାରତର ବିଦେଶ ନୀତି ସମ୍ବନ୍ଧରେ ଏକ ସଂଶୋଧନ ପ୍ରସ୍ତାବର ଆଲୋଚନା ପ୍ରସଙ୍ଗରେ ୧୯୫୭ ଡିସେମ୍ବର ୨ ତାରିଖ ଦିନ ଅଟଳଜୀ କହିଥିଲେ: "ଅଧ୍ୟକ୍ଷ ମହୋଦୟ, ଏ କଥା ଅସ୍ୱୀକାର କରାଯାଇ ପାରିବ ନାହିଁ ଯେ ଗତ ଦଶ ବର୍ଷ ହେଲା ଆମେ ଯେଉଁ ବିଦେଶ ନୀତିକୁ ଅନୁସରଣ କରି ଆସୁଛୁ, ସେଥିଯୋଗୁ ଦୁନିଆରେ ଭାରତର ପ୍ରତିଷ୍ଠା ବଢ଼ିଛି। ଆମର ପ୍ରଧାନମନ୍ତ୍ରୀ ଯେତେବେଳେ ଯେଉଁଠାକୁ ଯାଉଛନ୍ତି, ସେଠାରେ କୋଟି କୋଟି ଲୋକ ତାଙ୍କୁ ସମ୍ମାନ ଜଣାଉଛନ୍ତି। ତାଙ୍କୁ "ଶାନ୍ତିର ଦେବଦୂତ" ବୋଲି କହି ସ୍ୱାଗତ କରାଯାଉଛି। ଯେତେବେଳେ ତାଙ୍କୁ ଏହି ପ୍ରକାର ସମ୍ମାନ କରାଯାଉଛି, ତାହା ପ୍ରତ୍ୟେକ ଭାରତୀୟଙ୍କୁ, ସେ ଯେଉଁ ଦଳର ହୁଅନ୍ତୁ ନା କାହିଁକି, ସମସ୍ତଙ୍କୁ ଆନନ୍ଦିତ କରୁଛି।

କିନ୍ତୁ ମୋର କ୍ଷୋଭ ହେଉଛି, ଯେଉଁ ଅନୁପାତରେ ଆମର ଆନ୍ତର୍ଜାତିକ ପ୍ରତିଷ୍ଠା ବଢ଼ିଛି, ବୋଧହୁଏ ସେହି ଅନୁପାତରେ ଆମର ଅନ୍ତଃରାଷ୍ଟ୍ରୀୟ ଅସୁବିଧା ବି ବଢ଼ି ଯାଉଛି। ଯଦି ଆମେ ନିଜ ଦେଶର ସମସ୍ୟା ସମୂହ ଉପରେ ବିଚାର କରୁଁ, ସେତେବେଳେ ଦେଖିବାକୁ ପାଉଁ ଯେ, ଆମର ସମସ୍ୟା ସବୁ ଅଧିକରୁ ଅଧିକ ଉତ୍କଟ ହେବାରେ ଲାଗିଛି। କାଶ୍ମୀର ପ୍ରଶ୍ନ ନିଅନ୍ତୁ ଅବା ଗୋଆର ପ୍ରଶ୍ନ ଅଥବା ବିଦେଶରେ ଥିବା ଭାରତୀୟମାନଙ୍କର ସମସ୍ୟା... ଆମ ପ୍ରଧାନମନ୍ତ୍ରୀ ମହୋଦୟଙ୍କ ପ୍ରତିଷ୍ଠା, ତାଙ୍କର ମାନ-ସମ୍ମାନ ଏହିସବୁ ସମସ୍ୟାଗୁଡ଼ିକୁ ଯେତିକି ସହାୟକ ହେବା କଥା, ତାହା ଏପର୍ଯ୍ୟନ୍ତ ହୋଇ ନାହିଁ। ମନେ ହେଉଛି, ଆମେ ଯେପରି କ୍ରମଶଃ ବନ୍ଧୁହୀନ ହୋଇ ପଡ଼ୁଛୁ।"

॥ କ୍ଷତର ବ୍ୟଥା ॥

୧୯୫୭ ମେ' ମାସ ୧୫ ତାରିଖରେ ରାଷ୍ଟ୍ରପତିଙ୍କ ଅଭିଭାଷଣ ଉପରେ ଆସିଥିବା ଧନ୍ୟବାଦ ପ୍ରସ୍ତାବ ସଂକ୍ରାନ୍ତ ବିତର୍କରେ ଭାଗ ନେଇ ଅଟଳଜୀ କହିଥିଲେ : "ଡଃ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ବିଷୟ ମୋ ସ୍ମରଣକୁ ଆସିଲେ ମୋ ମନରେ ସ୍ୱତଃ କାଶ୍ମୀର ପ୍ରଶ୍ନ ଆସିଯାଉଛି। ଶ୍ରୀନଗରର ସେହି ସରକାରୀ ଡ଼ାକ୍ତରଖାନା ମଧ୍ୟ ସ୍ମରଣକୁ ଆସିଯାଉଛି, ଯାହାର ଗୋଟିଏ କୋଣରେ ପୋଲିସ ପହରା ମଧ୍ୟରେ ଆଉ ଡଃ ମୁଖାର୍ଜୀଙ୍କୁ ଦେଶର ଏକତା ରକ୍ଷା ପାଇଁ ନିଜ ଜୀବନକୁ ବଳି ଦେବାକୁ ପଡ଼ିଥିଲା। ତାଙ୍କ ମୃତ୍ୟୁର ଚାରି ବର୍ଷ ବିତିଗଲାଣି, କିନ୍ତୁ ତା'ଉପରେ ଯେଉଁ ରହସ୍ୟର ପର୍ଦ୍ଦା ପଡ଼ିଥିଲା, ତାହା ଏବେ ମଧ୍ୟ ଅପସାରିତ ହୋଇ ନାହିଁ। ସେଦିନର ସେ ଘଟଣା ଦେଶବାସୀଙ୍କ ମନରେ ଯେଉଁ କ୍ଷତ ସୃଷ୍ଟି କରିଥିଲା, ସମୟର ପ୍ରଭାବରେ ତାହା ଶୁଖିଯାଇଛି ସିନା;

କିନ୍ତୁ ସେ କ୍ଷତର ବ୍ୟଥା ଏବେ ବି ରହିଛି । ଆଜିକାଲି ଯେତେବେଳେ ପ୍ରଧାନମନ୍ତ୍ରୀ ମହୋଦୟ ବା ରକ୍ଷାମନ୍ତ୍ରୀ ମହୋଦୟ କାଶ୍ମୀର ସମସ୍ୟା ସଂକ୍ରାନ୍ତରେ ସେହି ବିଷୟ ଦୋହରାଉଛନ୍ତି, ଯାହାକି ସ୍ୱର୍ଗତ ଶ୍ୟାମାପ୍ରସାଦ ଚାରି ବର୍ଷ ପୂର୍ବେ ଏହି ଗୃହରେ ଠିଆ ହୋଇ କହୁଥିଲେ, ମୋର ମନେହୁଏ ଯଦି ମୂଳରୁ କାଶ୍ମୀର ପ୍ରଶ୍ନ ଉପରେ ସେହି ନୀତି ଅନୁସରଣ କରାଯାଇଥାନ୍ତା ତେବେ ଆମକୁ ଶ୍ୟାମାପ୍ରସାଦ ମୁଖାର୍ଜୀଙ୍କ ମହାନ୍ ଜୀବନର ମୂଲ୍ୟ ଦେବାକୁ ପଡ଼ି ନ ଥାନ୍ତା ।''

**॥ ଶ୍ମଶାନର ଶାନ୍ତି ନୁହେଁ, ଲୋଡ଼ା ଜୀବନର ଶାନ୍ତି ॥**

''କିଛି ଦିନ ତଳେ ପ୍ରଧାନମନ୍ତ୍ରୀ କହିଥିଲେ ଯେ, ଯଦି ଦୁଇଟି କଥା ମାନି ନିଆଯାଏ- ଏକରେ ପାକିସ୍ଥାନ ଆକ୍ରମଣକାରୀ ଆଉ ଦୁଇରେ ଏକ-ତୃତୀୟାଂଶ ଭୂଭାଗ ଭାରତର- ତେବେ ଆମେ ପାକିସ୍ଥାନ ସହ କଥାବାର୍ତ୍ତା କରିବାକୁ ପ୍ରସ୍ତୁତ । ଯଦି ଏ ଦୁଇଟି କଥା ମାନି ନିଆଯାଏ, ତେବେ ତ କଥାବାର୍ତ୍ତା କରିବାକୁ ଆଉ କିଛି ବି ବାକି ରହିବ ନାହିଁ । ଯଦି କୌଣସି କଥାବାର୍ତ୍ତା ହୁଏ, ତେବେ କେବଳ ପାକିସ୍ଥାନକୁ ପଚରାଯିବା ଉଚିତ କି କାଶ୍ମୀରର ଏକ-ତୃତୀୟାଂଶ ଭୂଭାଗରୁ ନିଜର ଗଣ୍ଠିଲି-ପତ୍ର ବାନ୍ଧି ସେ କେବେ ଯିବାପାଇଁ ପ୍ରସ୍ତୁତ ହେବ ? କିନ୍ତୁ ଏ ପ୍ରକାର କଥା ସେ ମାନିଯିବାର କୌଣସି ସଙ୍କେତ ମିଳୁନାହିଁ । ଯେଉଁ ଭୂଭାଗ ପାକିସ୍ଥାନ ଦଖଲରେ ଅଛି, ତାକୁ ଛାଡ଼ିବା ତ ଦୂରର କଥା, ଯେଉଁ ଅଂଶ ଭାରତରେ ଅଛି, ତା' ଉପରେ ମଧ୍ୟ ପାକିସ୍ଥନ ଦାନ୍ତ ଲଗାଉଛି ଏବଂ ବରାବର ଯୁଦ୍ଧର ପ୍ରସ୍ତୁତି ଚଳାଇଥିବାର ଲକ୍ଷ୍ୟ କରାଯାଉଛି । ମାର୍କିନ୍ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ପାକିସ୍ଥାନ ଏବେ ଭାରତର ସ୍ୱାଧୀନତା ଓ ସୁରକ୍ଷାପାଇଁ ସଙ୍କଟ ସୃଷ୍ଟି କରିବାରେ ଲାଗିଛି । ମୁଁ ଯୁଦ୍ଧଖୋର ନୁହେଁ । ମୁଁ ମଧ୍ୟ ଶାନ୍ତିର ସମର୍ଥକ । କିନ୍ତୁ ଶ୍ମଶାନ ବା ଶବର ଶାନ୍ତି ନୁହେଁ, ମୁଁ ଚାହେଁ ଜୀବନର ଶାନ୍ତି ।''
(୧୯୫୮ରେ ପ୍ରଦତ୍ତ ଏକ ଭାଷଣରୁ ଉଦ୍ଧୃତ)

**॥ ଯୋଜନାର ତ୍ରୁଟୀ ॥**

ଦେଶର ପଞ୍ଚବାର୍ଷିକ ଯୋଜନା ସମ୍ବନ୍ଧରେ ୧୯୫୭-୫୮ର ସାଧାରଣ ବଜେଟ ସଂକ୍ରାନ୍ତ ବିତର୍କରେ ଭାଗ ନେଇ ଅଟଳଜୀ ତାଙ୍କ ଭାଷଣରେ କହିଥିଲେ : ''ଯୋଜନା ସମ୍ବନ୍ଧରେ ଜନସାଧାରଣଙ୍କ ମନରେ ଯଥେଷ୍ଟ ଆଗ୍ରହ ଓ ଉତ୍ସାହ ନ ରହିବାର ଏକ ବଡ଼ କାରଣ ଏହି ଯୋଜନାକୁ ବସ୍ତୁତଃ ଦଳୀୟ ଆଧାର ବା ଭିତ୍ତିରେହିଁ ପରିଚାଳନା କରାଯାଉଛି; ଏହା ଏକ ରାଷ୍ଟ୍ରୀୟ ନିୟୋଜନ ନୁହେଁ । ତା'ଛଡ଼ା ଏ ଯୋଜନା ସମ୍ବନ୍ଧରେ ମୋର ମୂଳ ଆପତ୍ତି ହେଉଛି, ଏହା ଏକ ପୁଞ୍ଜି-ପ୍ରଧାନ ଯୋଜନା । କିନ୍ତୁ ଏହା ଏକ ଶ୍ରମ-ପ୍ରଧାନ ଯୋଜନା ହେବା ଆବଶ୍ୟକ । ଜନବଳହିଁ ଆମର ସବୁଠାରୁ ବଡ଼ ପୁଞ୍ଜି ।

କିନ୍ତୁ କ୍ଷୋଭର ବିଷୟ ହେଉଛି, ଏପରି ଭାବରେ ଏ ଯୋଜନା ପ୍ରସ୍ତୁତ କରାଯାଇଛି ଯେଉଁଥିରେ କି ଦେଶର ଜନବଳ ଉପରେ କମ୍ ଧ୍ୟାନ ଦିଆଯାଇଛି ପୁଞ୍ଜି ଉପରେ ଅଧିକ ଜୋର ଦିଆଯାଇଛି ।

ନିର୍ବାଚନ ସମୟରେ ମୁଁ ଦେଖିବାକୁ ପାଇଥିଲି ଯେ, ଦେବରିଆ ଜିଲ୍ଲାର ଏକ ସ୍ଥାନରେ କେବଳ ସେହିମାନଙ୍କୁ ସରକାରୀ ଗୋଲାରୁ ଖାଦ୍ୟଶସ୍ୟ ମିଳୁଥିଲା, ଯେଉଁମାନେ କଂଗ୍ରେସୀ ମନ୍ତ୍ରୀଙ୍କ ଠାରୁ ଚିଠା ତଥା 'ଯୋଡ଼ି ବଳଦ' (ନିର୍ବାଚନ ଚିହ୍ନ) ପାର୍ଚ୍ଚା ନେଇ ସେଠାକୁ ଯାଉଥିଲେ । ସରକାରୀ ଗୋଲା କେଉଁଠି ଖୋଲାଯିବ, ତାହା ମଧ୍ୟ ଦଳୀୟ ଦୃଷ୍ଟିରୁ ସ୍ଥିର କରାଯାଉଛି ।''

**।। ପାକିସ୍ଥାନ ପ୍ରତି ଭାରତର ଆଭିମୁଖ୍ୟ ।।**

ପାକିସ୍ତାନ ସମ୍ବନ୍ଧରେ ଭାରତର ଦୁର୍ବଳ ନୀତି ଓ ଆଭିମୁଖ୍ୟକୁ ଅଟଳଜୀ ବରାବର କଡ଼ା ଭାଷାରେ ସମାଲୋଚନା କରୁଥିଲେ । ୧୯୫୮ ମସିହା ଅଗଷ୍ଟ ୧୯ତାରିଖରେ ଏକ ଧ୍ୟାନ ଆକର୍ଷଣ ପ୍ରସ୍ତାବରେ ସେ କହିଥିଲେ :

''ମୁଁ ଆମ ସରକାରକୁ କହିବାକୁ ଚାହେଁ ଯେ ଆମ ଦେଶର ପୂର୍ବ ସୀମାନ୍ତରେ ସୀମା ଲଂଘନର ଯେଉଁ ସବୁ ଘଟଣା ଘଟୁଛି, ପାକିସ୍ଥାନୀ ସୈନ୍ୟମାନେ ଆମ ଇଲାକା ମଧ୍ୟକୁ ଯେପରି ଅନୁପ୍ରବେଶ କରୁଛନ୍ତି, ରାତିଦିନ ଯେପରି ଗୁଳିବର୍ଷଣ କରୁଛନ୍ତି, ଏସବୁ ଘଟଣାକୁ ଯଥେଷ୍ଟ ଗମ୍ଭୀର ଦୃଷ୍ଟିରେ ଦେଖିବା ଏକାନ୍ତ ଆବଶ୍ୟକ । ସେମାନେ ଆମ ଦେଶର ପ୍ରତି ଇଞ୍ଚ ଭୂମିକୁ ଖାଲି କରିବା ଦରକାର । ସେମାନେ ପୂର୍ବ ସୀମାନ୍ତରେ ସତକୁ ସତ ଶାନ୍ତି ଚାହାନ୍ତି ବୋଲି ଆମକୁ ଦୃଢ଼ ପ୍ରତିଶ୍ରୁତି ତଥା ତାର ପ୍ରମାଣ ମଧ୍ୟ ଦେବା ଦରକାର । କିନ୍ତୁ ସେମାନଙ୍କର ଆଚରଣ ଦେଖି ବେଳେବେଳେ ମୋର ତ ମନେ ହେଉଛି, ସେମାନେ ଯେଉଁ ଭାଷା ବୁଝନ୍ତି, ସେ ଭାଷାରେ ଆମେ ସେମାନଙ୍କ ସହିତ କଥାବାର୍ତ୍ତା କରୁନାହୁଁ । ଆମେ ଯେଉଁ ଭାଷାରେ କହୁଛୁଁ, ତାହା ହୁଏତ ଆମ ଦୃଷ୍ଟିରୁ ଠିକ୍, କିନ୍ତୁ ପାକିସ୍ଥାନ ତାହା ବୁଝି ପାରୁନାହିଁ । ତେଣୁ ତାକୁ ଠିକଣା ଜବାବ ଦିଆଯିବା ଆବଶ୍ୟକ ।''

**।। ଯୌତୁକ-ଦାନବକୁ ଖତମ କର ।।**

ବହୁକାଳ ଧରି ଆମ ଦେଶରେ ଯୌତୁକ-ଦାନବର ଅତ୍ୟାଚାରରେ କେତେ ଯେ ତରୁଣୀ ପ୍ରାଣ ଦେଲେଣି, ତାର ଇୟତ୍ତା ନାହିଁ । ପ୍ରାୟ ପ୍ରତିଦିନ ସେମାନେ ଯୌତୁକ ଜୁଇରେ ଜଳିବାର ଦୃଶ୍ୟ ଦେଖିବାକୁ ମିଳୁଛି ଆମକୁ । ଏଥିଲାଗି ଆମ ସମାଜରେ ମଧ୍ୟ ନାନା ସମସ୍ୟାର ଉତ୍‌ଥାନ ହେଉଛି । ତା'ସତ୍ତ୍ୱେ ଏ ପର୍ଯ୍ୟନ୍ତ ତାର କିଛି ପ୍ରତିକାର ହୋଇ ପାରିନାହିଁ । ଯୌତୁକ ନିରୋଧ ଆଇନ ମଧ୍ୟ ଫଳପ୍ରଦ ହୋଇ ପାରୁନାହିଁ । ଏବେ ବି ଏହି ଯୌତୁକ ପ୍ରଥା ଆମ ସମାଜର ଏକ କଳଙ୍କ ହୋଇ ରହିଛି ।

ଏହି ସମସ୍ୟା ସଂପର୍କରେ ବିଚାର କରିବା ଲାଗି ୧୯୬୧ମସିହା ମେ ମାସ ୬ତାରିଖରେ ସଂସଦର ଉଭୟ ଗୃହ-ଲୋକସଭା ଓ ରାଜ୍ୟସଭାର ଏକ ମିଳିତ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଦଳମତ–ନିର୍ବିଶେଷରେ ସଂସଦର ସମସ୍ତ ସଦସ୍ୟ ଏକ ସ୍ୱରରେ କହିଥିଲେ ଯେ, ଯୌତୁକ ଦାନବକୁ ଖତମ କରିବା ଲାଗି କଠୋର ଆଇନ ପ୍ରଣୟନ କରାଯାଉ । ଅଟଳଜୀ ଏହି ବିତର୍କରେ ଭାଗ ନେଇ ପ୍ରକୃତରେ ଏହି କଳଙ୍କକୁ ଖତମ କରାଯାଇ ପାରିଲା ଭଳି କେତେକ ପ୍ରସ୍ତାବ ଦେଇଥିଲେ । କିନ୍ତୁ ସେଥିପାଇଁ ସରକାରଙ୍କର ଆନ୍ତରିକତା ନଥିବାରୁ ତାହା ଗୃହିତ ହୋଇ ପାରି ନଥିଲା ।

ଆଲୋଚନା କାଳରେ କେତେକ ସଭ୍ୟ ଦର୍ଶାଇଥିଲେ ଯେ ଯଦି ନିଜ କନ୍ୟାର ବିବାହରେ କୌଣସି ବ୍ୟକ୍ତି ନିଜ ଇଚ୍ଛାରେ କିଛି ଧନ, ଅଳଙ୍କାର ଓ ବ୍ୟବହାର୍ଯ୍ୟ ସାମଗ୍ରୀ ଉପହାର ସ୍ୱରୂପ ଦିଅନ୍ତି, ତେବେ ଏହାକୁ କିପରି ବା ରୋକାଯାଇ ପାରିବ ? ଏ ସଂକ୍ରାନ୍ତରେ ଅଟଳଜୀ ପ୍ରସ୍ତାବ ଦେଇଥିଲେ ଯେ, ବିବାହ କାଳରେ କନ୍ୟାର ମାତା-ପିତାଙ୍କ ପକ୍ଷରୁ ଦୁଇ ହଜାର ଟଙ୍କାରୁ ଅଧିକ ମୂଲ୍ୟର ଯୌତୁକ ସାମଗ୍ରୀ ଦିଆଯାଇ ପାରିବ ନାହିଁ ବୋଲି ଆଇନରେ କଠୋର ବ୍ୟବସ୍ଥା ରଖାଯାଉ । (ଆଜିକୁ ୩୬-୩୭ ବର୍ଷ ତଳେ ଦୁଇ ହଜାର ଟଙ୍କାର ମୂଲ୍ୟ କିଛି କମ୍ ନଥିଲା) କିନ୍ତୁ ତାଙ୍କର ଏହି ସଂଶୋଧନ ପ୍ରସ୍ତାବ ଗୃହିତ ହେଲାନାହିଁ । ଯଦି ତାହା ହୋଇଥାନ୍ତା, ତେବେ ଯୌତୁକ ଦାନବର ଅତ୍ୟାଚାର ଆଜି ଏତେ ଉତ୍କଟ ହୋଇ ନଥାନ୍ତା ! କଂଗ୍ରେସ ତଥା ଅନ୍ୟାନ୍ୟ ଦଳର ନେତାମାନେ କେବଳ ମୁହଁର କଥାରେ ସିନା ଯୌତୁକ ପ୍ରଥାର ନିନ୍ଦା କରନ୍ତି; କିନ୍ତୁ ପ୍ରକୃତରେ ଏହାର ଅବସାନ ଘଟାଇବାକୁ ଚାହାନ୍ତି ନାହିଁ । କାରଣ ସେମାନେ ନିଜର ପୁତ୍ର-କନ୍ୟାମାନଙ୍କର ବଜାର ଭାଉକୁ ଶସ୍ତା କରିବା ପାଇଁ ପ୍ରସ୍ତୁତ ନୁହନ୍ତି । କନ୍ୟା ବିବାହରେ ଯୌତୁକ ଦେବା ପାଇଁ ପ୍ରଚୁର ଧନରାଶି ସଂଗ୍ରହ କରିବାର ସାମର୍ଥ୍ୟ ବି ସେମାନଙ୍କ ପାଖରେ ଯଥେଷ୍ଟ ଭାବରେ ରହି ଆସିଛି ।

ସେହି ବିତର୍କରେ ଅଂଶ ଗ୍ରହଣ କରି ଅଟଳଜୀ ଆହୁରି କେତେକ ଉପାଦେୟ ଓ ବୈପ୍ଳବିକ ପରାମର୍ଶ ମଧ୍ୟ ଦେଇଥିଲେ । ସେ କହିଥିଲେ: "କେବଳ ଆଇନ କରିଦେଲେ ଚଳିବ ନାହିଁ । ଯୌତୁକ ପ୍ରଥା ବିରୁଦ୍ଧରେ ବ୍ୟାପକ ଜନ ସଚେତନତା ସୃଷ୍ଟି କରାଯିବା ପାଇଁ ଆନ୍ତରିକତା ସହକାରେ ପଦକ୍ଷେପମାନ ନିଆଯିବା ଦରକାର, ଦେଶର ଆର୍ଥିକ ପ୍ରଗତି ଓ ଶିକ୍ଷାର ପ୍ରସାର ହେବା ଦରକାର, ଜାତି ପ୍ରଥାର ବନ୍ଧନ ଭାଙ୍ଗିବା ଏବଂ ପୁଅ-ଝିଅମାନେ ଯେପରି ନିଜ ଇଚ୍ଛା ଅନୁଯାୟୀ ଖୋଲାଖୋଲି ଭାବରେ ବିବାହ ବନ୍ଧନରେ ଆବଦ୍ଧ ହୋଇପାରିବେ, ସେଥିଲାଗି ଉପଯୁକ୍ତ ପରିବେଶ ସୃଷ୍ଟି କରାଯିବା ଆବଶ୍ୟକ । ତେବେ ଯାଇ ଯୌତୁକ ପ୍ରଥା ଖତମ ହୋଇପାରିବ ।"

## ।। ପ୍ରଥମ ବିଜୟ ପରେ ପ୍ରଥମ ପରାଜୟ ।।

୧୯୬୧ରେ ଅନୁଷ୍ଠିତ ତୃତୀୟ ଲୋକସଭାର ନିର୍ବାଚନରେ ଅଟଳଜୀ ପୁନରାୟ ବଳରାମପୁରରୁ ହିଁ ଜନସଂଘର ପ୍ରାର୍ଥୀ ହୋଇଥିଲେ । କିନ୍ତୁ କେତେକ ଷଡ଼ଯନ୍ତ୍ରମୂଳକ ଅପଚେଷ୍ଟା ଯୋଗୁଁ ବିଶେଷ କରି ଜନସଂଘକୁ ନେତୃତ୍ୱବିହୀନ କରି ତାର ଅଗ୍ରଗତିକୁ ଯେକୌଣସି ମତେ ରୋକିବାପାଇଁ କଂଗ୍ରେସୀ ଓ କମ୍ୟୁନିଷ୍ଟମାନଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମ ଫଳରେ ଅତି ଅଳ୍ପ ଭୋଟ ବ୍ୟବଧାନରେ ସେ ନିର୍ବାଚନ ହାରିଗଲେ । ଅଟଳଜୀ ସେତେବେଳେ ଜନସଂଘର ପ୍ରବକ୍ତା ଥିଲେ । ସେ ନିଜର ଭାଷଣ, ବିଚାରଧାରା ଓ ପ୍ରଚାର କ୍ଷମତା ବଳରେ ଜନସଂଘକୁ ଅଧିକରୁ ଅଧିକ ଲୋକପ୍ରିୟ କରାଇବାରେ ବିଶେଷ ଭୂମିକା ତୁଲାଉଥିଲେ । ଅନ୍ୟ ରାଜନୀତିକ ଦଳର ନେତାମାନେ ଏଥିଲାଗି ତାଙ୍କୁ ତଥା ତାଙ୍କ ଦଳକୁ ଈର୍ଷା କରୁଥିଲେ । ତେଣୁ ଛଳ ବଳ କୌଶଳ ସବୁ କିଛି ପ୍ରୟୋଗ କରି ତାଙ୍କୁ ହରାଇବାକୁ ସେମାନେ ଲାଗି ପଡ଼ିଥିଲେ । ଶେଷରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ମଧ୍ୟ ସେମାନେ ପ୍ରଚାରପାଇଁ ଏ ନିର୍ବାଚନମଣ୍ଡଳୀକୁ ଆଣିଥିଲେ । ଲୋକେ ଯେପରି ବେଶି ସଂଖ୍ୟାରେ ଭୋଟ ଦେବାକୁ ନ ଆସନ୍ତି, ସେଥିପାଇଁ ଭୋଟ ଗ୍ରହଣର ପୂର୍ବଦିନ ଲୋକଙ୍କ ମଧ୍ୟରେ ଆତଙ୍କ ସୃଷ୍ଟି ଉଦ୍ଦେଶ୍ୟରେ ସେମାନେ କେତେକ ହିଂସାକାଣ୍ଡ ମଧ୍ୟ ଭିଆଇଥିଲେ ।

## ।। ରଙ୍ଗ-ଭ୍ରମର ପରିଣାମ ।।

ସେମାନଙ୍କର ଏ ସବୁ ଅପଚେଷ୍ଟା ସତ୍ତ୍ୱେ ବି ଅଟଳଜୀ କଦାପି ହାରି ନ ଥାନ୍ତେ । ତାଙ୍କ ପରାଜୟର ସବୁଠାରୁ ବଡ଼ କାରଣ ଥିଲା ଲୋକସଭା ଏବଂ ବିଧାନସଭା ପାଇଁ ଏକକାଳୀନ ନିର୍ବାଚନରେ ବ୍ୟବହୃତ ହୋଇଥିବା ପୃଥକ୍ ପୃଥକ୍ ରଙ୍ଗର ଭୋଟ କାଗଜ ବା ବାଲଟ ପେପର୍ । ସେତେବେଳେ ବଳରାମପୁର ଲୋକସଭା ନିର୍ବାଚନମଣ୍ଡଳୀରେ ୫ଟି ବିଧାନସଭା ନିର୍ବାଚନମଣ୍ଡଳୀ ରହିଥିଲା । ଉଭୟ ନିର୍ବାଚନ ଏକା ସାଙ୍ଗରେ କରାଯାଇଥିଲା । ବିଧାନସଭା ନିର୍ବାଚନ ପାଇଁ ଗୋଲାପୀ ରଙ୍ଗର ମତପତ୍ର ଏବଂ ଲୋକସଭାପାଇଁ ଅନ୍ୟ ରଙ୍ଗର ମତପତ୍ର ରହିଥିଲା । କଂଗ୍ରେସ ଓ କମ୍ୟୁନିଷ୍ଟ ଦଳର ଲୋକେ ପ୍ରଚାର କରି ଦେଇଥିଲେ ଯେ, ଅଟଳଜୀଙ୍କ ମତପତ୍ରର ରଙ୍ଗ ହେଉଛି ଗୋଲାପୀ । ଏହାର ପରିଣାମରେ ଜନସଂଘର ସମର୍ଥକ ଥିବା ବହୁ ସଂଖ୍ୟକ ନିରକ୍ଷର ମତଦାତା ବିଧାନସଭା ତଥା ଲୋକସଭା ଉଭୟ ନିର୍ବାଚନ ନିମନ୍ତେ ମତପତ୍ରର 'ଦୀପ' ଚିହ୍ନରେ ହିଁ ମୋହର ଲଗାଇ ଦେଇଥିଲେ ।

ଏହା ବାସ୍ତବିକ୍ ଏକ ବିଚିତ୍ର ଘଟଣା ଥିଲା । ମତପତ୍ରର ରଙ୍ଗ-ଭ୍ରମ କାରଣରୁ ସେଥର ନିର୍ବାଚନରେ ବଳରାମପୁରର ୫ଟି ବିଧାନସଭା କ୍ଷେତ୍ର ମଧ୍ୟରୁ ଚାରୋଟିରେ ଜନସଂଘର ପ୍ରାର୍ଥୀମାନେ ବହୁ ଭୋଟରେ ନିର୍ବାଚିତ ହେଲେ ମଧ୍ୟ ଲୋକସଭା ନିର୍ବାଚନରେ

ଅଟଳଜୀ ମାତ୍ର ୧୦୫୨ଟି ଭୋଟରେ ହାରିଗଲେ। ଯେଉଁ ଗୋଟିଏ ବିଧାନସଭା ଆସନରୁ ଜନସଂଘ ପ୍ରାର୍ଥୀ ଜିତି ପାରି ନ ଥିଲେ, ସେଠାରେ ମାତ୍ର ୫୫ଟି ଭୋଟରେ ତାଙ୍କୁ ହାରିବାକୁ ପଡ଼ିଥିଲା।

ଏହି ନିର୍ବାଚନରେ ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କୁ ମଧ୍ୟ ଜୌନପୁର ଲୋକସଭା ଆସନରୁ ହାରିଯିବାକୁ ପଡ଼ିଥିଲା।

**।। ଚାରିରୁ ଚଉଦ ।।**

ସେ ଯାହା ହେଉ, ତୃତୀୟ ଲୋକସଭା ନିର୍ବାଚନରେ ଜନସଂଘର ସଫଳତା ବେଶ୍ ସନ୍ତୋଷଜନକ ଥିଲା। ଏହାର ମୋଟ ଭୋଟ ହାର ବଢ଼ିଥିଲା; ଲୋକସଭାରେ ଏହାର ସଦସ୍ୟ ସଂଖ୍ୟା ମଧ୍ୟ ୪ରୁ ୧୪କୁ ବୃଦ୍ଧି ପାଇଥିଲା। ଜନସଂଘର ଏହି ସଫଳତାରେ ଅନ୍ୟ ଦଳମାନେ ଆତଙ୍କିତ ହୋଇ ପଡ଼ିଥିଲେ।

ତୃତୀୟ ଲୋକସଭାରେ ବିରୋଧୀ ପକ୍ଷର ନେତାମାନଙ୍କ ମଧ୍ୟରେ ଆଚାର୍ଯ୍ୟ ଜେ.ବି. କୃପାଲନୀ, ଡଃ ରାମ ମନୋହର ଲୋହିଆ ଓ ଶ୍ରୀ ମିନୁ ମାସାନୀ ପ୍ରମୁଖ ରହିଥିଲେ। ତଥାପି ଅଟଳଜୀଙ୍କ ଭଳି ଜଣେ ସକ୍ରିୟ ପ୍ରବକ୍ତାଙ୍କର ଅନୁପସ୍ଥିତି ଅନୁଭୂତ ହୋଇଥିଲା। ଅବଶ୍ୟ କିଛିକାଳ ପରେ ସଂସଦର ଅନ୍ୟ ଗୃହରେ ସେ ଅଭାବର ପରିପୂରଣ ହୋଇଯାଇଥିଲା।

**।। ରାଜ୍ୟସଭାରେ ପ୍ରତିନିଧିତ୍ୱ ।।**

ଲୋକସଭାରେ ସଦସ୍ୟ ସଂଖ୍ୟା ବୃଦ୍ଧି ଯୋଗୁଁ ଜନସଂଘର ନେତାମାନେ ଯେପରି ଉଲ୍ଲସିତ ହେଲେ, ନିର୍ବାଚନରେ ଦୀନଦୟାଲଜୀ ଓ ଅଟଳଜୀଙ୍କ ପରାଜୟ ଯୋଗୁ ସେହିପରି ବ୍ୟଥିତ ମଧ୍ୟ ହେଲେ। ଅନ୍ତତଃ ଦଳର ପ୍ରବକ୍ତା ଅଟଳଜୀ ସଂସଦରେ ରହିବାର ଆବଶ୍ୟକତାକୁ ସମସ୍ତେ ଅନୁଭବ କରୁଥିଲେ। ତେଣୁ ତାଙ୍କୁ ରାଜ୍ୟସଭାକୁ ପଠାଯିବା ପାଇଁ ଦୀନଦୟାଲଜୀ ଓ ଅନ୍ୟ ନେତାମାନେ ସ୍ଥିର କଲେ। ରାଜ୍ୟସଭାକୁ ଅନ୍ତତଃ ଦୁଇ ଜଣ ସଭ୍ୟ ପଠାଇ ପାରିବା ଭଳି କ୍ଷମତା ସେତେବେଳେକୁ ଜନସଂଘ ହାସଲ କରି ପାରିଥିଲା। ରାଜ୍ୟସଭା ପାଇଁ ସେତେବେଳେ ହୋଇଥିବା ଦ୍ୱିବାର୍ଷିକ ନିର୍ବାଚନରେ ଅଟଳଜୀ ସହଜରେ ଓ ନିଜସ୍ୱ ଶକ୍ତିବଳରେ ହିଁ ନିର୍ବାଚିତ ହୋଇଗଲେ।

ସେ ସଂକ୍ରାନ୍ତରେ ଅଟଳଜୀ କହନ୍ତି : "ସେତେବେଳେ ସଦନ (ରାଜ୍ୟସଭା)ରେ ମୋତେ ମିଶାଇ ଜନସଂଘର ମାତ୍ର ଦୁଇ ଜଣ ସଭ୍ୟ ଥିଲେ। ତଥାପି ସଦନର ଅଧ୍ୟକ୍ଷ ତଥା ଦେଶର ଉପରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ୍ ମୋତେ ପ୍ରଥମ ଧାଡ଼ିରେ ହିଁ ସ୍ଥାନ ଦେଇଥିଲେ। ପ୍ରାୟ ସବୁ ଆଲୋଚନା ବେଳେ ଦଳର ବକ୍ତବ୍ୟ ଉପସ୍ଥାପନ କରିବା ଲାଗି ଆମକୁ ସୁଯୋଗ ମିଳୁଥିଲା। ଡଃ ରାଧାକୃଷ୍ଣନ୍ ଅତ୍ୟନ୍ତ ଶାଳୀନତା ଓ ଗରିମା

ସହକାରେ ଗୃହର କାର୍ଯ୍ୟାବଳୀ ସଂଚାଳନ ଓ ନିୟନ୍ତ୍ରଣ କରୁଥିଲେ । ଡଃ ରାଧାକୃଷ୍ଣନ୍ ଦେଶର ରାଷ୍ଟ୍ରପତି ନିର୍ବାଚିତ ହେବା ପରେ ପରବର୍ତ୍ତୀ ଉପରାଷ୍ଟ୍ରପତି ଡଃ ଜାକୀର ହୁସେନ୍ ଗୃହର ଅଧ୍ୟକ୍ଷ ରୂପେ କାର୍ଯ୍ୟଭାର ସମ୍ଭାଳିଲେ । ପ୍ରଶ୍ନୋତ୍ତର ସମୟ ପରେ ସଦନରେ ଯେଉଁ ପ୍ରକାର ହୋ-ହଲ୍ଲା ହେଉଥିଲା, ସେଥିରେ ବେଳେ ବେଳେ ସେ ରାଗି ଯାଉଥିଲେ ।''

**।। ଡଃ ରାଜେନ୍ଦ୍ର ପ୍ରସାଦଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ।।**

ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦଙ୍କ ମୃତ୍ୟୁରେ ୧୯୬୩ ମସିହା ମାର୍ଚ୍ଚ ୧ ତାରିଖ ଦିନ ରାଜ୍ୟସଭାରେ ଗଭୀର ଶୋକ ପ୍ରକାଶ କରାଯାଇଥିଲା । ଏଥିରେ ଭାଗ ନେଇ ଅଟଳଜୀ ନିମ୍ନ ମର୍ମରେ ତାଙ୍କର ସ୍ମୃତି ପ୍ରତି ନିଜର ତଥା ତାଙ୍କ ଦଳର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ :

''ମୃତ୍ୟୁର ନିୟତି ଆଜି ଆମଠାରୁ ଯାହାଙ୍କୁ ଛଡ଼ାଇ ନେଇଚି ଅଥଚ ଯାହାଙ୍କର କୀର୍ତ୍ତିଗାଥା କାଳର ଭାଲପଟରେ ଅଲିଭା ଅକ୍ଷରରେ ଅଙ୍କିତ ହୋଇ ରହିବ, ସେହି ବାବୁ ରାଜେନ୍ଦ୍ର ପ୍ରସାଦଙ୍କ ସ୍ମୃତି ପ୍ରତି ମୁଁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଚିନ୍ତନ- ମନନରେ, ଭାବ-ଭାଷାରେ, ଆଚାର- ଆଚରଣରେ, ରୂପ-ରଙ୍ଗରେ ଡଃ ରାଜେନ୍ଦ୍ର ପ୍ରସାଦ ଭାରତର ସନାତନ ସଂସ୍କୃତିର ନିତ୍ୟନୂତନ ପ୍ରତିନିଧି ଥିଲେ । ବିଦ୍ୱତା ସହିତ ବିନୟ, ଶାସନ ସହିତ ସୌଜନ୍ୟ, ବଜ୍ରଭଳି କଠୋର ଅଥଚ ଫୁଲ ପରି କୋମଳ ତାଙ୍କର ଜୀବନ ଭାବୀ ବଂଶଧରମାନଙ୍କ ପାଇଁ ସର୍ବଦା ପ୍ରେରଣାଦାୟକ ହୋଇ ରହିବ । ସେ ଥିଲେ ଅଜାତଶତ୍ରୁ । ସବୁ ଦଳ, ସବୁ ମତବାଦର ଲୋକେ ତାଙ୍କୁ ଆଦର- ସମ୍ମାନ କରୁଥିଲେ । ରାଷ୍ଟ୍ରପତି ଭବନରେ ମଧ୍ୟ ସେ ସଦାକତ୍ ଆଶ୍ରମର ବାତାବରଣ ସୃଷ୍ଟି କରିଥିଲେ । ଆଜି ତାଙ୍କ ସହିତ ଗୋଟିଏ ଯୁଗ ସମାପ୍ତ ହେଉଛି । ପରମାତ୍ମାଙ୍କୁ ପ୍ରାର୍ଥନା କରୁଛି, ସେ ଆମକୁ ଏହି ଦୁଃଖ ସହ୍ୟ କରିବାପାଇଁ ଶକ୍ତି ଦିଅନ୍ତୁ ଏବଂ ତାଙ୍କ ସ୍ୱପ୍ନର ଭାରତକୁ ଗଢ଼ି ତୋଳିବା ଲାଗି ସାମର୍ଥ୍ୟ ଦିଅନ୍ତୁ ।''

**।। ଭାଷାଭିମାନ ।।**

ମାନ୍ଦ୍ରାଜ (ଏବେ ଚେନ୍ନାଇ)ରେ ୧୯୬୫ରେ ଭାଷା ନାମରେ ଯେଉଁ ପ୍ରକାର ଭୟଙ୍କର ଉପଦ୍ରବ ହୋଇଥିଲା, ସେ ସମ୍ପର୍କରେ ଅଟଳଜୀ ରାଜ୍ୟସଭାରେ ଏକ ଭାଷଣ ପ୍ରସଙ୍ଗରେ ନିମ୍ନୋକ୍ତ ବକ୍ତବ୍ୟ ପ୍ରକାଶ କରିଥିଲେ: ''ମାନ୍ଦ୍ରାଜରେ ଭାଷାର ନାମ ନେଇ ଯେଉଁ ଭୟାବହ ଉପଦ୍ରବ ସଂଘଟିତ ହୋଇଛି, ତାର ଉଚ୍ଚସ୍ତରୀୟ ବିଚାର ବିଭାଗୀୟ ତଦନ୍ତ ହେବା ଆବଶ୍ୟକ । ଏହି ଗଣ୍ଡଗୋଳ ପଛରେ କାହାର ପ୍ରେରଣା ଥିଲା, କାହାର ଯୋଜନା ଥିଲା ଓ କେଉଁମାନେ ଏହା ଭିଆଇଥିଲେ, ସେ ସବୁ ଯାଞ୍ଚ ହେବା ଦରକାର । ଶ୍ରୀ ଆନ୍ନାଦୁରାଇଙ୍କର ତାମିଲ ଭାଷା ପାଇଁ ଯେପରି ଗର୍ବ ଓ ଅଭିମାନ ରହିଛି, ଆମର

ବି ସେମିତି ହିନ୍ଦୀ ବା ଅନ୍ୟାନ୍ୟ ଭାଷା ପାଇଁ ଗର୍ବ-ଅଭିମାନ ରହିଛି । ଏ କଥା କେହି ଭୁଲିଯିବା ଉଚିତ ନୁହେଁ । ଦିଲ୍ଲୀରେ ଆମେ କେହି 'ତାମିଲ ମୁର୍ଦ୍ଦାବାଦ୍' ବୋଲି ଧ୍ୱନି ଦେଇ ନାହୁଁ । କିନ୍ତୁ ମାନ୍ଦ୍ରାଜରେ ''ହିନ୍ଦୀ ମୁର୍ଦ୍ଦାବାଦ୍' ଧ୍ୱନି ଦିଆଯାଇଛି । ଭାଷା କେବେ କାହାରି କିଛି କ୍ଷତି କରେ ନାହିଁ । ଏ କଥା ଆମେ ସମସ୍ତେ ବରାବର ସ୍ମରଣ ରଖିବା ଉଚିତ ।''

**॥ ସମ୍ବିଧାନର ଧାରା ୩୭୦ ॥**

କାଶ୍ମୀରକୁ ଅଟଳଜୀ ବରାବର ଭାରତର ମୁକୁଟ ବୋଲି କହି ଆସିଛନ୍ତି । ଦେଶର ଏହି ମୁକୁଟମଣିକୁ ହାତେଇବା ଲାଗି ପାକିସ୍ତାନ କିପରି ମୂଳରୁ ନାନା ପ୍ରକାର ଷଡଯନ୍ତ୍ର ରଚନା କରିଆସିଛି, ସେ ସମ୍ପର୍କରେ ସେ ବରାବର ଲୋକଙ୍କୁ ବୁଝାଇ ଆସିଛନ୍ତି ଏବଂ ସମ୍ବିଧାନର ୩୭୦ ଧାରାକୁ ଉଚ୍ଛେଦ କରାଯିବା ନିମନ୍ତେ ବରାବର ଦାବୀ ଜଣାଇ ଆସିଛନ୍ତି । କିନ୍ତୁ ଅନ୍ୟ ଦଳମାନେ ଏ ବିଷୟକୁ ଗମ୍ଭୀରତା ସହକାରେ ବିଚାର କରି ନାହାନ୍ତି ।

୧୯୬୪ ମସିହା ଏପ୍ରିଲ୍ ୨୨ ତାରିଖ ଦିନ ସେ ରାଜ୍ୟସଭାରେ ନିଜର ଏକ ଭାଷଣ ପ୍ରସଙ୍ଗରେ କହିଥିଲେ : ''ସମ୍ବିଧାନର ଧାରା ୩୭୦ ତୁରନ୍ତ ଖତମ ହେବା ଆବଶ୍ୟକ । ଏହା ଏକ ଅସ୍ଥାୟୀ ପ୍ରାବଧାନ । ତାକୁ ବଢ଼ାଇ ଚାଲିବା କଦାପି ଦେଶପାଇଁ ହିତକର ନୁହେଁ । ଏବେ ଘଣ୍ଟାର କଣ୍ଟାକୁ ଓଲଟା ଘୂରାଇବାକୁ ଚେଷ୍ଟା କରାଯାଉଛି । ଶେଖ ଅବଦୁଲ୍ଲା ଜଣେ ବଡ଼ ଲୋକ ହୋଇ ପାରନ୍ତି । ତାଙ୍କ ପ୍ରତି ଆମର ସମ୍ମାନ ରହିଛି । କିନ୍ତୁ ସେ କଦାପି ଜାମ୍ମୁ-କାଶ୍ମୀର ଏବଂ ଅବଶିଷ୍ଟ ଭାରତଠାରୁ ବଡ଼ ହୋଇ ନ ପାରନ୍ତି । ଏ ଦେଶର ଏବେ ଦୁଇ ଜଣ ପ୍ରଧାନମନ୍ତ୍ରୀ ଅଛନ୍ତି- ଦେଶର ପ୍ରଧାନମନ୍ତ୍ରୀ ଏବଂ ଜାମ୍ମୁ-କାଶ୍ମୀରର ପ୍ରଧାନମନ୍ତ୍ରୀ ଉଭୟେ କାଶ୍ମୀରୀ । ଅନ୍ୟ କୌଣସି ରାଜ୍ୟରେ ପ୍ରଧାନମନ୍ତ୍ରୀ ନାହାନ୍ତି, ସେମାନେ ସମସ୍ତେ ମୁଖ୍ୟମନ୍ତ୍ରୀ । ମୁଁ ଜାଣିବାକୁ ଚାହେଁ, ନୂଆଦିଲ୍ଲୀର ସମ୍ମାନ ଏବେ କେଉଁଠି ?''

**॥ ୧୯୬୨ରୁ ୬୭ ॥**

୧୯୬୨ରୁ ୧୯୬୭ ପର୍ଯ୍ୟନ୍ତ ତୃତୀୟ ଲୋକସଭାର ସମୟ ସ୍ୱାଧୀନ ଭାରତର ଇତିହାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ସଙ୍କଟଜନକ ସମୟ ଥିଲା । ଏଥି ମଧ୍ୟରେ ଭାରତକୁ ଦୁଇଟି ଯୁଦ୍ଧର ମୁକାବିଲା କରିବାକୁ ପଡ଼ିଥିଲା । ଚୀନ ଏକ ଦିଗରେ ହିନ୍ଦୀ-ଚୀନୀ ଭାଇ-ଭାଇ ବୋଲି ଧ୍ୱନି ଦେଇ ଆମକୁ ବହଲାଉଥିଲା ଏବଂ ଅନ୍ୟ ଦିଗରେ ଯୁଦ୍ଧର ପ୍ରସ୍ତୁତି ଚଳାଇ ଆମ ଦେଶର ସୀମାନ୍ତ ଉପରେ ଅଚାନକ ଆକ୍ରମଣ କରିଦେଲା । ଏଥିଯୋଗୁଁ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ପ୍ରଚଣ୍ଡ ମାନସିକ ଆଘାତ ଲାଗିଥିଲା । ଚୀନ୍‌ର ବିଶ୍ୱାସଘାତକତା ତାଙ୍କର ମନୋବଳକୁ ଭାଙ୍ଗି ଦେଇଥିଲା । ସେହି ଆଘାତ ହିଁ

ଶେଷରେ ତାଙ୍କ ମୃତ୍ୟୁର କାରଣ ହୋଇଥିଲା ବୋଲି ଅନେକେ ମନେ କରନ୍ତି । ଏ ସଂକ୍ରାନ୍ତରେ ଅଟଳଜୀ କହନ୍ତି : "ଚୀନ୍‌ର ଆକସ୍ମିକ ଆକ୍ରମଣ ନେହେରୁଜୀଙ୍କୁ ମର୍ମାନ୍ତକ ପୀଡ଼ା ଦେଇଥିଲା । ତାର ବିଶ୍ୱାସଘାତକତା ତାଙ୍କ ଅନ୍ତରକୁ ବହୁତ ବାଧିଥିଲା । ତା'ପରଠାରୁ ତାଙ୍କୁ ଆଉ ପୂର୍ବର ଜୀବନ୍ତ ମୁଦ୍ରାରେ ଦେଖିବାକୁ ମିଳି ନ ଥିଲା । ସେ ଯେମିତି ପୂରାପୂରି ଭାଙ୍ଗି ପଡ଼ିଥିଲେ । ତାଙ୍କୁ ଦେଖି ମନେ ହେଉଥିଲା, ତାଙ୍କୁ ଯେପରି କେହି ତାଙ୍କର ଆଭାମଣ୍ଡଳରୁ ପୃଥକ୍ କରି ଦେଇଛି !"

ପଣ୍ଡିତ ନେହେରୁଙ୍କ ମୃତ୍ୟୁ ପରେ ପରେ ପାକିସ୍ଥାନ ପଟୁ ମଧ ଭାରତ ଉପରେ ଆଉ ଏକ ଆକ୍ରମଣ କରାଯାଇଥିଲା, ଯେତେବେଳେ ଲାଲ ବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଥିଲେ । ଯୁଦ୍ଧ ପରେ ପରେ ତାଙ୍କର ମଧ ଅତ୍ୟନ୍ତ ଆକସ୍ମିକ ଭାବରେ ଦେହାନ୍ତ ହୋଇଯାଇଥିଲା । ଦୁଇଟି ଯୁଦ୍ଧ ଏବଂ ଦେଶର ଦୁଇ ଜଣ ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁଜନିତ ଏହି ସଙ୍କଟଜନକ ସମୟରେ ବିରୋଧୀ ପକ୍ଷର ଜଣେ ସକ୍ରିୟ ନେତା ରୂପେ ଅଟଳଜୀଙ୍କ ବ୍ୟକ୍ତିତ୍ୱର ଏକ ମହତ୍ତ୍ୱପୂର୍ଣ୍ଣ ଦିଗ ପ୍ରକଟିତ ହୋଇ ପାରିଥିଲା ।

**।। ପଣ୍ଡିତ ନେହେରୁଙ୍କ ପ୍ରତି ଅନନ୍ୟ ଶ୍ରଦ୍ଧାଞ୍ଜଳି ।।**

୧୯୬୪ ମସିହା ମେ' ମାସରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କର ଦେହାନ୍ତ ହୋଇଗଲା । କେବଳ ଭାରତବର୍ଷ ନୁହେଁ, ସମଗ୍ର ବିଶ୍ୱର ହୃଦୟ ଗଭୀର ଶୋକରେ ଅଭିଭୂତ ହୋଇ ପଡ଼ିଲା । ରାଜ୍ୟସଭାରେ ସେଦିନ ତାଙ୍କ ବିୟୋଗରେ ଯେଉଁ ଶୋକାଞ୍ଜଳି ଅର୍ପଣ କରାଯାଇଥିଲା, ସେଥିରେ ଭାଗ ନେଇ ଅଟଳଜୀ ନିମ୍ନୋକ୍ତ ଭାଷାରେ ନିଜର ତଥା ତାଙ୍କ ଦଳର ଶୋକ ଓ ଶ୍ରଦ୍ଧା ନିବେଦନ କରିଥିଲେ :

"ଏକ ସ୍ୱପ୍ନ ଥିଲା, ଯାହା ଅଧା ରହିଗଲା । ଏକ ମଧୁର ସଂଗୀତର ସ୍ୱର ଥିଲା, ଯାହା ନୀରବ ହୋଇଗଲା । ଏକ ଆଲୋକ ବର୍ତ୍ତିକା ଥିଲା, ଯାହା ଅନନ୍ତରେ ବିଲୀନ ହୋଇଗଲା । ସ୍ୱପ୍ନ ଥିଲା ଏପରି ଏକ ଜଗତର, ଯାହା ଭୟ ଆଉ ଭୋକରୁ ମୁକ୍ତ ହେବ ! ସଙ୍ଗୀତ ଥିଲା ଏପରି ଏକ ମହାକାବ୍ୟର, ଯେଉଁଥିରେ ଥିଲା ଗୀତାର ଗୁଞ୍ଜନ ଆଉ ଗୋଲାପର ସୁଗନ୍ଧି ! ବର୍ତ୍ତିକା ଥିଲା ଏପରି ଏକ ଦୀପର, ଯାହା ରାତି ତମାମ ପ୍ରଜ୍ଜ୍ୱଳିତ ରହି ଅନ୍ଧକାର ସହ ଲଢ଼େଇ କରୁଥିଲା ଆଉ ଆମକୁ ରାସ୍ତା ଦେଖାଇ ଦେଇ ପ୍ରଭାତର ଆଲୋକରେ ନିର୍ବାଣପ୍ରାପ୍ତ ହୋଇଗଲା !

ମୃତ୍ୟୁ ଧ୍ରୁବ ଆଉ ଶରୀର ନଶ୍ୱର । କାଲି ଆମେ ସୁନା ରଙ୍ଗର ଯେଉଁ କାୟାକୁ ଚନ୍ଦନକାଠର ଚିତା ଉପରେ ଚଢ଼ାଇ ଦେଇ ଆସିଲେ, ତାର ବିନାଶ ନିଶ୍ଚିତ ଥିଲା । କିନ୍ତୁ ମୃତ୍ୟୁ ଏପରି ଲୁଚିଛପି ଆସିବା କ'ଣ ଦରକାର ଥିଲା ? ଯେତେବେଳେ ସଙ୍ଗୀ-ସାଥୀ ସବୁ ଶୋଇ ପଡ଼ିଥିଲେ, ପହରାଦାର ଯେତେବେଳେ ବେଖବର ଥିଲା, ଆମ ଜୀବନର ଅମୂଲ୍ୟ ନିଧି ସେତିକିବେଳେ ଲୁଟ୍ ହୋଇଗଲା । ଭାରତମାତା ଆଜି ଗଭୀର

ଶୋକରେ ନିମଗ୍ନା । ତାର ସବୁଠୁ ଅଲିଅଳ ରାଜକୁମାର ହଜିଯାଇଛି । ମାନବତା ଆଜି ଖିନ୍ନବଦନା- ତାର ପୂଜାରୀ ଶୋଇଯାଇଛି । ଶାନ୍ତି ଆଜି ଅଶାନ୍ତ... ତାର ରକ୍ଷକ ଚାଲିଯାଇଛି । ଦଳିତମାନଙ୍କର ଭରସା ତୁଟିଗଲା । ଜନଗଣଙ୍କ ଆଖିର ତାରା ଲିଭିଗଲା । ବିଶ୍ୱ ରଙ୍ଗମଞ୍ଚର ପ୍ରମୁଖ ଅଭିନେତା ନିଜର ଅନ୍ତିମ ଅଭିନୟ ଦେଖାଇ ସାରି ଅନ୍ତର୍ହିତ ହୋଇଗଲେ । ଯବନିକା ପଡ଼ିଗଲା ।

ମହର୍ଷି ବାଲ୍ମୀକି ରାମାୟଣରେ ଭଗବାନ୍ ଶ୍ରୀରାମଙ୍କ ସମ୍ବନ୍ଧରେ କହିଛନ୍ତି- ସେ ଅସମ୍ଭବ ସମୂହର ସମନ୍ୱୟ ଥିଲେ । ପଣ୍ଡିତ ନେହେରୁଜୀଙ୍କ ଜୀବନରେ ମହାକବିଙ୍କ ଏହି ଉକ୍ତିର ଏକ ଝଲକ ରହିଥିବା ପରି ମନେ ହେଉଛି । ସେ, ଶାନ୍ତିର ପୂଜାରୀ, ପୁଣି କ୍ରାନ୍ତିର ଅଗ୍ରଦୂତ ଥିଲେ । ସେ ଅହିଂସାର ଉପାସକ, କିନ୍ତୁ ସ୍ୱାଧୀନତା ଓ ସମ୍ମାନର ସୁରକ୍ଷା ଲାଗି ଯେକୌଣସି ହତିଆର ସହିତ ଲଢ଼ିବାକୁ ପ୍ରସ୍ତୁତ ଥିଲେ ।

ସଂସଦରେ ତାଙ୍କର ଅଭାବ କେବେ ବି ପୂରଣ ହୋଇପାରିବ ନାହିଁ । ତିନିମୂର୍ତ୍ତି ଭବନକୁ ହୁଏତ ଆଉ କେହି ତାଙ୍କ ଭଳି ସାର୍ଥକ କରି ପାରିବ ନାହିଁ । ତାଙ୍କର ସେ ବ୍ୟକ୍ତିତ୍ୱ, ସେ ମହନୀୟତା, ବିରୋଧୀମାନଙ୍କୁ ସାଙ୍ଗରେ ନେଇ ଚାଲିବାର ସେ ଉଦାରତା, ସେ ସୌଜନ୍ୟବୋଧ, ସେ ସଜ୍ଜନତା, ସେ ସରସତା, ସେ ସତେଜତା ସମ୍ଭବତଃ ନିକଟ ଭବିଷ୍ୟତରେ ଆଉ ଦେଖିବାକୁ ମିଳିବ ନାହିଁ । ମତଭିନ୍ନତା ଥିବା ସତ୍ତ୍ୱେ, ତାଙ୍କର ମହାନ୍ ଆଦର୍ଶ ପ୍ରତି, ତାଙ୍କର ପ୍ରାମାଣିକତା ପ୍ରତି, ଦେଶଭକ୍ତି ଆଉ ଅତୁଟ ସାହସ ପ୍ରତି, ତାଙ୍କର ଅସୀମ ଧୈର୍ଯ୍ୟ ଓ ସହନଶୀଳତା ପ୍ରତି ଆମ ହୃଦୟରେ ଗଭୀର ସମ୍ମାନ ଓ ଶ୍ରଦ୍ଧା ବ୍ୟତୀତ ଅନ୍ୟ କିଛି ନାହିଁ- ରହି ନ ପାରେ । ଏତିକି କହି ମୁଁ ସେହି ମହାନ୍ ଆତ୍ମା ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।"

**।। ଶାସ୍ତ୍ରୀଜୀଙ୍କ ପ୍ରତି ଶୋକାଞ୍ଜଳି ।।**

ପଣ୍ଡିତ ନେହେରୁଙ୍କ ପରେ ଦେଶର ଦ୍ୱିତୀୟ ପ୍ରଧାନମନ୍ତ୍ରୀ ହେଲେ ଲାଲ ବାହାଦୂର ଶାସ୍ତ୍ରୀ । ଯୁଦ୍ଧ ତଥା ଶାନ୍ତି ଉଭୟ ସମୟରେ ଉପଯୁକ୍ତ ନେତୃତ୍ୱ ଦେଇ ପାରିବାର ପରାକାଷ୍ଠା ସେ ଦେଖାଇଥିଲେ । ପାକିସ୍ଥାନର ଆକ୍ରମଣ କାଳରେ ତାଙ୍କର "ଜୟ ଜବାନ୍ ଜୟ କିଷାନ୍" ଧ୍ୱନି ସାରା ଦେଶରେ ଗୁଞ୍ଜନ ତୋଳିଥିଲା । ୧୯୬୫ରେ ଏହି ଯୁଦ୍ଧ ସମୟରେ ସରକାରୀ ଦଳ ଛଡ଼ା ଅନ୍ୟ ଦଳମାନେ ବି ସରକାରଙ୍କୁ ପୂର୍ଣ୍ଣ ସହଯୋଗ ଦେଇଥିଲେ । ବିଶେଷ କରି ଜନସଂଘ ପକ୍ଷରୁ ସେତେବେଳେ ଦେଶରକ୍ଷା ପାଇଁ ଜନ-ଜାଗରଣର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରାଯାଇଥିଲା । ଆହତ ସୈନିକମାନଙ୍କୁ ସବୁପ୍ରକାର ସାହାଯ୍ୟ ମଧ୍ୟ ଯୋଗାଇ ଦିଆଯାଇଥିଲା । ଶେଷରେ ଭାରତ ଯୁଦ୍ଧରେ ବିଜୟୀ ହେଲା । ଅଟଳଜୀ ସେତେବେଳେ କହିଥିଲେ, ଏହି ବିଜୟର ଶ୍ରେୟ ଆମର ବୀର ସୈନିକ ଓ ସେନାଧିକାରୀମାନଙ୍କର ହିଁ ପ୍ରାପ୍ୟ ।

ଯୁଦ୍ଧ ସିନା ଆମେ ଜିତିଗଲେ; କିନ୍ତୁ ଏହି ଯୁଦ୍ଧ ପରେ ପରେ ୧୯୬୬ରେ ଆମେ ହରାଇ ବସିଲେ ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀଙ୍କୁ । ସରଳ ସ୍ୱଭାବ, ସାଧୁତା, ବିନମ୍ରତା, ଅକୃତ୍ରିମତା, ତ୍ୟାଗଶୀଳତା, ବିଦ୍‌ବତ୍ତା ଓ ପ୍ରଶାସନିକ ଦକ୍ଷତା ଯୋଗୁ ସେ ଅତ୍ୟନ୍ତ ଲୋକପ୍ରିୟ ଥିଲେ । ସୋଭିଏତ୍ ଋଷିଆର ତାସ୍‌କେଣ୍ଟ ଠାରେ ଭାରତ ଓ ପାକିସ୍ଥାନ ମଧ୍ୟରେ ଯେଉଁ ଯୁଦ୍ଧ-ପରବର୍ତ୍ତୀ ବୁଝାମଣା ହେଲା, ତାହା ବହୁତ ଚାପ ପ୍ରୟୋଗ ମଧ୍ୟରେ ହିଁ ସମ୍ପନ୍ନ ହୋଇଥିଲା । ଏଥିରେ ସ୍ୱାକ୍ଷର କରିବା ଲାଗି ଶାସ୍ତ୍ରୀଜୀଙ୍କ ଉପରେ ବିଶେଷ ଚାପ ପ୍ରୟୋଗ କରାଯାଇଥିଲା । ପୂର୍ବରୁ ସେ ହୃଦ୍‌ରୋଗାକ୍ରାନ୍ତ ଥିଲେ । ତେଣୁ ଏହି ଚାପକୁ ସମ୍ଭବତଃ ତାଙ୍କର କୋମଳ ହୃଦୟ ସହ୍ୟ କରି ପାରିଲା ନାହିଁ । ତାର ପରିଣାମରେ ଶାସ୍ତ୍ରୀଜୀ ଆଉ ତାସ୍‌କେଣ୍ଟରୁ ଫେରିଲେ ନାହିଁ; ଫେରିଲା ତାଙ୍କର ମରଦେହ । ତାଙ୍କର ହୃତ୍‌ସ୍ପନ୍ଦନ ସେହିଠାରେ ହିଁ ବନ୍ଦ ହୋଇଯାଇଥିଲା ; କିନ୍ତୁ ସାରା ଭାରତବର୍ଷର ହୃଦୟ ତାଙ୍କର ସେହି ଅପ୍ରତ୍ୟାଶିତ ଅକାଳ ବିୟୋଗରେ କାନ୍ଦି ଉଠିଥିଲା । ଅଟଳଜୀ ଉପରୋକ୍ତ ମର୍ମରେ ନିଜର ବକ୍ତବ୍ୟ ପ୍ରକାଶ କରି ତାଙ୍କ ପ୍ରତି ନିଜର ଶ୍ରଦ୍ଧାପୂର୍ଣ୍ଣ ଶୋକାଞ୍ଜଳି ଅର୍ପଣ କରିଥିଲେ ।

**।। ଚତୁର୍ଥ ଲୋକସଭା ନିର୍ବାଚନ ।।**

ଚତୁର୍ଥ ଲୋକସଭା ନିର୍ବାଚନ ପାଇଁ କାର୍ଯ୍ୟସୂଚୀ ଘୋଷିତ ହୋଇଗଲା । ଅଟଳଜୀ କେଉଁଠାରୁ ନିର୍ବାଚନ ଲଢ଼ିବେ, ତାହା ସ୍ଥିର କରିବାର ଦାୟିତ୍ୱ ତାଙ୍କ ଉପରେ ଛାଡ଼ି ଦିଆଗଲା । ମତଦାତାମାନଙ୍କ ମଧ୍ୟରେ ଭୟ, ବିଭ୍ରାନ୍ତି ଓ ଆତଙ୍କ ସୃଷ୍ଟି କରି ନିର୍ବାଚନ ଜିତିବାକୁ ଚାହୁଁଥିବା ଲୋକଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ସେ ଚାହୁଁଥିଲେ । ତେଣୁ ଏଥର ମଧ୍ୟ ବଳରାମପୁରରୁ ନିର୍ବାଚନ ଲଢ଼ିବା ଲାଗି ସେ ସିଦ୍ଧାନ୍ତ କରିନେଲେ । ମତଦାତାମାନଙ୍କ ଉପରେ ତଥା ନିଜ ଉପରେ ତାଙ୍କର ଯଥେଷ୍ଟ ଭରସା ଥିଲା । ସେ ସବୁକୁ ମନରେ ରଖି ସେ ନିଜର ରଣ-କୌଶଳ ପ୍ରସ୍ତୁତ କରି ନେଲେ ଓ ନିର୍ବାଚନ ମୈଦାନକୁ କୁଦି ପଡ଼ିଲେ ।

ଏ ସମ୍ବନ୍ଧରେ ତାଙ୍କ ବକ୍ତବ୍ୟର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି ।

"ବଳରାମପୁରର ଲୋକ- ପ୍ରତିନିଧି ଥିବାବେଳେ ମୁଁ ନିଜର ନିର୍ବାଚନମଣ୍ଡଳୀ ସମ୍ପର୍କରେ ଯଥେଷ୍ଟ ଚିନ୍ତା କରିଥିଲି । ମତଦାତାମାନଙ୍କ ସହିତ ନିକଟ ସମ୍ପର୍କ ମଧ୍ୟ ରକ୍ଷା କରିଥିଲି । ଏହାର ଉନ୍ନୟନ ଦିଗରେ ସଚେଷ୍ଟ ଥିଲି । କିନ୍ତୁ ସେଠାରୁ ହାରିଯିବା ପରେ ମୁଁ ସ୍ଥିର କଲି ଯେ ବଳରାମପୁର ସହିତ ମୁଁ ଏଣିକି ଅଧିକ ସମ୍ପର୍କ ରଖିବି ନାହିଁ । ମୁଁ କଂଗ୍ରେସ ପ୍ରାର୍ଥୀଙ୍କୁ ଏହି କାର୍ଯ୍ୟ କରିବା ଲାଗି ପୂର୍ଣ୍ଣ ସୁଯୋଗ ଦେବାକୁ ଚାହୁଁଥିଲି । କିନ୍ତୁ ସେଠାରୁ ପୁଣି ନିର୍ବାଚନ ଲଢ଼ିବାପାଇଁ ମୁଁ ଦୃଢ଼ପ୍ରତିଜ୍ଞ ଥିଲି । ମୋତେ ନିଜ ପରାଜୟର

ପ୍ରତିଶୋଧ ନେବାର ଥିଲା । ନିର୍ବାଚନ କାଳରେ ଲୋକଙ୍କୁ ଯଥେଷ୍ଟ ସଚେତନ କରାଇବାର ଆବଶ୍ୟକତା ମଧ୍ୟ ମୁଁ ଅନୁଭବ କରୁଥିଲି ।

ନିର୍ବାଚନ ପୂର୍ବରୁ କଂଗ୍ରେସ ଦଳର କେତେକ ବରିଷ୍ଠ ନେତା ମୋତେ ଭେଟି ବଳରାମପୁର ବ୍ୟତୀତ ଅନ୍ୟ କୌଣସି ଆସନରୁ ପ୍ରାର୍ଥୀ ହେବାପାଇଁ ଅନୁରୋଧ କରିଥିଲେ । ସେମାନଙ୍କର ଯୁକ୍ତି ଥିଲା, ମୁଁ ତ ଅନ୍ୟ ଯେକୌଣସି ସ୍ଥାନରୁ ଜିତିଯାଇ ପାରିବି । କିନ୍ତୁ ସେଠାକାର କଂଗ୍ରେସ ପ୍ରାର୍ଥୀଙ୍କର ସେ ସୁବିଧା ନାହିଁ । କିନ୍ତୁ ଅନେକ ଚିନ୍ତା କଲା ପରେ ମୁଁ ସେ ପରାମର୍ଶକୁ ସ୍ୱୀକାର କରି ପାରିଲି ନାହିଁ । ମୁଁ ସେହି ବଳରାମପୁରରୁ ହିଁ ନିର୍ବାଚନ ଲଢ଼ିଲି ଏବଂ ଜିତିଲି । ଏଥର ମୁଁ ୩୧ ହଜାର ଅଧିକ ଭୋଟରେ ବିଜୟୀ ହେଲି । ମୋତେ, ୧,୪୨,୪୪୬ଟି ଭୋଟ ଏବଂ କଂଗ୍ରେସ ପ୍ରାର୍ଥୀଙ୍କୁ ୧,୧୦,୭୦୪ଟି ଭୋଟି ମିଳିଥିଲା । ମୋ ସାଙ୍ଗରେ ଜନସଂଘର ୪ ଜଣ ବିଧାନସଭା-ପ୍ରାର୍ଥୀ ମଧ୍ୟ ଜିତିଥିଲେ ।'' (ଦ୍ରଷ୍ଟବ୍ୟ: ଅଟଳ ବିହାରୀ ବାଜପେୟୀଙ୍କ ପୁସ୍ତକ 'ସଂସଦମେ ଚାର୍ ଦଶକ' ପୃଷ୍ଠା ୨୬)

ସେଥର ନିର୍ବାଚନ ବେଳେ ବଳରାମପୁରର ଜନସାଧାରଣ ପୂରା ସଜାଗ ହୋଇ ଯାଇଥିଲେ । ଏଥର ଆଉ ଗୋଲାପୀ ମତପତ୍ରର ବିଭ୍ରାନ୍ତି ସୃଷ୍ଟିକାରୀ ଚାଲ୍ କିଛି କାମ କରିବାର ନ ଥିଲା । ଅଟଳଜୀ ଏପରିଭାବେ ନିଜର ରଣ-କୌଶଳ ପ୍ରସ୍ତୁତ କରିଥିଲେ, ଯୋଉଥିରେ କି ଅନ୍ୟାନ୍ୟ ଦଳର ଚାଲବାଜୀ କାଟୁ କରି ପାରୁ ନ ଥିଲା । ସେ ନିଜେ ମଧ୍ୟ ଗାଁ-ଗାଁ ବୁଲି ଲୋକଙ୍କୁ ନିର୍ବାଚନର ଗୁରୁତ୍ୱ ବୁଝାଇଥିଲେ । ସେ ଯେଉଁଠାକୁ ଯାଉଥିଲେ, ଲୋକେ ଶଙ୍ଖ, ଘଣ୍ଟା ବଜାଇ ବହୁ ସଂଖ୍ୟାରେ ତାଙ୍କୁ ସ୍ୱାଗତ କରୁଥିଲେ । ପୁରୁଷମାନଙ୍କଠାରୁ ମହିଳାମାନଙ୍କର ଉତ୍ସାହ ମଧ୍ୟ କମ୍ ନ ଥିଲା । ତାହାଛଡ଼ା ଅଟଳଜୀଙ୍କ ଭାଷଣର ଯାଦୁ ମଧ୍ୟ ଲୋକଙ୍କୁ ବହୁଭାବରେ ଆକୃଷ୍ଟ ଓ ପ୍ରଭାବିତ କରୁଥିଲା । ଭୋଟ ଫଳାଫଳ ଘୋଷିତ ହେବା ପରେ ସମଗ୍ର ବଳରାମପୁରରେ ବିପୁଳ ଆନନ୍ଦ-ଉଲ୍ଲାସ ସହକାରେ ବିଜୟ ଉତ୍ସବ ପାଳନ କରାଯାଇଥିଲା ।

ଚତୁର୍ଥ ଲୋକସଭାରେ ବିରୋଧୀ ପକ୍ଷର ଜଣେ ଟାଣୁଆ ନେତା ରୂପେ ଅଟଳଜୀଙ୍କର ଭୂମିକା ଆହୁରି ସକ୍ରିୟ ଓ ଫଳପ୍ରଦ ହୋଇଥିଲା । ବିଭିନ୍ନ ଆଲୋଚନାରେ ଭାଗ ନେଇ ସେ ବହୁ ମହତ୍ତ୍ୱପୂର୍ଣ୍ଣ ପ୍ରଶ୍ନ ଉପରେ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଓ ଭାଷଣ ଦେଇଥିଲେ । ସେଥିରୁ କେତୋଟି ଏଠାରେ ଉଦ୍ଧାର କରାଯାଇପାରେ ।

**।। ଜାମ୍ମୁ-କାଶ୍ମୀର ପରିସ୍ଥିତି ।।**

ଅଟଳଜୀ ତାଙ୍କର ଏକ ଭାଷଣ ପ୍ରସଙ୍ଗରେ କହିଥିଲେ : ''ଜାମ୍ମୁ-କାଶ୍ମୀର ଭାରତର ଅଭିନ୍ନ ଅଙ୍ଗ ବୋଲି ସମସ୍ତେ କହୁଛନ୍ତି । ଅଥଚ ଦେଶର ଏହି ଅଙ୍ଗ-ରାଜ୍ୟଟି ପାଇଁ ଏକ ପୃଥକ୍ ସମ୍ବିଧାନ ପ୍ରସ୍ତୁତ କରାଯାଇଛି । କାଶ୍ମୀରକୁ ଆମେ ଭାରତର ଭୂସ୍ୱର୍ଗ

ଓ ଭାରତମାତାର ମୁକୁଟମଣି ବୋଲି କହୁଛୁ; କିନ୍ତୁ ଏହାର ସମ୍ବିଧାନ ପୃଥକ୍, ନାଗରିକତା ପୃଥକ୍, ପତାକା ବି ପୃଥକ୍। କ'ଣ ଏହାର କାରଣ ? ଭାରତର ସମ୍ବିଧାନ ଯଦି ଅନ୍ୟ ସବୁ ରାଜ୍ୟ ପାଇଁ ଉପଯୁକ୍ତ, ତାହା କ'ଣ ଜାମ୍ମୁ-କାଶ୍ମୀର ପାଇଁ ଉପଯୁକ୍ତ ନୁହେଁ ? ଆମର ତ୍ରିରଙ୍ଗା ପତାକା ସାରା ଦେଶ ପାଇଁ 'ପ୍ୟାରା' ଏବଂ ସବୁରି ନୟନର ତାରା ହୋଇଥିବା ବେଳେ ଗୋଟିଏ ରାଜ୍ୟପାଇଁ ଅଲଗା ଝଣ୍ଡା ରଖାଯାଇଛି କାହିଁକି ? ସେଠାରେ ସମ୍ବିଧାନର ଯେଉଁ ଧାରା ୩୭୦ ବଳବତ୍ତର ରହିଛି, ତାହା ଥିଲା ଏକ ଅସ୍ଥାୟୀ ବ୍ୟବସ୍ଥା। ଏହା କଦାପି ସ୍ଥାୟୀ ହୋଇ ନ ପାରେ। ଏହାର ଉଚ୍ଛେଦ କରାଯାଉନାହିଁ କାହିଁକି ? ଏ ପ୍ରକାର ବ୍ୟବସ୍ଥା ଦ୍ୱାରା ଜାମ୍ମୁ-କାଶ୍ମୀର ଏବଂ ଅବଶିଷ୍ଟ ଭାରତ ମଧ୍ୟରେ ଯେଉଁ ଅଯଥା ମନସ୍ତାତ୍ତ୍ୱିକ ବିଭେଦର ପ୍ରାଚୀର ସୃଷ୍ଟି କରାଯାଉଛି, ସେ ସମ୍ପର୍କରେ ବିଚାର କରିବାକୁ ମୁଁ ସଦନର ଧ୍ୟାନ ଆକର୍ଷଣ କରୁଛି। ଏହି ପ୍ରାଚୀର ଯୋଗୁ ସେଠାରେ ଅସ୍ଥିରତାମୂଳକ ପରିସ୍ଥିତି ସୃଷ୍ଟି ହେଉଛି। ଏଥିଯୋଗୁ ସେଠାରେ ଭାରତବିରୋଧୀ ମନୋଭାବ ଓ ଗତିବିଧି ଉତ୍ସାହିତ ହେଉଛି। ତେଣୁ ବର୍ତ୍ତମାନ ସମୟ ଆସିଛି, ସେ ସବୁ ବ୍ୟବସ୍ଥାକୁ ଉଚ୍ଛେଦ କରି ଦିଆଯିବା ଆବଶ୍ୟକ।''

ଆଜିକୁ ତିନି ଦଶକ ତଳେ ଅଟଳଜୀ ଏହି ପ୍ରସ୍ତାବ ରଖିଥିଲେ। କିନ୍ତୁ ଆମ ଦେଶର ସରକାରମାନେ ଏପର୍ଯ୍ୟନ୍ତ ସେଥିପ୍ରତି କର୍ଣ୍ଣପାତ କରି ନାହାନ୍ତି। ଏହାର ପରିଣାମ ସ୍ୱରୂପ ସେଠାରେ ଉଗ୍ରପନ୍ଥୀ ଓ ବିଚ୍ଛିନ୍ନତାବାଦୀମାନଙ୍କର କାର୍ଯ୍ୟକଳାପ କିପରି ଚାଲିଆସିଛି, ତାହା କାହାରିକୁ ଅଜଣା ନାହିଁ। କାଶ୍ମୀରର ଲକ୍ଷ ଲକ୍ଷ ପଣ୍ଡିତ- ଅଧିବାସୀ ନିଜର ଘରଦ୍ୱାର ଛାଡ଼ି ଆଜି ଶରଣାର୍ଥୀରୂପେ କିପରି ଏଠି-ସେଠି ଘୂରି ବୁଲୁଛନ୍ତି, ତାହା ମଧ୍ୟ ସମସ୍ତେ ଦେଖୁଛନ୍ତି। ନିଜ ବାସଭୂମିରେ ହିଁ ଆଜି ସେମାନେ ପରବାସୀ !

**॥ ପଣ୍ଡିତ ଦୀନଦୟାଲଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ॥**

ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କ ବିୟୋଗରେ ଅଟଳଜୀ ୧୯୬୮ ମସିହା ଫେବୃୟାରୀ ୧୨ ତାରିଖ ଦିନ ସଂସଦରେ ଯେଉଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ, ତାର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି। ସେଥିରୁ ସ୍ୱର୍ଗତ ଦୀନଦୟାଲଜୀ ତଥା ଅଟଳଜୀ ଉଭୟଙ୍କ ମହନୀୟ ବ୍ୟକ୍ତିତ୍ୱର ପରିଚୟ ପାଠକମାନେ ପାଇ ପାରିବେ।

''ଅଧ୍ୟକ୍ଷ ମହୋଦୟ ! ଆମେ ଆଜି ଏକ ଗଭୀର ଶୋକଛାୟା ମଧ୍ୟରେ ଏଠାରେ ଏକତ୍ର ହୋଇଛେଁ। ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କର ଦେହାବସାନ ଆଜି ଆମକୁ ଘୋର ମର୍ମାହତ କରିଛି। ସେ ସଂସଦର ସଦସ୍ୟ ନ ଥିଲେ; କିନ୍ତୁ ଭାରତୀୟ ଜନସଂଘର ଯେତେ ସଭ୍ୟ ଆଜି ଏ ଗୃହରେ ତଥା ସଂସଦର ଅନ୍ୟ ଗୃହରେ ବସିଛନ୍ତି, ସେମାନଙ୍କର ବିଜୟ ପାଇଁ, ଜନସଂଘକୁ ଗଢ଼ି ତୋଳିବା ଓ ଆଗେଇ ନେବାପାଇଁ ଯଦି କାହାରିକୁ ଶ୍ରେୟ ଦିଆଯାଇପାରେ, ତେବେ ସେ ଜଣକ ହେଉଛନ୍ତି ପଣ୍ଡିତ ଉପାଧ୍ୟାୟଜୀ। ଦେଖିବାକୁ ସେ ଜଣେ ସାଦା-ସିଧା ମଣିଷ ଥିଲେ; କିନ୍ତୁ ସେ ଥିଲେ ଜଣେ ମୌଳିକ

ଚିନ୍ତାନାୟକ । କୁଶଳୀ ସଂଗଠକ ଓ ଦୂରଦର୍ଶୀ ନେତା ରୂପେ ସମସ୍ତଙ୍କୁ ସାଙ୍ଗରେ ନେଇ କାର୍ଯ୍ୟ କରିବାରେ ଯେଉଁ ଦକ୍ଷତାର ନିଦର୍ଶନ ସେ ଦେଇ ଯାଇଛନ୍ତି, ତାହା ନୂଆ ପୀଢ଼ିର ଯୁବକ-ଯୁବତୀମାନଙ୍କ ପାଇଁ ମାର୍ଗଦର୍ଶନର କାର୍ଯ୍ୟ କରିବ । ସର୍ବୋଚ୍ଚ ଶିକ୍ଷା ପ୍ରାପ୍ତ ହୋଇ ମଧ୍ଯ ସେ ଚାକିରୀ କରି ଧନ ଉପାର୍ଜନ ପାଇଁ ମନ ବଳାଇ ନ ଥିଲେ, ଜୀବନର ପ୍ରତ୍ୟେକ ମୁହୂର୍ତ୍ତକୁ ସେ ଦେଶ ଓ ଜନତାର ସେବା ପାଇଁ, ଭାରତମାତାର ସୀମନ୍ତକୁ ସୌଭାଗ୍ୟ-ସିନ୍ଦୂରରେ ମଣ୍ଡିତ କରିବା ଲାଗି ଉତ୍ସର୍ଗ କରି ଦେଇଥିଲେ ।

**।। ଉପାଧ୍ୟାୟଜୀଙ୍କ ଅସ୍ୱାଭାବିକ, ମର୍ମନ୍ତୁଦ ମୃତ୍ୟୁ ।।**

କିନ୍ତୁ ଶେଷରେ, ଯେଉଁ ପରିସ୍ଥିତିରେ ତାଙ୍କର ନିଧନ ହେଲା, ତାହା ଅତ୍ୟନ୍ତ ହୃଦୟବିଦାରକ । ଏହା କହିବା ଠିକ୍ ନୁହେଁ ଯେ, ସେ କୌଣସି ରେଳ ଦୁର୍ଘଟଣାର ଶିକାର ହେଲେ । ଏହା ପ୍ରାପ୍ତ ତଥ୍ୟାବଳୀର ବିପରୀତ କଥା । ଲକ୍ଷ୍ନୌରୁ ପାଟନା ଯାଉଥିବା ବେଳେ ମୋଗଲ ସରାଇ ଷ୍ଟେସନ୍‌ର କିଛି ଦୂରରେ ତାଙ୍କର ମରଦେହ ମିଳିଲା । ଯଦି ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହୋଇଥାନ୍ତା, ତେବେ ଶୋଇଥିବା ଭଳି ଅବସ୍ଥାରେ ତାଙ୍କର ଶବ ମିଳି ନ ଥାନ୍ତା । ପୁଣି ସେ ଶବ ଉପରେ ଏକ ଚାଦର ଘୋଡ଼ା ହୋଇ ନ ଥାନ୍ତା । ତା'ଛଡ଼ା ତାଙ୍କ ହାତରୁ ଏକ ପାଞ୍ଚଟଙ୍କିଆ ନୋଟ୍ ମିଳି ନ ଥାନ୍ତା । ତାଙ୍କ ଶରୀରରେ ଯେଉଁ ଆଘାତ ଚିହ୍ନ ଦେଖାଯାଇଛି, ସେଥିରୁ ମଧ୍ୟ ସୂଚନା ମିଳୁଛି ଯେ, ତାଙ୍କର ମୃତ୍ୟୁ ରେଳ ଦୁର୍ଘଟଣାରେ ହୋଇ ନାହିଁ । ଏ ମୃତ୍ୟୁର ଯାଞ୍ଚ ଦରକାର । ଏ ମୃତ୍ୟୁର ଅନ୍ୟ କିଛି କାରଣ ରହିଛି । ସେହି କାରଣ ଜାଣିବାପାଇଁ ଉପଯୁକ୍ତ ଯାଞ୍ଚ ଦରକାର । କେନ୍ଦ୍ର ସରକାର ଏ ସମ୍ବନ୍ଧରେ ଉଚ୍ଚସ୍ତରୀୟ ତଦନ୍ତ କରିବା ଆବଶ୍ୟକ ।

ତିନିଟା ପଇଁଚାଳିଶରେ ତାଙ୍କର ଶବ ଦେଖିବାକୁ ମିଳିଥିଲା । କିନ୍ତୁ ତାକୁ ପ୍ଲାଟଫର୍ମ ଉପରକୁ ଅଣାଯାଇ ନଥିଲା । କାହିଁକି ଅଣା ନଗଲା ? ତାଙ୍କ ପକେଟରେ ଟିକେଟ୍ ଥିଲା, ରିଜର୍ଭେସନ୍ ସ୍ଲିପ୍ ଥିଲା । ସେ ଯେ ଲକ୍ଷ୍ନୌରୁ ପାଟନା ଯାଉଥିଲେ, ସେ ସମ୍ପର୍କରେ ସନ୍ଧାନ କରାଯାଇ ପାରିଥାନ୍ତା । କିନ୍ତୁ ମୋଗଲସରାଇ ଷ୍ଟେସନ୍‌ର କର୍ମଚାରୀମାନେ ନିଜର କର୍ତ୍ତବ୍ୟ ପାଳନ କରି ନାହାନ୍ତି । ଯଦି ଆମର ଜଣେ କାର୍ଯ୍ୟକର୍ତ୍ତା ଘଟଣାସ୍ଥଳରେ ପହଞ୍ଚି ଯାଇ ନ ଥାନ୍ତେ, ତେବେ ତାଙ୍କ ମୃତଦେହକୁ ଏକ ବେୱାରିଶ୍ ଲାସ୍ କରି ଅନ୍ତିମ ସଂସ୍କାରପାଇଁ ପଠାଇ ଦିଆଯାଇଥାନ୍ତା ।

ପ୍ରଶ୍ନ କେବଳ ଜଣେ ନେତାଙ୍କର ମୃତ୍ୟୁ ନେଇ ନୁହେଁ; ଜଣେ ନାଗରିକର ଜୀବନର ସୁରକ୍ଷା ପ୍ରଶ୍ନ ମଧ୍ୟ ଏଥି ସହିତ ଜଡ଼ିତ । ତେଣୁ ଏହି ମୃତ୍ୟୁ ଘଟଣା ଉପରେ ପଡ଼ିଥିବା ସବୁ ରହସ୍ୟର ପର୍ଦ୍ଦା ଉନ୍ମୋଚିତ ହେବା, ଏହାର ପ୍ରକୃତ କାରଣ ଜାଣିବାପାଇଁ ସବୁ ପ୍ରକାର ପ୍ରଯତ୍ନ କରାଯିବା ଆବଶ୍ୟକ; ଯାହା ଫଳରେ ଏ ପ୍ରକାର ଦୁର୍ଘଟଣା

ଯେପରି ଭବିଷ୍ୟତ୍‌ରେ ନ ଘଟେ, ତାର ବ୍ୟବସ୍ଥା ହୋଇପାରିବ । ଏହା ଏକ ରାଜନୈତିକ ହତ୍ୟାକାଣ୍ଡ ବୋଲି ଯେଉଁ ସନ୍ଦେହ କରାଯାଉଛି, ଭବିଷ୍ୟତରେ ଯେପରି ଏ ପ୍ରକାର ଇଙ୍ଗିତ କରାଯାଇ ନ ପାରେ, ସେଥିପାଇଁ ଏ ଘଟଣାର ଉପଯୁକ୍ତ ତଦନ୍ତ ହେବା ନିତାନ୍ତ ଆବଶ୍ୟକ ।

ଅଧ୍ୟକ୍ଷ ମହୋଦୟ, ତାଙ୍କ ସମ୍ବନ୍ଧରେ ଆପଣ, ଆମର ପ୍ରଧାନମନ୍ତ୍ରୀ ତଥା ପ୍ରଫେସର ରଙ୍ଗାଜୀ ଯାହା ସବୁ କହିଛନ୍ତି, ସେଥିରେ ମୁଁ ନିଜକୁ ବି ସଂଶ୍ଳିଷ୍ଟ କରୁଛି । ତେବେ ମୋ ଅବସ୍ଥା ବଡ଼ ସଙ୍ଗୀନ୍ । ଦୀନଦୟାଲଜୀଙ୍କ ଅବର୍ତ୍ତମାନ୍‌ରେ ମୋତେ ତ ଚାରିଦିଗ ଅନ୍ଧାର ଦିଶୁଛି । ମୋପାଇଁ ତ ଆଲୋକଶିଖା ଲିଭିଯାଇଛି । ଆମେ ଏବେ ଦିଗହରା । ଆମପାଇଁ ତାଙ୍କର ଅଭାବ ଓ କ୍ଷତି କେବେ ବି ଭରଣା କରାଯାଇପାରିବ ନାହିଁ । ତଥାପି ରାଷ୍ଟ୍ରର ଜୀବନରେ କେବେ ଏପରି ଦୁର୍ଘଟଣା ନ ଘଟୁ ସେଥିଲାଗି ପ୍ରଯତ୍ନ କରାଯିବାର ଆବଶ୍ୟକତା ରହିଛି ।''

**।। ସମ୍ବାଦପତ୍ରର ସ୍ୱାଧୀନତା ସପକ୍ଷରେ ।।**

ଅଟଳଜୀ ସମ୍ବାଦପତ୍ରର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାର ବରାବର ପକ୍ଷପାତୀ ଥିଲେ । ସରକାରଙ୍କୁ ସମାଲୋଚନା କରିବା କାରଣରୁ କୌଣସି ସମ୍ବାଦପତ୍ର ଉପରେ କୌଣସି ପ୍ରକାର ଅଙ୍କୁଶ ଲଗାଇଲେ ସେ ତାର ତୀବ୍ର ବିରୋଧ କରୁଥିଲେ । ସେ ବିଶ୍ୱାସ କରୁଥିଲେ ଯେ, ସମ୍ବାଦପତ୍ରର ସ୍ୱାଧୀନତା ଉପରେ ଆକ୍ରମଣର ଅର୍ଥ, ଦେଶର ଗଣତନ୍ତ୍ର ଓ ନାଗରିକ ସ୍ୱାଧୀନତା ଉପରେ ଆକ୍ରମଣ । ନିଜର ଭାଷଣ ପ୍ରସଙ୍ଗରେ ସେ ଥରେ କହିଥିଲେ :

''ଲୋକତନ୍ତ୍ରର ଏକ ଆଧାର ହେଉଛି ପ୍ରେସ୍ ବା ସମ୍ବାଦପତ୍ରର ସ୍ୱାଧୀନତା । କିନ୍ତୁ ଆମର ପ୍ରଧାନମନ୍ତ୍ରୀ (ଶ୍ରୀମତୀ ଇନ୍ଦିରା ଗାନ୍ଧୀ) ପ୍ରେସ୍‌ର ଏହି ସ୍ୱାଧୀନତାକୁ ପସନ୍ଦ କରୁ ନ ଥିବା ଲକ୍ଷ୍ୟ କରାଯାଉଛି । ବମ୍ବେ କଂଗ୍ରେସ ଅଧିବେଶନ ବେଳେ ସେ କିଛି ସମ୍ବାଦପତ୍ରର ସମ୍ପାଦକ ଓ ସମ୍ବାଦଦାତାଙ୍କୁ ଡାକି ବମ୍ବେ ଅଧିବେଶନର ପବ୍ଲିଶିଟୀ ଠିକ୍ ଭାବରେ ହେଉ ନାହିଁ ବୋଲି ଦର୍ଶାଇବା ସଙ୍ଗେ ସଙ୍ଗେ କହିଥିଲେ ଯେ, ମୁଁ ଆପଣମାନଙ୍କର ମାଲିକମାନଙ୍କୁ ଡକାଇ ଦଶ ମିନିଟ୍ ଭିତରେ ଆପଣମାନଙ୍କୁ ଠିକ୍ କରି ଦେଇ ପାରିବି । ଅଧ୍ୟକ୍ଷ ମହୋଦୟ, ଭାରତର ସମାଚାର ପତ୍ରଗୁଡ଼ିକରେ ପ୍ରଧାନମନ୍ତ୍ରୀଙ୍କ ଭାଷଣ ଫଟୋ ଛାପା ହେବା ପାଇଁ ଯେତେ ସ୍ଥାନ ଦିଆଯାଇଛି, ଏତେ ସ୍ଥାନ ଦୁନିଆର ଅନ୍ୟ କୌଣସି ଗଣତାନ୍ତ୍ରିକ ଦେଶର ପ୍ରଧାନମନ୍ତ୍ରୀଙ୍କୁ ମିଳୁ ନାହିଁ । ତଥାପି ଆମ ପ୍ରଧାନମନ୍ତ୍ରୀ ସେତିକିରେ ସନ୍ତୁଷ୍ଟ ନୁହଁନ୍ତି । ହୁଏତ ସେ ଭାବୁଛନ୍ତି ଯେ - ''ଏକୋହଂ ଦ୍ୱିତୀୟୋ ନାସ୍ତି ।' ତାଙ୍କର ସମାନ ଆଉ କେହି ନାହାନ୍ତି । ଏ ପ୍ରକାର ମନୋଭାବ ଏକଛତ୍ରବାଦକୁ ଜନ୍ମ ଦେଇଥାଏ । ଏଥିପ୍ରତି ସେ ତଥା ଅନ୍ୟମାନେ ସାବଧାନ ରହିବା ଆବଶ୍ୟକ ।''

### ॥ ଗରିବ କୃଷକମାନଙ୍କ ସପକ୍ଷରେ ॥

ଅଟଳଜୀ ନିଜର ସଂସଦୀୟ ଜୀବନରେ ଦେଶର ଚାଷୀ ଓ ଗରିବ ଲୋକଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ବରାବର ଲଢ଼େଇ କରି ଆସିଛନ୍ତି । ଚାଷୀମାନେ ହିଁ ଦେଶର ମେରୁଦଣ୍ଡ ଏବଂ ସେମାନଙ୍କ ଅବସ୍ଥାର ଉନ୍ନତି ସାଧନ ଦ୍ୱାରା ହିଁ ଦେଶର ଅର୍ଥନୈତିକ ଉନ୍ନତି ସମ୍ଭବ ବୋଲି ସେ ବରାବର କହିଥାନ୍ତି । ଥରେ ସେ ନିଜର ଭାଷଣ ପ୍ରସଙ୍ଗରେ କହିଥିଲେ "ଚାଷୀମାନଙ୍କ ସ୍ୱାର୍ଥରକ୍ଷା ଲାଗି ଭୂମି-ସୁଧାର ଏକାନ୍ତ ଆବଶ୍ୟକ । ଯେଉଁମାନେ ଜମି ଚାଷ କରୁଛନ୍ତି, ସେହିମାନେ ହିଁ ଜମିର ମାଲିକ ହେବା ଉଚିତ । ପତିତ ଅନାବାଦୀ ଜମିଗୁଡ଼ିକୁ ଚାଷୋପଯୋଗୀ କରାଯାଇ ଭୂମିହୀନ ଲୋକଙ୍କ ମଧ୍ୟରେ ବାଣ୍ଟି ଦିଆଯିବା ଦରକାର । ଏଥିରେ ଆମର କିଛି ମତଭେଦ ନାହିଁ ।" ୧୯୭୧ ମାର୍ଚ୍ଚ ୩୧ରେ ସେ ରାଷ୍ଟ୍ରପତିଙ୍କ ଭାଷଣ ଉପରେ ଧନ୍ୟବାଦ ପ୍ରସ୍ତାବର ଆଲୋଚନାରେ ଭାଗ ନେଇ ଏହି ମର୍ମରେ କହିଥିଲେ ।

### ॥ ସାମ୍ପ୍ରଦାୟିକତାର ପ୍ରଶ୍ନ ॥

ସାଂପ୍ରଦାୟିକତା ଓ ଧର୍ମନିରପେକ୍ଷତା ନେଇ ଦେଶରେ ବହୁ ଦିନରୁ ବହୁ କଥା କୁହାଯାଇ ଆସୁଛି । କିନ୍ତୁ ଏ ପ୍ରଶ୍ନ ନେଇ ଗମ୍ଭୀରତା ସହକାରେ ଖୁବ୍ କମ୍ ବିଚାର-ବିମର୍ଶ କରାଯାଇଛି । ପ୍ରକୃତରେ ସାଂପ୍ରଦାୟିକତାବାଦୀ କେଉଁମାନେ ? ଯେଉଁମାନେ ଆମର ଜାତୀୟ ସଙ୍ଗୀତ 'ବନ୍ଦେ ମାତରମ୍'କୁ ବିରୋଧ କରନ୍ତି, ଯେଉଁମାନେ ଭାରତମାତାକୁ 'ଡାହାଣୀ' ବୋଲି କହନ୍ତି, ଯେଉଁମାନେ ରାଣା ପ୍ରତାପ ଓ ଶିବାଜୀଙ୍କୁ 'ଲୁଟେରା' ବୋଲି ଅଭିହିତ କରନ୍ତି, ସେମାନେ କିଏ ଓ କ'ଣ ? ଯେଉଁମାନେ ନିଜକୁ 'ଧର୍ମନିରପେକ୍ଷ' ବୋଲି କହି ଡିଣ୍ଡିମ ପିଟି ଚାଲିଛନ୍ତି, ସେମାନେ କେବେ ଏ ସବୁ ପ୍ରଶ୍ନର ଉତ୍ତର ଦେଇଛନ୍ତି କି ? ଦେଶରେ କେଉଁମାନେ ଦଙ୍ଗାଗୋଳ ଭିଆଉଛନ୍ତି ? ସାଧାରଣତଃ ମୁସଲମାନବହୁଳ ସ୍ଥାନଗୁଡ଼ିକରେ ବେଶି ଦଙ୍ଗା-ଗୋଳ ହେବାର କାରଣ କ'ଣ ? ଯେଉଁମାନଙ୍କୁ ଅଯଥାରେ 'ସାଂପ୍ରଦାୟିକତାବାଦୀ' ବୋଲି ଆଖ୍ୟା ଦିଆଯାଇ 'ଅସ୍ପୃଶ୍ୟ' କରି ରଖିବାର ଉଦ୍ୟମ ହେଉଛି, ସେମାନଙ୍କ ଦ୍ୱାରା ଶାସିତ ରାଜ୍ୟମାନଙ୍କରେ ସାଂପ୍ରଦାୟିକ ଦଙ୍ଗାଗୋଳ ସୃଷ୍ଟି ହୋଇ ନ ପାରିବାର କାରଣ କ'ଣ ? ଏ ସବୁ ପ୍ରଶ୍ନ ଘେନି ଉପଯୁକ୍ତ ବିଚାର କରାଯାଉଛି କି ?

### ॥ ଦଙ୍ଗାଗୋଳ ଭିଆଉଛି କିଏ ? ॥

୧୯୭୦ ମସିହାରେ ସଂଘଟିତ ଏକ ଭୟାବହ ସାଂପ୍ରଦାୟିକ ଦଙ୍ଗା ପରିପ୍ରେକ୍ଷୀରେ ସେ ବର୍ଷ ମେ'ମାସ ୧୪ ତାରିଖ ଦିନ ଲୋକସଭାରେ ସାମ୍ପ୍ରଦାୟିକତା ପ୍ରଶ୍ନ ଉପରେ ହୋଇଥିବା ଏକ ଆଲୋଚନାରେ ଭାଗ ନେଇ ଅଟଳଜୀ ଯାହା କହିଥିଲେ, ତାହା ଏଠାରେ ଉଦ୍ଧାର କରାଯାଉଛି । ସରକାରଙ୍କୁ ସେ ପ୍ରଶ୍ନ କରିଥିଲେ :

''ସମସ୍ତେ ଜାଣନ୍ତି, ଭିଓଣ୍ଡିରେ ମୁସ୍ଲିମ୍ ଜନସଂଖ୍ୟା ଅଧିକ। ଏଥର ଶିବାଜୀ ଜୟନ୍ତୀର କିଛିଦିନ ପୂର୍ବରୁ ମୁସ୍ଲିମ ନେତାମାନେ ଶିବାଜୀ ଜୟନ୍ତୀ ଉପଲକ୍ଷେ ବାହାରିବାକୁ ଥିବା ଶୋଭାଯାତ୍ରା ଉପରେ କେତେକ କଟକଣା ବା ସର୍ତ୍ତ ଆରୋପ କରିବାପାଇଁ ଚେଷ୍ଟା କଲେ। ସେଥିରୁ ଗୋଟିଏ ସର୍ତ୍ତ ଥିଲା ଶୋଭଯାତ୍ରାରେ ଭଗଓ୍ୱା ବା ଗୈରିକ ପତାକା ରହିବ ନାହିଁ। ପ୍ରଶ୍ନ ହେଉଛି: ଗୈରିକ ପତାକା ଶିବାଜୀ ମହାରାଜଙ୍କ ଝଣ୍ଡା ନ ଥିଲା କି ? ତ୍ରିରଙ୍ଗ ପତାକା ପୂର୍ବରୁ କ'ଣ ଏ ଦେଶରେ ଅନ୍ୟ କୌଣସି ପତାକା ନ ଥିଲା ? ବିନା ତ୍ରିରଙ୍ଗାରେ ଆମେ କ'ଣ ଗାନ୍ଧିଜୀଙ୍କ କଳ୍ପନା କରି ପାରନ୍ତି ? ପାର୍ଲିଆମେଣ୍ଟର ସେଣ୍ଟ୍ରାଲ ହଲରେ ପଣ୍ଡିତ ନେହେରୁଙ୍କର ଯେଉଁ ଚିତ୍ର ଲଗାଯାଇଚି, ତାର ପୃଷ୍ଠଭୂମିରେ ତ୍ରିରଙ୍ଗ ପତାକା ରହିଛି। ବିନା ତ୍ରିରଙ୍ଗାରେ ଆମେ ଯଦି ଗାନ୍ଧିଜୀ ବା ନେହେରୁଜୀଙ୍କ କଳ୍ପନା କରି ନ ପାରିବା, ତେବେ ସେହିପରି ବିନା ଗୈରିକ ପତାକାରେ ଶିବାଜୀ ମହାରାଜଙ୍କ କଳ୍ପନା ବି କରାଯାଇ ପାରିବ ନାହିଁ।

ତା'ଛଡ଼ା ଗୈରିକ ପତାକାକୁ ମୁସ୍ଲିମମାନଙ୍କର ବିରୋଧ କାହିଁକି ? ଇସ୍ଲାମ ଧର୍ମ କ'ଣ କହୁଛି ଯେ, ଗୈରିକ ରଙ୍ଗଟା ଖରାପ ? କୋରାନରେ କ'ଣ ଲେଖାଯାଇଛି ଯେ, ଗୈରିକ ରଙ୍ଗର ବିରୋଧ କରାଯିବା ଦରକାର ? ଦେଶର ସ୍ୱାଧୀନତା ହାସଲ ପରେ କନଷ୍ଟିଚ୍ୟୁଏଣ୍ଟ୍ ଆସେମ୍ବ୍ଲି ଯଦି ନିଷ୍ପତ୍ତି କରିଥାନ୍ତା ଯେ ଭାରତର ପତାକା ଗୈରିକ ରଙ୍ଗର ହେବ, ତେବେ ମୁସଲମାନମାନେ କ'ଣ ଏହାକୁ ବର୍ଜନ କରିଥାନ୍ତେ ? ତା'ହେଲେ ଭିଓଣ୍ଡିରେ ସେମାନେ ଏ ପ୍ରକାର ଅନ୍ୟାୟ ସର୍ତ୍ତ ଆରୋପ କଲେ କାହିଁକି ? ସର୍ତ୍ତ ଠିକ୍ ବୋଲି ନିଜକୁ ଶିବାଜୀ ମହାରାଜଙ୍କ ବଂଶର ଉତ୍ତରାଧିକାରୀ ବୋଲି ଦାବୀ କରୁଥିବା ଶ୍ରୀ ଯଶୋବନ୍ତ ରାଓ ଚୌହାନ୍ ବି କହି ପାରୁଛନ୍ତି।

ମୁସଲମାନମାନେ ଆହୁରି ସର୍ତ୍ତ ରଖିଥିଲେ ଯେ, ଶୋଭାଯାତ୍ରା କାଳରେ ଅବିର ବ୍ୟବହାର କରା ନ ଯାଉ। ଅବିର ସମ୍ପର୍କରେ ଆପତ୍ତି କାହିଁକି ? ଅବିର ବା ଗୁଲାଲ ତ ଅନୁରାଗ ଓ ସୌହାର୍ଦ୍ଦ୍ୟର ପ୍ରତୀକ। ଯେତେବେଳେ ଆମେ ଆନନ୍ଦରେ ଥାନ୍ତି, ଅବିର ଉଡ଼ାଇଥାନ୍ତି। ଏହା ଆମ ଦେଶର ପ୍ରାଚୀନ ପରମ୍ପରା। ଧର୍ମ ସହିତ ତାର କିଛି ସମ୍ବନ୍ଧ ନାହିଁ। ଶିବାଜୀ ମହାରାଜଙ୍କ ଜୟନ୍ତୀ ଶୋଭାଯାତ୍ରାରେ ଯଦି କେହି ଖୁସିରେ କିଛି ଅବିର ବ୍ୟବହାର କରନ୍ତି, ସେଥିରେ କାହାର ଆପତ୍ତି କରିବାର କ'ଣ ଅଛି ?

ଶୋଭାଯାତ୍ରା ଉପରେ ଆକ୍ରମଣ କରାଗଲା ଏବଂ ତା'ସହିତ ଭିଓଣ୍ଡି ସହରର କେତେକ ସ୍ଥାନରେ ନିଆଁ ଲଗାଇ ଦିଆଗଲା। ମୁଁ ପଚାରିବାକୁ ଚାହେଁ, ଭିଓଣ୍ଡିରେ ଶାନ୍ତି ରକ୍ଷା ପାଇଁ ସେନାବାହିନୀକୁ ଡକା ନ ଗଲା କାହିଁକି ? ଜଇଗାଉଁରେ ଯଦି ସୈନ୍ୟ ମୁତୟନ କରାଯାଇ ପାରୁଛି, ତେବେ ଭିଓଣ୍ଡିରେ କାହିଁକି ନୁହେଁ ? ଦଙ୍ଗାଗୋଳ ପ୍ରକୃତରେ କାହିଁକି ହେଉଛି ଏବଂ ଏହାକୁ କେଉଁମାନେ କେଉଁ ଉଦ୍ଦେଶ୍ୟରେ ଭିଆଉଛନ୍ତି, ତାର ଉପଯୁକ୍ତ ବିଚାର ସଦନରେ ହେବା ଆବଶ୍ୟକ।''

**।। ସଚ୍ଚା ଦେଶଭକ୍ତିର ପରିଚୟ ।।**

ଦେଶ ଉପରେ ଯେତେବେଳେ କୌଣସି ବିପତ୍ତିର କଳାବାଦଲ ଦେଖାଯାଏ ଅଥବା ଦେଶର ସାର୍ବଭୌମତ୍ୱ, ଅଖଣ୍ଡତା ଓ ସ୍ୱାଧୀନତା ଉପରେ ଯେତେବେଳେ କୌଣସି ବିପଦ ଦେଖାଦିଏ, ଅଟଳଜୀ ସେତେବେଳେ ଜଣେ ସଚ୍ଚା ଦେଶଭକ୍ତ ଓ ସେବକରୂପେ ଦଳ-ମତର ଉର୍ଦ୍ଧ୍ୱକୁ ଉଠି ସରକାରଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ, ପାଦରେ ପାଦ ମିଳାଇ ଦେଶର ସୁରକ୍ଷା ପାଇଁ ଆଗେଇଯିବାକୁ ସମସ୍ତଙ୍କୁ ଆହ୍ୱାନ ଦେଇଥାନ୍ତି । ତାଙ୍କ ପାଇଁ ପ୍ରଥମେ ମାତୃଭୂମି ଏବଂ ଅନ୍ୟ ସବୁ କିଛି ପରେ ।

୧୯୭୧ରେ ପାକିସ୍ଥାନ ଯେତେବେଳେ ବାଂଲାଦେଶ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବରୁ ଭାରତ ଉପରେ ଅଚାନକ ଆକ୍ରମଣ କରିଦେଲା, ସେତେବେଳେ ଅଟଳଜୀ ଲୋକସଭାରେ ଯେଉଁ ଭାଷଣ ଦେଇଥିଲେ, ତାହା ସରକାର, ଜନସାଧାରଣ ତଥା ସବୁ ଦଳ ଉପରେ ବିପୁଳ ପ୍ରଭାବ ସୃଷ୍ଟି କରିପାରିଥିଲା । ସେ କହିଥିଲେ: ‘‘ଭାରତ ବନ୍ଦନର ଭୂମି, ଅଭିନନ୍ଦନର ଭୂମି, ଭାରତ ଅର୍ପଣର ଭୂମି, ତର୍ପଣର ଭୂମି । ଆମେ ବଞ୍ଚିବା ତ ତା’ରି ପାଇଁ, ମରିବା ତ ତା’ରି ପାଇଁ । ଏହା ହିଁ ହେଉ ଆମର ସର୍ବପ୍ରଥମ ଆଉ ସର୍ବପ୍ରଧାନ ସଂକଳ୍ପ ।’’

ଦେଶରେ ସେତେବେଳେ ଯୁଦ୍ଧଜନିତ ସଙ୍କଟକାଳ ଘୋଷିତ ହୋଇଯାଇଥିଲା । ଲୋକସଭାରେ ସେତେବେଳେ ସେ ଯେଉଁ ଭାଷଣ ଦେଇଥିଲେ, ତାହା ଏକ ଐତିହାସିକ ଦଲିଲ ହୋଇ ରହିଛି । ସେଥିରୁ କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି :

**।। ଦଳ-ମତର ବହୁ ଉର୍ଦ୍ଧ୍ୱରେ ।।**

‘‘ଆଜି ଆମେ ଏକ ରାଷ୍ଟ୍ରୀୟ ସଙ୍କଟର ଛାୟାରେ ଏକତ୍ର ହୋଇଥାଇଁ । ପାକିସ୍ଥାନ ହଠାତ୍ ଆମ ଉପରେ ଏକ ଯୁଦ୍ଧ ଲଦି ଦେଇଛି । ଆମେ ଏବେ ଏକ ଅଗ୍ନି-ପରୀକ୍ଷାର ସମ୍ମୁଖୀନ । ଆମର ଦୃଢ଼ ବିଶ୍ୱାସ ଆମେ ଏହି ଅଗ୍ନ–ପରୀକ୍ଷାରୁ ନିଶ୍ଚିତଭାବେ ଉତ୍ତୀର୍ଣ୍ଣ ହୋଇ ପାରିବା । ଆମେ ନିଜ ଦେଶର ସୀମାକୁ ସୁରକ୍ଷିତ କରି ରଖିବା ସହିତ ପାକିସ୍ଥାନକୁ ଉପଯୁକ୍ତ ଶିକ୍ଷା ଦେଇ ପାରିବା । ଏଥିରେ କୌଣସି ସଂଶୟ ନାହିଁ, ଥାଇ ନ ପାରେ ।

ଆଜି ମୁଁ ମୋ ଦଳ ପକ୍ଷରୁ କିଛି କହିବାପାଇଁ ପ୍ରସ୍ତୁତ ନୁହେଁ । ଦଳର ବିଚାର ଆଜି ଆଉ ମୋ ମନରେ ନାହିଁ । ଆଜି ତ ସମଗ୍ର ଦେଶ ଏକ ଦଳରେ ପରିଣତ ହୋଇଛି । ରାଜନୀତିର ସବୁ ମତଭେଦ ଭୁଲି, ଛୋଟ ଛୋଟ କଥାକୁ ପଛରେ ପକାଇ ଆଜି ଆମ ସମସ୍ତଙ୍କୁ କାନ୍ଧରେ କାନ୍ଧ ମିଶାଇ, ପାଦରେ ପାଦ ମିଳାଇ ବିଜୟ ଲାଗି ଆଗେଇଯିବାକୁ ପଡ଼ିବ । ଏହା ହିଁ ଆଜି ଆମ ପାଇଁ ସମୟର ଆହ୍ୱାନ । ଏ ସଂଘର୍ଷ ଆମଠାରୁ ଯେତେ ବଳିଦାନ ଚାହିଁବ, ଆମେ ଦେବାକୁ ପ୍ରସ୍ତୁତ ରହିବା । ଯେତେ ଅନୁଶାସନ ଆବଶ୍ୟକ ହେବ, ଆମେ ତାର ପରିଚୟ ଦେବା ।

ଅଧ୍ୟକ୍ଷ ମହୋଦୟ, ମାତାମାନେ ଯେଉଁଦିନ ପାଇଁ ସନ୍ତାନମାନଙ୍କୁ ଜନ୍ମ ଦେଇଥାନ୍ତି, ଆଜି ସେ ଦିନଟି ଆମ ପାଇଁ ଆସିଯାଇଛି। ଭଉଣୀମାନେ ଯେଉଁଦିନ ପାଇଁ ଭାଇମାନଙ୍କ ହାତରେ ରାକ୍ଷୀ ବାନ୍ଧିଥାନ୍ତି, ଆଜି ସେହିଦିନ ଆସିଯାଇଛି। ଏହି ସଂକଳ୍ପ ବଳରେ ହିଁ ଆମେ ନିଶ୍ଚିତଭାବେ ବିଜୟୀ ହେବା। ପ୍ରଧାନମନ୍ତ୍ରୀ (ଶ୍ରୀମତୀ ଇନ୍ଦିରା ଗାନ୍ଧି) ଆଜି ଆମ ସମସ୍ତଙ୍କର ନେତା। ତାଙ୍କ ନେତୃତ୍ୱରେ ଆଜି ଆମେ ଏକ ନୂଆ ଇତିହାସ ନିର୍ମାଣ କରିବା।'' (ଦ୍ରଷ୍ଟବ୍ୟ : ୧୯୭୧ ଡିସେମ୍ବର ୪ ତାରିଖର ଲୋକସଭା-କାର୍ଯ୍ୟ ବିବରଣୀ)

**।। ବାଂଲାଦେଶକୁ ସ୍ୱୀକୃତି ପ୍ରଦାନ ।।**

ଅଟଳଜୀ କେବଳ ବିରୋଧ କରିବା ଲାଗି ବିରୋଧ କରନ୍ତି ନାହିଁ। ଭାରତ ସରକାର ଯେତେବେଳେ ସ୍ୱାଧୀନ ବାଂଲାଦେଶକୁ ମାନ୍ୟତା ବା ସ୍ୱୀକୃତି ଦେଲେ, ସେତେବେଳେ ସେ ସ୍ପଷ୍ଟ ଭାଷଣରେ ସରକାର ତଥା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ପଦକ୍ଷେପକୁ ସର୍ବାନ୍ତଃକରଣରେ ସ୍ୱାଗତ କରିଥିଲେ। ସେ ଦର୍ଶାଇଥିଲେ ଯେ, ଆମର ରାଜନୀତି ସକାରାତ୍ମକ ହେବା ଆବଶ୍ୟକ। କୌଣସି ବିଷୟରେ ଗୁଣ-ଦୋଷ ବିଚାର ନ କରି କେବଳ ଭାବାବେଗରେ କିଛି କହିବା ଉଚିତ୍ ନୁହେଁ। ଏ ସଂକ୍ରାନ୍ତରେ କମ୍ୟୁନିଷ୍ଟମାନଙ୍କର ଦ୍ୱନ୍ଦ୍ୱାତ୍ମକ ଭୂମିକାକୁ ସେ ସମାଲୋଚନା କରିଥିଲେ। ଲୋକସଭାରେ ଏ ସଂକ୍ରାନ୍ତ ଅଭିଭାଷଣରେ ସେ କହିଥିଲେ :

''ଆଜି ଆମେ ଇତିହାସକୁ ଏକ ନୂଆ ଦିଗ୍‌ଦର୍ଶନ ଦେବାକୁ ପ୍ରଯତ୍ନ କରୁଛେଁ। ନିଜର ସ୍ୱାଧୀନତା ପାଇଁ ଲଢୁଥିବା ବାଂଲାଦେଶୀ ଜନଗଣ ଏବଂ ଭାରତୀୟ ଜବାନ୍‌ମାନଙ୍କର ରକ୍ତ ଆଜି ଏକା ସାଙ୍ଗରେ ପ୍ରବାହିତ ହେଉଛି। ଏହା ଏପରି ଏକ ସମ୍ବନ୍ଧ ଭବିଷ୍ୟତ୍‌ରେ ନିର୍ମାଣ କରି ପାରିବ, ଯାହା କୌଣସି ପ୍ରକାର ଚାପ ବଳରେ ତୁଟିଯିବ ନାହିଁ, ଯାହା କୌଣସି ପ୍ରକାର କୂଟନୀତିର ଶିକାର ହେବ ନାହିଁ। ବାଂଲାଦେଶର ମୁକ୍ତି ଏବେ ଆସନ୍ନ। ମୋର ଦୃଢ଼ ବିଶ୍ୱାସ, ଭାରତୀୟ ସୈନ୍ୟମାନେ ଶୀଘ୍ର ଢାକାରେ ପହଞ୍ଚିଯିବେ। ଏହି ସମୟରେ ଭାରତ ସରକାର ବାଂଲାଦେଶକୁ ସ୍ୱୀକୃତି ଦେଇ କେବଳ ସେଠାକାର ମୁକ୍ତି-ସଂଗ୍ରାମୀମାନଙ୍କୁ ସହାୟତା କରି ନାହାନ୍ତି, ବାଂଲାଦେଶକୁ ଏକ ଆନ୍ତର୍ଜାତିକ ସ୍ଥିତି ମଧ୍ୟ ଦେଇଛନ୍ତି। ତେଣୁ ଆମର ପ୍ରଧାନମନ୍ତ୍ରୀ ଏଥିଲାଗି ଏକାନ୍ତ ଅଭିନନ୍ଦନୀୟ।'' (ଦ୍ରଷ୍ଟବ୍ୟ : ୧୯୭୧ ଡିସେମ୍ବର ୬ ତାରିଖର ଲୋକସଭା କାର୍ଯ୍ୟବିବରଣୀ।)

**।। ଡଃ ଲୋହିଆଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ।।**

ଦେଶର ସମାଜବାଦୀ ଚିନ୍ତାଧାରାର ବିଶିଷ୍ଟ ପ୍ରବକ୍ତା ଡଃ ରାମ ମନୋହର ଲୋହିଆ ଜଣେ ମହାନ୍ ଦେଶଭକ୍ତ, ସ୍ୱାଧୀନତା ସଂଗ୍ରାମୀ ଓ କ୍ରାନ୍ତିକାରୀ ଜନନେତା ଥିଲେ। ତାଙ୍କର ବିୟୋଗରେ ଅଟଳଜୀ ୧୯୬୭ ନଭେମ୍ବର ୧୩ ତାରିଖରେ ଯେଉଁ

ଆବେଗପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ, ସେଥିରୁ କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି :

"ଡଃ ଲୋହିଆ କେବଳ ସ୍ୱାଧୀନତା ସଂଗ୍ରାମର ଜଣେ ଅଗ୍ରଗଣ୍ୟ ସୈନିକ ନ ଥିଲେ; ସେ ଥିଲେ ଜଣେ ମୌଳିକ ଚିନ୍ତାନାୟକ ଓ କ୍ରାନ୍ତିଦର୍ଶୀ ନେତା । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ବିବିଧତାରେ ପରିପୂର୍ଣ୍ଣ ଏବଂ ବହୁମୁଖୀ ପ୍ରତିଭାସମ୍ପନ୍ନ ଥିଲା । ଅବଶ୍ୟ ସେ ଜଣେ ବିବାଦୀୟ ବ୍ୟକ୍ତିତ୍ୱ ଥିଲେ ଓ ନୂଆ ନୂଆ ବିବାଦ ସୃଷ୍ଟି କରି ବରାବର ଚର୍ଚ୍ଚିତ ହେଉଥିଲେ । ଏହା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ଥିଲା । ଦେଶକୁ ଜୀବନର ଏକ ନୂଆ ଦିଗ୍‌ଦର୍ଶନ ଦେବାକୁ ବରାବର ସେ ପ୍ରଯତ୍ନ କରୁଥିଲେ ଏବଂ ଏକ ନୂଆ ଶାସନର ବାର୍ତ୍ତାବହ ତଥା ସଂଯୋଜକ ରୂପେ କାର୍ଯ୍ୟ କରୁଥିଲେ । ତାଙ୍କ ବିଚାରଧାରାରେ କାହାର କୌଣସି ମତଭେଦ ଥାଇପାରେ , କିନ୍ତୁ ତାଙ୍କର ନିଷ୍ଠା ଓ ଆନ୍ତରିକତା ଘେନି କାହାରି ଭିନ୍ନ ମତ ନ ଥିଲା । ଦଳିତମାନଙ୍କ ପାଇଁ, ପୀଡ଼ିତ ଓ ଦରିଦ୍ର ଲୋକଙ୍କ ଲାଗି ତାଙ୍କ ହୃଦୟରେ ସହାନୁଭୂତିର ଯେଉଁ ଅଗ୍ନି ଜଳୁଥିଲା, ତାହା ତାଙ୍କ ନିକଟକୁ ଯାଉଥିବା ଲୋକଙ୍କ ହୃଦୟକୁ ବି ଉଷ୍ମ ଓ ଆଲୋକିତ କରୁଥିଲା ।"

**।। ପଞ୍ଚମ ସଂସଦ ନିର୍ବାଚନ ।।**

ଚତୁର୍ଥ ଲୋକସଭାର ମିଆଦ ପୂରିବାକୁ ବର୍ଷାଧିକ ସମୟ ଅବଶିଷ୍ଟ ଥିବା ଅବସ୍ଥାରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ନିଜ ଦଳର ସୁବିଧା ତଥା ଅନୁକୂଳ ପରିସ୍ଥିତି ଦୃଷ୍ଟିରୁ ହଠାତ୍ ପଞ୍ଚମ ଲୋକସଭା ନିର୍ବାଚନ କରାଯିବା ନିମନ୍ତେ ନିଷ୍ପତ୍ତି ଘୋଷଣା କରିଦେଲେ । ୧୯୭୧ରେ ଏହି ନିର୍ବାଚନ ଅନୁଷ୍ଠିତ ହେଲା । ଅଟଳଜୀ ଏଥର ନିଜର ଜନ୍ମସ୍ଥାନ ଗ୍ୱାଲିୟରରୁ ନିର୍ବାଚନ ଲଢ଼ିବା ନିମନ୍ତେ ସ୍ଥିର କଲେ ।

ଗ୍ୱାଲିୟରରେ ଜନ୍ମ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଏହିଠାରେ ହିଁ ସେ ନିଜର ବାଲ୍ୟ, କୈଶୋର ଓ ଯୌବନାବସ୍ଥାର କିଛି କାଳ ବିତାଇଥିଲେ । ଏହିଠାରେ ହିଁ ସେ ସାହି-ବସ୍ତିର ସାଙ୍ଗ-ସାଥୀମାନଙ୍କ ସହିତ ମିଶି ପାଠ ପଢ଼ିଛନ୍ତି, କେତେ ସାଂସ୍କୃତିକ ଓ ସେବାମୂଳକ କାର୍ଯ୍ୟକ୍ରମରେ ଭାଗ ନେଇଛନ୍ତି । ଗ୍ୱାଲିୟରରେ ବି.ଏ. ପର୍ଯ୍ୟନ୍ତ ଶିକ୍ଷା ଗ୍ରହଣ କରିବା ସହିତ, ଏହି ସହରର ଲକ୍ଷ୍ମୀନଗର ଶାଖାରେହିଁ ସେ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ପାଠଶାଳାରେ "ନମସ୍ତେ ସଦା ବସଲେ ମାତୃଭୂମେ"ର ପ୍ରଥମ ପାଠ ମଧ୍ୟ ପଢ଼ିଥିଲେ । ତାଙ୍କର ଘର-ପରିବାର ସବୁ ଏହି ସହରରେ । ଏହାର ପ୍ରତି ଗଳି-କନ୍ଦିରେ ସେ ସୁପରିଚିତ । ଅତଏବ ଗ୍ୱାଲିୟର ପ୍ରତି ତାଙ୍କର ସ୍ୱାଭାବିକ ଆବେଗଗତ ଆକର୍ଷଣ ମୂଳରୁହିଁ ରହି ଆସିଥିଲା । ସେଇଥିପାଇଁ ସୁଯୋଗ ପାଇବା ମାତ୍ରେ ସେ ଏଠାକୁ ଚାଲି ଆସନ୍ତି ଏବଂ ନିଜର ଭି.ଆଇ.ପି. ପରିଚୟକୁ ଦୂରେଇ ଦେଇ ପିଲାମାନଙ୍କ ସହିତ ଟାଙ୍ଗାରେ ବସି ମେଳାକୁ ଯା'ନ୍ତି, ଝୁଲାରେ ଝୁଲନ୍ତି, ସିନେମା ଦେଖନ୍ତି ଏବଂ ସାଇକେଲରେ

ବସି ନିଜର ପୁରୁଣା - ସାଙ୍ଗସାଥୀମାନଙ୍କ ଘରକୁ ବୁଲି ଯାଆନ୍ତି । ସେ ଚାହିଁଥିଲେ ତାଙ୍କ ରାଜନୈତିକ ଜୀବନର ପ୍ରଥମ ନିର୍ବାଚନରେହିଁ ସେ ଏଠାରୁ ପ୍ରାର୍ଥୀ ହୋଇ ପାରିଥାନ୍ତେ, ଯାହା କି ତାଙ୍କ ପାଇଁ ବିଶେଷ ସୁବିଧାଜନକ ହୋଇ ପାରିଥାନ୍ତା । ମାତ୍ର ରାଜନୀତିର ଆବଶ୍ୟକତା ତଥା ଦଳର ଆବଶ୍ୟକତା ପ୍ରତି ପ୍ରଥମେହିଁ ଦୃଷ୍ଟି ଦେବାକୁ ପଡ଼ିଥିଲା ।

ସେ ଯାହା ହେଉ, ପଞ୍ଚମ ଲୋକସଭା ନିର୍ବାଚନ ପାଇଁ ଅଟଳଜୀ ଗ୍ୱାଲିୟରରୁ ପ୍ରାର୍ଥୀ ହେବା ପାଇଁ ନିଷ୍ପତ୍ତି କରିବା ଫଳରେ ଏ ଅଞ୍ଚଳରେ ସ୍ୱାଭାବିକ ଭାବେ ବ୍ୟାପକ ଆନନ୍ଦ-ଉତ୍ସାହ ଖେଳି ଯାଇଥିଲା । କାରଣ ସେଠା ଲୋକେ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ଏବଂ ତାଙ୍କ ପାଇଁ ଗର୍ବ ଅନୁଭବ କରୁଥିଲେ । ଅତଏବ ଅଟଳଜୀ ଏ ନିର୍ବାଚନରେ ଏଠାରୁ ଅତି ସହଜରେ ଏବଂ ବିପୁଳ ଭୋଟାଧିକ୍ୟରେ ଲୋକସଭାକୁ ନିର୍ବାଚିତ ହେଲେ ।

ପଞ୍ଚମ ଲୋକସଭା ଗଠିତ ହେବା ବେଳକୁ ରାଜନୀତିକ କ୍ଷେତ୍ରରେ ତଥା ଜଣେ ପ୍ରଭାବଶାଳୀ ସାଂସଦ ଭାବରେ ଅଟଳଜୀଙ୍କ ପ୍ରତିଷ୍ଠା ବହୁତ ବଢ଼ିଯାଇଥିଲା । ସାରା ଦେଶରେ ତାଙ୍କର ଏକ ବିପୁଳ ଜନାଧାର ଗଠିତ ହୋଇ ସାରିଥିଲା । ତାଙ୍କୁ ସର୍ବତ୍ର ପଣ୍ଡିତ ନେହେରୁଙ୍କ ପରି ସମ୍ମାନ ଓ ଲୋକପ୍ରିୟତା ମିଳି ପାରୁଥିଲା । ସଂସଦରେ ତାଙ୍କର ପ୍ରଶ୍ନ ସବୁର ଉତ୍ତର ଦେବା ପାଇଁ ଶାସକ ଦଳର ନେତା ଓ ମନ୍ତ୍ରୀମାନଙ୍କୁ ଅତ୍ୟନ୍ତ ସତର୍କ ହେବାକୁ ପଡୁଥିଲା । ତୀବ୍ର ସମାଲୋଚନା ସହିତ ତାଙ୍କର ସିଧା-ସଳଖ କଥା ଓ ବ୍ୟଙ୍ଗ -ବିନୋଦପୂର୍ଣ୍ଣ ଶୈଳୀରେ ରାଜନୈତିକ ବିରୋଧୀମାନେ ମଧ୍ୟ ଭିତରେ ଭିତରେ ଖୁସି ହେଉଥିଲେ । ଏହି ଅବସରରେ, ପଞ୍ଚମ ଲୋକସଭାରେ ତାଙ୍କ ଦ୍ୱାରା ପ୍ରଦତ୍ତ କେତେକ ଉଲ୍ଲେଖଯୋଗ୍ୟ ଭାଷଣର କିଛି ଅଂଶ ଏଠାରେ ଉଦ୍ଧାର କରାଯାଇପାରେ ।

**।। ସିମଳା-ରାଜିନାମା ।।**

ସିମଳା-ରାଜିନାମା ଉପରେ ନିଜର ପ୍ରତିକ୍ରିୟା ବ୍ୟକ୍ତ କରିବାକୁ ଯାଇ ଅଟଳଜୀ ସଂସଦରେ କହିଥିଲେ: "ଆମେ ଯୁଦ୍ଧର ମୈଦାନ୍‌ରେ ଜିତିଗଲେ, କିନ୍ତୁ ମେଜ (ଟେବୁଲ) ଉପରେ ହାରିଗଲେ ।" ସେ ଆହୁରି ଦର୍ଶାଇଥିଲେ ଯେ, ସିମଳାରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଏବଂ ପାକ୍ ରାଷ୍ଟ୍ରପତି ଭୁଟ୍ଟୋଙ୍କ ମଧ୍ୟରେ ଯେପରି ଆଲୋଚନା ହେଲା ଏବଂ ଯେଉଁ ପ୍ରକାର ରାଜିନାମା କରାଗଲା, ତଦ୍ୱାରା କାଶ୍ମୀରର ଜନସାଧାରଣଙ୍କ ମନରେ ଅନିଶ୍ଚିତତା ସୃଷ୍ଟି ହୋଇଯାଇଛି । ପାକିସ୍ଥାନର ମତଲବକୁ ଆମେ ଠିକ୍ ଭାବେ ବୁଝିବା ଉଚିତ । କାଶ୍ମୀର ସଂପର୍କରେ ଭାରତ ସରକାର ଅତ୍ୟନ୍ତ ଦୃଢ଼ ମନୋଭାବ ପ୍ରଦର୍ଶନ କରିବା ଆବଶ୍ୟକ । ଦୁଇ ଦେଶ ମଧ୍ୟରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା ପାଇଁ ଏହି ଆଲୋଚନା ଏକ ସୁଯୋଗ ସୃଷ୍ଟି କରିଥିଲା, କିନ୍ତୁ ଆମେ ତାକୁ ହରାଇ ବସିଲୁଁ । ଏହା ଅତ୍ୟନ୍ତ ଦୁଃଖର କଥା । ଆମେ ପାକିସ୍ଥାନର ଇଞ୍ଚଟିଏ ଇଲାକା ମଧ୍ୟ ଚାହୁଁନା । କିନ୍ତୁ ପାକିସ୍ଥାନ ଆମର ୩୦ ହଜାର ବର୍ଗମାଇଲବ୍ୟାପୀ ଇଲାକାକୁ ଦଖଲ କରି ବସିଛି । ଏପରି ହୋଇ ପାରେନା ।"

॥ ଜାଗ୍ରତ ପ୍ରହରୀ ॥

ସଂସଦରେ ନିଜର କର୍ତ୍ତବ୍ୟ ସମ୍ପାଦନ ପାଇଁ ଅଟଳଜୀ ବହୁତ ପରିଶ୍ରମ କରୁଥିଲେ । ଦିନେ ଦିନେ ରାତି ଦୁଇଟା-ତିନିଟା ପର୍ଯ୍ୟନ୍ତ ଚେଇଁ ରହି ତାଙ୍କୁ ନିଜର 'ହୋମ୍ ୱାର୍କ' ପ୍ରସ୍ତୁତ କରିବାକୁ ପଡୁଥିଲା । ସେ ନିଜର ବକ୍ତବ୍ୟ ଉପସ୍ଥାପନ ପାଇଁ ଆବଶ୍ୟକୀୟ ସମସ୍ତ ପ୍ରମାଣ ସଂଗ୍ରହ କରୁଥିଲେ । ବିନା ତଥ୍ୟ-ପ୍ରମାଣରେ ସେ କୌଣସି ପ୍ରଶ୍ନ ସଂସଦରେ ଉତ୍ଥାପନ କରୁ ନଥିଲେ । ଦେଶର ବିଭିନ୍ନ ସମସ୍ୟା ସଂକ୍ରାନ୍ତରେ ସେ ଏକ ଜାଗ୍ରତ ପ୍ରହରୀ ସଦୃଶ କାର୍ଯ୍ୟ କରୁଥିଲେ । ସେହି କାରଣରୁ ଯେତେବେଳେ ସେ ସଂସଦରେ କିଛି କହିବାକୁ ଠିଆ ହେଉଥିଲେ, ସମସ୍ତଙ୍କ ଦୃଷ୍ଟି ତାଙ୍କରି ଆଡ଼କୁ ଧାବିତ ହୋଇଯାଉଥିଲା । ତାଙ୍କ ବକ୍ତବ୍ୟରେ ବାଧା ସୃଷ୍ଟି ପାଇଁ କେହି କେମିତି ଉଦ୍ୟମ କଲେ ଗୃହର ଅଧକ୍ଷ ତାଙ୍କୁ ତୀବ୍ର ନାପସନ୍ଦ କରୁଥିଲେ । ଅଟଳଜୀଙ୍କ ବଳିଷ୍ଠ ବକ୍ତବ୍ୟ ପ୍ରତି କେବଳ ବିଭିନ୍ନ ଦଳର ସଦସ୍ୟମାନେ ଓ ଶାସକ ଦଳର ମନ୍ତ୍ରୀମାନେ ନୁହନ୍ତି, ସଂସଦର ଅଧକ୍ଷ (ବାଚସ୍ପତି)ମାନେ ବି ବରାବର ସମ୍ମାନ ଓ ସଂଭ୍ରମ ପ୍ରଦର୍ଶନ କରି ଆସୁଥିଲେ । ସେ ପ୍ରଥମ ଥର ପାଇଁ ଲୋକସଭାର ସଦସ୍ୟ ହୋଇଥିବା ବେଳେ ମଧ ତାତ୍‌କାଳୀନ ବାଚସ୍ପତି ଅନନ୍ତ ଶୟନମ୍ ଆୟାଙ୍ଗାର ଖୋଲାଖୋଲି ଭାବରେ ତାଙ୍କୁ ହିନ୍ଦୀଭାଷାର ଶ୍ରେଷ୍ଠ ବକ୍ତା ଓ ହୀରେନ୍ ମୁଖାର୍ଜୀଙ୍କୁ ଇଂରାଜୀ ଭାଷାର ଶ୍ରେଷ୍ଠ ବକ୍ତା ଆଖ୍ୟା ଦେଇଥିଲେ ।

କେନ୍ଦ୍ର ସରକାର ଯେତେବେଳେ ନିଜର ରାଜନୈତିକ ସ୍ୱାର୍ଥ ପାଇଁ କୌଣସି ରାଜ୍ୟର ସରକାରଙ୍କ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରୁଥିଲେ ବା ସଂବିଧାନର ୩୫୬ ଧାରାର ପ୍ରୟୋଗ ପାଇଁ ଉଦ୍ୟମ କରୁଥିଲେ, ସେତେବେଳେ ଅଟଳଜୀ ତାର ତୀବ୍ର ବିରୋଧ ଓ ପ୍ରତିବାଦ କରୁଥିଲେ ।

॥ 'ବନ୍ଦେ ମାତରମ୍'କୁ ବିରୋଧ କାହିଁକି ? ॥

ପାକିସ୍ଥାନ ଗଠିତ ହୋଇଯିବା ପରେ ଆଶା କରାଯାଉଥିଲା ଯେ, ଭାରତରେ ଏଣିକି ସାଂପ୍ରଦାୟିକ ସଦ୍‌ଭାବ କାଏମ ହେବ । କିନ୍ତୁ ସେ ଆଶା ସଂପୂର୍ଣ୍ଣ ନିରାଶାରେ ପରିଣତ ହୋଇଛି । ସବୁଠାରୁ ବେଶି ଦୁଃଖର କଥା ହେଉଛି ମୁସ୍ଲିମ୍ ସଂପ୍ରଦାୟର କିଛି ଲୋକ ମାତୃଭୂମିର ବନ୍ଦନାକୁ ଓ ଜାତୀୟ ସଂଗୀତକୁ ମଧ ବିରୋଧ କରୁଛନ୍ତି । ଏ ସଂକ୍ରାନ୍ତରେ ଅଟଳଜୀ ଥରେ ସଂସଦରେ ଅତ୍ୟନ୍ତ ଗମ୍ଭୀରତା ଓ ମାର୍ମିକତା ସହକାରେ ଆଲୋଚନା କରିଥିଲେ । ସେ କହିଥିଲେ: ''ମୁସ୍ଲିମ୍ ସଂପ୍ରଦାୟର କିଛି ଲୋକ ଯେପରି ଜାତୀୟତାବିରୋଧୀ ବକ୍ତବ୍ୟ ପ୍ରକାଶ କରୁଛନ୍ତି ଓ ଆଚରଣ ପ୍ରଦର୍ଶନ କରୁଛନ୍ତି, ତାହା ବାସ୍ତବିକ୍ ଅତ୍ୟନ୍ତ ପୀଡ଼ାଦାୟକ । ସେମାନେ ଭାରତଭୂମିର ବକ୍ଷେ ସହରରେ ଠିଆ ହୋଇ କିପରି କହି ପାରୁଛନ୍ତି ଯେ, ସେମାନେ 'ବନ୍ଦେ ମାତରମ୍' କହିବାକୁ ପ୍ରସ୍ତୁତ

ନୁହନ୍ତି ? ଭାରତ-ମାତାର ବନ୍ଦନା କ'ଣ ଇସ୍ଲାମବିରୋଧୀ ? ଇସ୍ଲାମ୍‌କୁ ମାନ୍ୟତା ଦେଉଥିବା ଲୋକେ ନମାଜ୍ ପଢ଼ିବା ବେଳେ ଏ ଦେଶର ମାଟି ଉପରେ କ'ଣ ନିଜର ମଥା ଲଗାଉ ନାହାନ୍ତି ? ଯଦି ସେମାନେ ତା' କରୁଛନ୍ତି, ତେବେ ମାତୃଭୂମିର ବନ୍ଦନା କରିବାରେ ଆପତ୍ତି କୋଉଠି ? ଏଇ ମାଟି ହେଉଛି ଆମର ମା । ଏଇ ମାଟିରୁ ଉତ୍ପନ୍ନ ହେଉଥିବା ଅନ୍ନ ଖାଇ ଆମେ ଜୀବନ ଧାରଣ କରିଛନ୍ତି । ଏହି ମାଟିହିଁ ଜୀବନର ଶେଷ ସମୟରେ ଆମକୁ ନିଜ କୋଳରେ ଆଶ୍ରୟ ଦେଉଛି । ତେଣୁ ସେହି ମାଟି-ମା'ର ବନ୍ଦନା କରିବାରେ ଆପତ୍ତି କାହିଁକି ?''

॥ ନିର୍ବାଚିତ ପ୍ରତିନିଧିଙ୍କୁ ଫେରାଇ ନେବାର ଅଧିକାର ॥

ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ ହୋଇଥିବା କୌଣସି ଲୋକପ୍ରତିନିଧି ଯଦି ନିଜର ଉତ୍ତରଦାୟିତ୍ୱ ନିର୍ବାହ କରି ନ ପାରନ୍ତି ବା କୌଣସି ଦୁର୍ନୀତିମୂଳକ କାରବାରରେ ଲିପ୍ତ ହୁଅନ୍ତି, ତେବେ ତାଙ୍କୁ ଫେରାଇ ନେବା ନିମନ୍ତେ ଲୋକଙ୍କର ଅଧିକାର ରହିବା ଆବଶ୍ୟକ ବୋଲି ଅଟଳଜୀ ମୂଳରୁ ବରାବର ଦାବୀ କରି ଆସିଛନ୍ତି । ଆଜିକୁ ପ୍ରାୟ ୨୫ ବର୍ଷ ତଳେ ୧୯୭୪ ମସିହା ନଭେମ୍ବର ୧୫ ତାରିଖ ଦିନ ସେ ଲୋକସଭାରେ ଦେଇଥିବା ଏକ ଭାଷଣ ଏଠାରେ ଉଦ୍ଧାର କରାଯାଇପାରେ । ସେ କହିଥିଲେ:

''ଗଣତନ୍ତ୍ରର ଆଧାର ହେଉଛି ଏକାଉଣ୍ଟେବିଲିଟୀ: ନିର୍ବାଚିତ ହୋଇଥିବା ପ୍ରତିନିଧିଙ୍କର ଜନସାଧାରଣଙ୍କ ପ୍ରତି ଉତ୍ତର-ଦାୟିତ୍ୱ । ଆମେ ବରାବର କହୁଛୁଁ ଯେ, ସ୍ୱାଧୀନତାର ସୁରକ୍ଷା ଲାଗି ଜନସାଧାରଣଙ୍କର ସତତ ଜାଗରଣ ଏକାନ୍ତ ଆବଶ୍ୟକ । ତା' ହେଲେ କ'ଣ ଗଣତନ୍ତ୍ରର ରକ୍ଷା ଲାଗି ଜନତାର ପାଞ୍ଚ ବର୍ଷ ଜାଗିବା ଆବଶ୍ୟକ ନୁହେଁ ? ଲୋକେ କ'ଣ ଚାରିବର୍ଷ ୩୬୪ ଦିନ ଶୋଇ ରହି, କେବଳ ଗୋଟିଏ ଦିନ, ଅର୍ଥାତ୍ ଭୋଟ ଦେବା ଦିନଟିରେ ଜାଗି ଉଠି ନିଜର ମତାଧିକାର ଉପଯୋଗ କରିଦେଲେ କାମ ଶେଷ ? ଲୋକଙ୍କୁ ଦେଖିବାକୁ ହେବ କି ସେମାନଙ୍କ ଦ୍ୱାରା ବଛାଯାଇଥିବା ପ୍ରତିନିଧି ଠିକ୍ କାମ କରୁଛନ୍ତି କି ନା ? ରୁଢ଼ିବାଦୀ ଲୋକତନ୍ତ୍ରକୁ ପରିହାର କରି ଜୀବନ୍ତ ଓ ଜାଗ୍ରତ ଲୋକତନ୍ତ୍ରର ଅନୁରୂପ ଏହି ସଂଶୋଧନକୁ ଆମେ ସ୍ୱୀକାର କରିବା ଆବଶ୍ୟକ ଏବଂ ଜନତାକୁ ନିଜର ନିର୍ବାଚିତ ପ୍ରତିନିଧିଙ୍କୁ ଫେରାଇ ନେବାର ଅଧିକାର ମିଳିବା ଦରକାର ।''

ଅଟଳଜୀଙ୍କର ଏହି ନ୍ୟାୟୋଚିତ ପରାମର୍ଶକୁ ଗ୍ରହଣ କରି ନିଆଯାଇଥିଲେ ସଂସଦୀୟ ରାଜନୀତି ଆଜି ଏତେ କଳୁଷିତ ଓ ଦୁର୍ନୀତିଗ୍ରସ୍ତ ହୋଇ ନଥାନ୍ତା ।

॥ ପ୍ରତିଭାର ବଳିଦାନ ବ୍ୟର୍ଥ ନହେଉ ॥

ଦେଶର ବୈଜ୍ଞାନିକ ଅନୁସଂଧାନ କେନ୍ଦ୍ରଗୁଡ଼ିକରେ କନିଷ୍ଠ ଅନୁସଂଧାନକାରୀମାନଙ୍କୁ ଯେଉଁଭଳି ଶୋଷଣ କରାଯାଉଛି, ସେ ସଂପର୍କରେ ଶ୍ରୀ ବାଜପେୟୀ ୧୯୭୩ ନଭେମ୍ବର

୧୮ ତାରିଖରେ ଯେଉଁ ବକ୍ତବ୍ୟ ସଂସଦରେ ପ୍ରକାଶ କରିଥିଲେ, ତାହା ସମସ୍ତଙ୍କୁ ଚମକାଇ ଦେଇଥିଲା । ସେ କହିଥିଲେ: ''ଆମର ବହୁ ପ୍ରତିଭାବାନ୍ ଜୁନିୟର ସାଇଣ୍ଟିଷ୍ଟ୍ ଦେଶରେ ନାନା ହଇରାଣ-ହରକତ୍‌ର ସମ୍ମୁଖୀନ ହେବା ଫଳରେ ବାଧ୍ୟ ହୋଇ ଦେଶ ବାହାରକୁ ଚାଲି ଯାଉଛନ୍ତି । ଏଠାରେ କେବଳ କମ୍ ଦରମା ମିଳୁଥିବା ଯୋଗୁଁ ବା କାମ କରିବାର ସୁବିଧା ଓ କ୍ଷେତ୍ର ନ ଥିବାରୁ ଯେ ସେମାନେ ଚାଲି ଯାଉଛନ୍ତି, ତା' ନୁହେଁ । ସେମାନେ ଏଠାରେ କାମ କରିବାକୁ ଚାହାନ୍ତି ଓ କାମ କରୁଛନ୍ତି; କିନ୍ତୁ ବଡ଼ ବୈଜ୍ଞାନିକମାନେହିଁ ସେଥିଲାଗି ନାମ ନେଉଛନ୍ତି । 'ଅର୍ଥାତ୍ ରିସର୍ଚ୍ଚ ସ୍କଲାର ଥିବା ଜୁନିୟର ବୈଜ୍ଞାନିକମାନଙ୍କ ଉଦ୍ୟମରେ ପେପର୍ ଲେଖାଯାଉଛି; କିନ୍ତୁ ତାର ଶ୍ରେୟ ସେମାନଙ୍କୁ ମିଳୁନାହିଁ । ସିନିୟର ସାଇଣ୍ଟିଷ୍ଟ୍‌ମାନେ ସେଥିରେ ନିଜ ନାମ ଦେଇ ତାକୁ ଦାଖଲ କରୁଛନ୍ତି । ଏଥିରେ କ'ଣ ପ୍ରତିଭାର ବିକାଶ ହୋଇ ପାରିବ ? ଆମର ବୈଜ୍ଞାନିକ ଅନୁସଂଧାନ ସଂସ୍ଥାଗୁଡ଼ିକରେ ନିଶ୍ଚୟ କିଛି ଗୋଳମାଳ ରହିଛି । ସେଥିଲାଗି ଅସନ୍ତୋଷ ସୃଷ୍ଟି ହେଉଛି । ଡଃ ବିନୋଦ ସାହାଙ୍କ ଆତ୍ମହତ୍ୟା ଘଟଣାରୁ ଏହା ଏକ ବିସ୍ଫୋରକ ରୂପରେ ସାମ୍ନାକୁ ଆସିଯାଇଛି । ଏଥିରୁ ଯଦି ଆମେ କିଛି ଶିକ୍ଷା ଗ୍ରହଣ କରିପାରୁଁ, ତେବେ ଏହି ସଂସ୍ଥାଗୁଡ଼ିକୁ ସୁଧାରି ପାରିବା । ଯଦି ଆମେ ଆମର ବୈଜ୍ଞାନିକମାନଙ୍କୁ ସନ୍ତୁଷ୍ଟ କରିପାରିବା, ତେବେ ଡଃ ସାହାଙ୍କର ବଳିଦାନ ବ୍ୟର୍ଥ ଯିବନାହିଁ ।''

**।। ଜନସଂଘର ସଭାପତିତ୍ୱ ।।**

୧୯୬୮ରେ ପଣ୍ଡିତ ଦୀନଦୟାଲ ଉପାଧ୍ୟାୟଙ୍କ ହତ୍ୟା ଘଟଣା ପରେ ପରେ ଭାରତୀୟ ଜନସଂଘର କର୍ଣ୍ଣଧାର ବା ଅଧ୍ୟକ୍ଷ ଦାୟିତ୍ୱ ସ୍ୱାଭାବିକ ଭାବେହିଁ ଅଟଳଜୀଙ୍କ ଉପରେ ନ୍ୟସ୍ତ ହୋଇଗଲା । ତାଙ୍କର ସୁଦକ୍ଷ ନେତୃତ୍ୱ ଉପରେ ସମସ୍ତଙ୍କର ପୂର୍ଣ୍ଣ ଭରସା ରହିଥିଲା । ନିଜର ସଂଗଠନ ଶକ୍ତି ତଥା ଅନ୍ୟ ନେତାମାନଙ୍କ ସହଯୋଗ ବଳରେ ସେ ସ୍ୱର୍ଗତ ଦୀନଦୟାଲଜୀଙ୍କ ପରି ଦଳକୁ ବଳିଷ୍ଠ ନେତୃତ୍ୱ ଦେଇ ଆଗେଇ ନେଲେ । ପାର୍ଟିର ସଦସ୍ୟ ସଂଖ୍ୟା ବଢ଼ିବାକୁ ଲାଗିଲା, ବିଭିନ୍ନ ରାଜ୍ୟ ବିଧାନସଭାରେ ମଧ୍ୟ ଦଳର ବିଧାୟକ ସଂଖ୍ୟା ବୃଦ୍ଧି ପାଇଲା । ନଗରପାଳିକା, ପୌରପାଳିକା ଓ ପଞ୍ଚାୟତ ସଂସ୍ଥାଗୁଡ଼ିକରେ ମଧ୍ୟ ଜନସଂଘର ଲୋକପ୍ରିୟତା ବଢ଼ିଲା । ଏଥି ସହିତ ଦେଶର ବୁଦ୍ଧିଜୀବୀମାନଙ୍କ ମଧ୍ୟରେ ଜନସଂଘ ପ୍ରତି ସକାରାତ୍ମକ ମନୋଭାବ ଓ ଆଗ୍ରହ ସୃଷ୍ଟି ହେବାକୁ ଆରମ୍ଭ କଲା । ଅଟଳଜୀଙ୍କର ପ୍ରଖର ମେଧା, ଅପରାଜେୟ ତର୍କଶକ୍ତି, ଅଦ୍‌ଭୁତ ବିଶ୍ଳେଷଣ କ୍ଷମତା ଓ ଅକପଟ ସମ୍ଭାଷଣ ଲୋକଙ୍କୁ ଅଧିକରୁ ଅଧିକ ଆକୃଷ୍ଟ କରିବାରେ ଲାଗିଲା ।

ଅଟଳଜୀ ଏକାଦିକ୍ରମେ ତିନିଥର ଦଳର ସଭାପତି ପଦରେ ରହି ଦଳୀୟ କାର୍ଯ୍ୟକର୍ତ୍ତା, କର୍ମୀ ତଥା ସମର୍ଥକମାନଙ୍କ ମନରେ ଏପରି ଗଭୀର ଆତ୍ମବିଶ୍ୱାସ ଭରି ଦେଲେ ଯେ, ସାରା ଦେଶର ପରିଚାଳନା ଦାୟିତ୍ୱ ଜନସଂଘ ହାତକୁ ଯିବା ପାଇଁ ଆଉ ବେଶି ବିଳମ୍ବ ହେବନାହିଁ ବୋଲି ସେମାନେ ଅନୁଭବ କଲେ । ଲାଲକୃଷ୍ଣ ଆଡ଼ଭାନୀ ଓ

ମୁରଲୀ ମନୋହର ଯୋଶୀଙ୍କ ଠାରୁ ଆରମ୍ଭ କରି ଦଳର ସର୍ବନିମ୍ନ କର୍ମୀ ପର୍ଯ୍ୟନ୍ତ ସମସ୍ତଙ୍କର ପୂର୍ଣ୍ଣ ସହଯୋଗ ତାଙ୍କ ସହିତ ରହିଥିଲା । କେବଳ ଦଳ ଭିତରେ ନୁହେଁ, ଭାରତ ଓ ସେକ୍ୟୁଲାରବାଦ ଉପରେ ଅଟଳଜୀଙ୍କର ବିଚାର-ବିଶ୍ଳେଷଣ ତଥା ସାମାଜିକ ସୁଧାର, ଅନୁସୂଚିତ ଜାତିମାନଙ୍କର ସ୍ଥିତି, ଦେଶରକ୍ଷାର ଜରୁରୀ ଆବଶ୍ୟକତା, ଭାରତର ବିଦେଶନୀତି, ଜାମ୍ମୁ-କାଶ୍ମୀର ପରିସ୍ଥିତି ଇତ୍ୟାଦି ଉପରେ ତାଙ୍କର ବକ୍ତବ୍ୟ ଦେଶବାସୀଙ୍କ ମନରେ ଗଭୀର ରେଖାପାତ କଲା ।

**॥ ଅବାଞ୍ଛିତ ଜରୁରୀ ପରିସ୍ଥିତି ଘୋଷଣାର ପରିଣାମ ॥**

୧୯୭୫ ମସିହା ଜୁନ୍ ୨୬ ତାରିଖରେ ହଠାତ୍ ଇନ୍ଦିରା ଗାନ୍ଧିଙ୍କ ସରକାର ଦେଶରେ ଆପତ୍‌କାଳୀନ ବା ଜରୁରୀ ପରିସ୍ଥିତି ଘୋଷଣା କରିଦେଲେ । ଦେଶରେ ଆଇନ ଶୃଙ୍ଖଳା ରକ୍ଷା ଏବଂ ଏହି ଅଭୂତପୂର୍ବ, ଅବାଂଛିତ ଓ ଅପ୍ରତ୍ୟାଶିତ କଟକଣା ଦେଶବାସୀଙ୍କ ଉପରେ ଲଦି ଦିଆଗଲା । ସେହି ଦିନ ହିଁ ଲୋକନାୟକ ଜୟପ୍ରକାଶ ନାରାୟଣ ଓ ଆଚାର୍ଯ୍ୟ ଜେ.ବି. କୃପାଲନୀଙ୍କ ସମେତ ପ୍ରାୟ ସବୁ ବିରୋଧୀ ଦଳ ତଥା ଆର୍.ଏସ୍.ଏସ୍. ପ୍ରଭୃତି କେତେକ ସଂଗଠନର ଛୋଟ-ବଡ଼ ଅଧିକାଂଶ ନେତା ଓ ସକ୍ରିୟ କର୍ମୀଙ୍କୁ ଏବଂ ଖୋଦ୍ ଶାସକ ଦଳର ବହୁ ଭିନ୍ନ ମତାବଲମ୍ବୀ ନେତାଙ୍କୁ ମଧ୍ୟ ଗିରଫ କରାଯାଇ ଦୀର୍ଘ ୧୯ମାସ କାଳ ବିଭିନ୍ନ ଜେଲ୍‌ରେ କଏଦୀ କରି ରଖାଗଲା । ଏ ପ୍ରକାର ଅବାଂଛିତ ଓ ଏକଛତ୍ରବାଦୀ ପଦକ୍ଷେପର ପରିଣାମ କ'ଣ ହେଲା, ତାହା ସମସ୍ତେ ଜାଣନ୍ତି । ଦେଶବାସୀ ଏଥିରେ ଏତେ ବେଶି କ୍ଷୁବ୍ଧ ଓ ବିରକ୍ତ ହୋଇଥିଲେ ଯେ, ପରବର୍ତ୍ତୀ ନିର୍ବାଚନରେ ଲୋକେ ଶ୍ରୀମତୀ ଇନ୍ଦିରା ଗାନ୍ଧି ତଥା ତାଙ୍କ ଦଳକୁ ଉଚିତ ଶିକ୍ଷା ଦେବାକୁ ଭୁଲି ନ ଥିଲେ । ଦେଶରେ ଗଣତାନ୍ତ୍ରିକ ପ୍ରକ୍ରିୟା ଓ ଜୀବନଧାରାକୁ ଦମନ କରାଯାଇ ଯେପରି ଏକଛତ୍ରବାଦୀ ଶାସନ ବ୍ୟବସ୍ଥା ଜାରୀ କରାଯାଇଥିଲା, ଲୋକେ ତାକୁ କ୍ଷମା ଦେଇ ନ ଥିଲେ । ଖୋଦ୍ ପ୍ରଧାନମନ୍ତ୍ରୀଙ୍କ ସମେତ ଶାସକ ଦଳର ଅଧିକାଂଶ ନେତାଙ୍କୁ ୧୯୭୭ର ସାଧାରଣ ନିର୍ବାଚନରେ ଶୋଚନୀୟ ପରାଜୟ ବରଣ କରିବାକୁ ପଡ଼ିଥିଲା ।

**॥ ଜାଗି ଉଠିଲା ବନ୍ଦୀ ରାଜନେତାର କବି-ସତ୍ତା ॥**

ଅଟଳଜୀ, ଆଡ଼ଭାନୀଜୀ ଓ ଅନ୍ୟ କେତେକ ସାଂସଦ ଏକ ସଂସଦୀୟ କମିଟିର ବୈଠକରେ ଅଂଶ ଗ୍ରହଣ କରିବାକୁ ବାଙ୍ଗାଲୋର ଯାଇଥିବା ବେଳେ ସେହିଠାରେ ହିଁ ସେମାନଙ୍କୁ ୧୯୭୫ ଜୁନ୍ ୨୬ ତାରିଖ ଦିନ ଅଚାନକ ଭାବରେ ଉପରର ନିର୍ଦ୍ଦେଶମତେ ଗିରଫ କରାଯାଇ ଜେଲ୍‌ରେ ଭର୍ତ୍ତି କରି ଦିଆଗଲା । ରାଜନେତା ଅଟଳଜୀ କାରାରୁଦ୍ଧ ହେଲେ ସିନା, କିନ୍ତୁ କବି ଅଟଳଜୀ ଥିଲେ ସ୍ୱାଧୀନ ଓ ମୁକ୍ତ । ରାଜନେତାଙ୍କର ଆଉ କିଛି କରିବାର ଉପାୟ ନ ଥିଲା । କାରଣ ତାଙ୍କର ସମସ୍ତ ରାଜନୈତିକ କାର୍ଯ୍ୟକଳାପ

ତଥା ବିବୃତି ଓ ଭାଷଣ ଇତ୍ୟାଦି ଉପରେ କଠୋର କଟକଣା ଜାରୀ ହୋଇଥିଲା । କିନ୍ତୁ କବିର ଲେଖନୀକୁ ବା ସ୍ତବ୍ଧ କରି ପାରିବ କିଏ ? ଅଟଳଜୀଙ୍କ ଭିତରର କବି ଜାଗି ଉଠିଲା, ଅନ୍ୟାୟ-ଅତ୍ୟାଚାରର ଦୃଢ଼ ପ୍ରତିବାଦ କଲା । କବି ଅଟଳଜୀ ଏଥର ଜେଲ୍ ଭିତରେ ଆରମ୍ଭ କରିଦେଲେ ତାଙ୍କର ମସୀ-ଯୁଦ୍ଧ । 'କଏଦୀ କବି ରାୟ' ନାମରେ ସେ ଲେଖି ଚାଲିଲେ କବିତା ପରେ କବିତା ।

ଯେଉଁଦିନ ତାଙ୍କୁ ଗିରଫ କରାଗଲା, ସେହି ଘଟଣା ସମ୍ପର୍କରେ ସେ ଲେଖିଥିବା କବିତାର ଅଂଶବିଶେଷ ଏଠାରେ ଉଦ୍ଧାର କରାଯାଉଛି :

''ଧରେ ଗଏ ବଂଗଲୋର ମେ
ଆଡ଼ଭାନୀ କେ ସଂଗ
ଦିନ୍-ଭର୍ ଥାନେ ମେ ରହେ
ହୋ ଗଇ ହୁଲିଆ ତଂଗ ।
ଧରେ ଗଏ କ୍ୟୋଁ ରାମ ଧନ,
ଶେଖର ହେଁ କ୍ୟୋଁ ବଂଦ୍
ମୁଝ୍‌କୋ ସମଝାକର କହୋ,
ମୈଁ ଠହରା ମତିମଂଦ;
ମୈଁ ଠହରା ମତିମଂଦ୍,
କ୍ଲାନ୍ତ କ୍ୟୋଁ କୃଷକାଂତ ହେଁ ?
ତବଲ ସିଂହ ହୋକର,
ପ୍ରୋଫେସର କ୍ୟୋଁ ପ୍ରଶାଂତ ହେଁ ?
କହ କୈଦୀ କବିରାୟ
ଧାରିଆ କ୍ୟୋଁ ନ ଧାର୍ ପର ?
ଲକ୍ଷ୍ମୀକାନ୍ତାମ୍ମା କ୍ୟୋଁ ବୈଠୀ
ମନ କୋ ମାର୍ କର ?
ଅନୁଶାସନ କା ପର୍ବ୍ ହୈ,
ବାବା କା ଉପଦେଶ;
ହବାଲାତ୍ କି ହବା ଭି
ଦେତୀ ୟହ୍ ସଂଦେଶ;
କହ କୈଦୀ କବି ରାୟ
ଶୋର୍ ହୈ ଅନୁଶାସନକା
ଲେକିନ୍ ଜୋର୍ ଦିଖାଇ
ଦେତା ଦୁଃଶାସନ କା !

ଅନୁଶାସନ କେ ନାମ ପର
ଅନୁଶାସନ କା ଖୁନ୍
ଭଙ୍ଗ କର ଦିୟା ସଂଘ କୋ
କୈସା ଚଢ଼ା ଜୁନୁନ୍;
କୈସା ଚଢ଼ା ଜୁନୁନ୍,
ମାତୃପୂଜା ପ୍ରତିବଂଧିତ
କୁଲଟା କରତି କେଶବ-
କୁଲ କି କୀର୍ତି କଲଙ୍କିତ ।
କହ କୈଦୀ କବିରାୟ
ତୋଡ଼ କାନୁନୀ କାରା,
ଗୁଁଜେଗା ଭାରତମାତା-
କି ଜୟ କା ନାରା ।''

ଜେଲ୍‌ରେ ଅଟଳଜୀଙ୍କ ସ୍ୱାସ୍ଥ୍ୟାବସ୍ଥାରେ ଅବନତି ଘଟିବାରୁ ତାଙ୍କୁ ହସ୍ପିଟାଲ୍ ନିଆଗଲା । ସେଠାରେ ତାଙ୍କ ସ୍ୱାସ୍ଥ୍ୟବସ୍ଥାରେ କିଛି ଉନ୍ନତି ଘଟିବା ପରେ ଡାକ୍ତରଙ୍କ ପରାମର୍ଶକ୍ରମେ ତାଙ୍କୁ ଘରକୁ ପଠାଇ ଦିଆଗଲା ଗୃହବନ୍ଦୀ ରୂପେ । ତାଙ୍କ ବାସଭବନର ଚାରିପାଖରେ ଘେରି ରହିଥିଲେ ପୋଲିସ୍- ଜଗୁଆଳୀମାନେ । ଏ ସଂକ୍ରାନ୍ତରେ ରଚିତ ଏକ କବିତାରେ ସେ ଲେଖିଥିଲେ :

''ଘର ପହୁଁଚେ ହମ୍ ବାଦ୍ ମେ,
ପହଲେ ପୁଲିସ୍ ତୈୟାର
ରୋମ୍-ରୋମ୍ ଗଦ୍‌ଗଦ ହୁଆ
ଲକ୍ଷି ସ୍ୱାଗତ-ସତ୍କାର;
ଲକ୍ଷି ସ୍ୱାଗତ-ସତ୍କାର,
ପରାଏ ଅପନେ ଘର ମେ
କୁତ୍ତା କା ଭି ନାମ
ଲିଖ ଲିଆ ରେଜିଷ୍ଟର୍ ମେ;
କହ କୈଦୀ କବିରାୟ
ଶାସ୍ତ୍ରୀ କସେଁ ଲଂଗୋଟା
ଜନସଂଘ ଛୁଟା, ନହିଁ ପୁଲିସ୍
କା ପିଛା ଛୁଟା ।''

ଜରୁରୀ ପରିସ୍ଥିତି କାଳରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ସାନପୁଅ ସଂଜୟ ଗାନ୍ଧୀ ବିଶେଷ କ୍ଷମତାଶାଳୀ ହୋଇ ପଡ଼ିଥିଲେ । ସେ କ୍ଷମତାର ଏକ ସନ୍ନିଧାନ-

ବହିର୍ଭୂତ କେନ୍ଦ୍ରରେ ପରିଣତ ହୋଇଥିଲେ । ବିଭିନ୍ନ ସରକାରୀ କାର୍ଯ୍ୟ ସମ୍ପର୍କରେ ସେ ନିଷ୍ପତ୍ତି ନେବାକୁ ଆରମ୍ଭ କଲେ । କେନ୍ଦ୍ରମନ୍ତ୍ରୀମାନେ, ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନେ ଏବଂ ଉଚ୍ଚତନ ସରକାରୀ ପଦାଧିକାରୀମାନେ ତାଙ୍କଠାରୁ ହିଁ ନିର୍ଦ୍ଦେଶ ନେବାକୁ ଆରମ୍ଭ କଲେ । ଏହି ପରିସ୍ଥିତିକୁ ଲକ୍ଷ୍ୟ କରି ଅଟଳଜୀ ଲେଖିଥିଲେ:

''ସବ୍ ସରକାରୋଁ ସେ ବଡ଼େ
ହେଁ ଛୋଟେ ସରକାର,
ଗୁଡ଼ଡ଼ୀ ଜିନ୍‌କି ଚଢ଼ ଗହୀ
ଦିଲ୍ଲୀ କେ ଦରବାର;
ଦିଲ୍ଲୀ କେ ଦରବାର
ବୁଢ଼ାପା ଖିସିୟାତା ହୈ
ପୁତ୍ ସବାୟା ସିଂହାସନ୍
ଚଢ଼ତା ଆତା ହୈ;
କହ କୈଦୀ କବିରାୟ
ଲୋକଶାହୀ କି ଛୁଟ୍ଟୀ
ବେଟା ରାଜ୍ କରେଗା
ପୀକର ମୁଗଲୀ ଘୁଟ୍ଟୀ ।''

ସେ ସମୟରେ ସ୍ୱର୍ଗତ ଦେବକାନ୍ତ ବରୁଆ କଂଗ୍ରେସ ଦଳର ସଭାପତି ଥିଲେ । ସେ ଲୋକନାୟକ ଜୟପ୍ରକାଶ ନାରାୟଣଙ୍କୁ ''ସରକାରୀ ମସ୍‌ଖରା'' ଆଖ୍ୟା ଦେବା ସଙ୍ଗେ ସଙ୍ଗେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧିଙ୍କ ତୁଷ୍ଟିବିଧାନ ଲାଗି ''ଇନ୍ଦିରା ଇଜ୍ ଇଣ୍ଡିଆ'' ବୋଲି କହିଥିଲେ । ଜଣେ ବ୍ୟକ୍ତି ଯେତେ ବଡ଼ ବା କ୍ଷମତାଶାଳୀ ହେଉ ନା କାହିଁକି, ସେ ଯେ କଦାପି ଦେଶ ବା ରାଷ୍ଟ୍ରଶକ୍ତି ସହ ସମାନ ହୋଇ ନ ପାରନ୍ତି, ଏହି ସାଧାରଣ ସତ୍ୟଟିକୁ ମଧ୍ୟ ସେତେବେଳେ ସେ ଭୁଲି ଯାଇଥିଲେ । ଅଟଳଜୀ ଏହାକୁ ଲକ୍ଷ୍ୟ କରି ଲେଖିଥିଲେ :

''ଇନ୍ଦିରା ଇଣ୍ଡିଆ ଏକ ହୈ
ଇତି ବରୁଆ ମହାରାଜ୍
ଅକଲେ ଘାସ୍ ଚରନେ ଗୟି
ଚମଚୋଁ କେ ସରତାଜ୍,
ଚମଚୋଁ କେ ସରତାଜ୍
କିୟା ଅପମାନିତ ଭାରତ
ଏକ ମୃତ୍ୟୁ କେ ଲିଏ କଲଂକିତ
ଭୂତ୍ ଭବିଷ୍ୟତ୍ ।

କହ କୈଦୀ କବିରାୟ
ସ୍ୱର୍ଗ୍ ସେ ଯୋ ମହାନ୍ ହୈ
କୌନ୍ ଭଲା ଉସ୍ ଭାରତ-
ମାତା କେ ସମାନ୍ ହୈ ?''

ଜରୁରୀ ପରିସ୍ଥିତି କାଳରେ ସରକାରଙ୍କ କଠୋର ଦମନ-ନୀତି ଯୋଗୁ ଜନ-ଜୀବନ ସ୍ତବ୍ଧ, ଜନତାର କଣ୍ଠ ରୁଦ୍ଧ ଏବଂ ଲୋକତନ୍ତ୍ର ଅବରୁଦ୍ଧ ହୋଇ ପଡ଼ିଥିଲେ ମଧ୍ୟ କବିର ଆତ୍ମବିଶ୍ୱାସ ରହିଥିଲା ଅତୁଟ ଓ ତେଜୀୟାନ୍। ଅଟଳଜୀ ଲେଖିଥିଲେ:

''ଦିଲ୍ଲୀକେ ଦରବାର ମେ
କୌରବ କା ହୈ ଜୋର୍
ଲୋକତନ୍ତ୍ର କୀ ଦ୍ରୌପଦୀ
ରୋତୀ ନୟନ୍ ନିଚୋର୍;
ରୋତୀ ନୟନ୍ ନିଚୋର୍
ନହି କୋଇ ରଖୱାଲା
ନଏ ଭୀଷ୍ମ, ଦ୍ରୋଣୋ ନେ
ମୁଖ ପର ତାଲା ଡାଲା ।:
କହ କୈଦୀ କବିରାୟ
ବଜେଗୀ ରଣ୍‌କି ଭେରୀ
କୋଟି କୋଟି ଜନତା
ନ ରହେଗୀ ବନକର୍ ଚେରୀ ।''

**॥ 'କୈଦୀ କବିରାୟ କି କୁଣ୍ଡଲିୟାଁ' ॥**

ଜରୁରୀ ପରିସ୍ଥିତି କାଳରେ ଅଟଳଜୀ, ଅନ୍ୟ ବିରୋଧୀ ନେତାମାନଙ୍କ ସହ ଦୀର୍ଘ ୧୯ ମାସ ଧରି କଏଦୀ-ଜୀବନ ଯାପନ କରିଥିଲେ। ଏହି ସମୟରେ ସେ ବହୁ କବିତା ଓ ଗୀତି-କବିତା ସହିତ ମୋଟ ପ୍ରାୟ ୭୦ଟି 'କୁଣ୍ଡଳିୟା' ବା ଛନ୍ଦୋବନ୍ଧ ବ୍ୟଙ୍ଗାତ୍ମକ କବିତା ରଚନା କରିଥିଲେ। ଜରୁରୀ ପରିସ୍ଥିତିର ପ୍ରତ୍ୟାହାର-ପରବର୍ତ୍ତୀ ନିର୍ବାଚନ ପରେ ତାଙ୍କର ଏହି କୁଣ୍ଡଳିୟାଗୁଡ଼ିକୁ ଏକତ୍ର କରାଯାଇ ''କୈଦୀ କବିରାୟ କି କୁଣ୍ଡଳିୟାଁ'' ନାମରେ ଏକ ସଂକଳନ ପ୍ରକାଶ ପାଇଥିଲା। ଦୁଇ ବର୍ଷ ତଳେ ପ୍ରକାଶିତ ତାଙ୍କର ''ମେରୀ ଇକ୍ୟାବନ୍ କବିତାଏଁ''ରେ ମଧ୍ୟ ସେହି ସମୟରେ ଲିଖିତ କେତେକ କବିତା ସ୍ଥାନିତ ହୋଇଛି। ଅଟଳଜୀଙ୍କ କୁଣ୍ଡଳିୟା ବା ବ୍ୟଙ୍ଗଧର୍ମୀ ଲଘୁ କବିତାଗୁଡ଼ିକ ଏକ ପକ୍ଷରେ ରାଷ୍ଟ୍ରୀୟ ଜୀବନର ଏକ ବିଶେଷ ଐତିହାସିକ କାଳ-ଖଣ୍ଡ ସମ୍ବନ୍ଧରେ ରୋଜନାମଚାମୂଳକ ଚିତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ଅନ୍ୟ ପକ୍ଷରେ ହିନ୍ଦୀ ସାହିତ୍ୟର ଏକ ବିସ୍ମୃତ ଛନ୍ଦ ଓ କାବ୍ୟଶୈଳୀକୁ ପୁନରୁଦ୍ଧାର କରି ପାଠକମାନଙ୍କୁ ଏକ

ଭିନ୍ନ ସ୍ୱାଦ ଚଖାଇ ପାରିଛି । ତେଣୁ ହିନ୍ଦୀ କୁଣ୍ଡଲିୟା-ସାହିତ୍ୟ କ୍ଷେତ୍ରରେ ଏହି ପୁସ୍ତକଟିର ଏକ ବିଶେଷ ସ୍ଥାନ ରହିଛି ।

'କୈଦୀ କବିରାୟ କି କୁଣ୍ଡଲିୟାଁ' ପୁସ୍ତକର ସମ୍ପାଦକ ପ୍ରସିଦ୍ଧ ହିନ୍ଦୀ ପତ୍ରକାର ଶ୍ରୀ ଦୀନାନାଥ ମିଶ୍ର ଏଥିରେ ନିଜର ବକ୍ତବ୍ୟ ପ୍ରକାଶ କରିବାକୁ ଯାଇ ଯାହା ଲେଖିଥିଲେ, ତାର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି :

''କେତେ ସପ୍ତାହ ତଳେ ଅଟଳଜୀ ବିଦେଶ ମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେ ପରେ ମୁଁ ତାଙ୍କୁ ଭେଟିବାପାଇଁ ଯାଇଥିଲି । ତାଙ୍କର କଏଦୀ-ଜୀବନ ସମୟରେ ଲେଖା-ପଢ଼ା ସମ୍ପର୍କରେ କଥାବାର୍ତ୍ତା ହେଉଥିବା ବେଳେ ଅଟଳଜୀ ଉଠିଯାଇ ଭିତରୁ ଏକ ଫାଇଲ୍ ନେଇ ଆସିଲେ । ସେହି ଫାଇଲ୍‌ରେ ରହିଥିବା ତାଙ୍କର କେତେକ କୁଣ୍ଡଲୟାଁ (ଲଘୁ କବିତା) ସେ ମୋତେ ପଢ଼ିବାକୁ ଦେଲେ । ସେଥିରୁ କେତୋଟି ପାଠ କରି ମୁଁ ଚମତ୍କୃତ ହେଲି ଏବଂ ଏଗୁଡ଼ିକ ପ୍ରକାଶ ପାଇବା ବାଞ୍ଛନୀୟ ବୋଲି ମୁଁ ତାଙ୍କୁ ମୋର ମତ ଜଣାଇଲି । କିନ୍ତୁ ଏଗୁଡ଼ିକୁ ତୁରନ୍ତ ପ୍ରକାଶ କରିବାକୁ ସେ ବିଶେଷ ଆଗ୍ରହୀ ନ ଥିଲେ । ମୋ ମନରେ କିନ୍ତୁ ସେଥିଲାଗି ବିଶେଷ ଆଗ୍ରହ ସୃଷ୍ଟି ହୋଇସାରିଥିଲା । ତାର କାରଣ ମୋର ହୃଦ୍‌ବୋଧ ହୋଇଥିଲା ଯେ, ଏହି ବ୍ୟଙ୍ଗଧର୍ମୀ ଲଘୁ କବିତାଗୁଡ଼ିକରେ ୧୯ମାସ ବ୍ୟାପୀ ଏକ ଐତିହାସିକ କାଳ-ଖଣ୍ଡର ଘଟଣାବଳୀ ସମ୍ବନ୍ଧରେ ଅଟଳଜୀଙ୍କ ପରି ଜଣେ ବରିଷ୍ଠ ରାଜନେତାଙ୍କର ଯେଉଁ ସବୁ ପ୍ରତିକ୍ରିୟା ବ୍ୟକ୍ତ ହୋଇଛି, ତାର ଯେପରି ରାଜନୀତିକ ମହତ୍ତ୍ୱ ରହିଛି, ସେହିପରି ଏହି କବିତାଗୁଡ଼ିକର ନିଜସ୍ୱ ସାହିତ୍ୟିକ ମହତ୍ତ୍ୱ ମଧ୍ୟ ରହିଛି । ତେଣୁ ତାଙ୍କର ଏହି କବିତାଗୁଡ଼ିକର ସମ୍ପାଦନା କରି ପ୍ରକାଶିତ କରାଇବା ନିମନ୍ତେ ମୁଁ ତାଙ୍କର ସମ୍ମତି ଲାଗି ଅନୁରୋଧ ଜଣାଇଥିଲି ।''

**।। କେତୋଟି ଗୀତିକା ।।**

ଅଟଳଜୀ ଜେଲ୍ ଭିତରେ ଉପରୋକ୍ତ ଲଘୁକବିତାଗୁଡ଼ିକ ସହିତ କେତେକ ଗମ୍ଭୀର କବିତା ଏବଂ କେତେକ ଗୀତିକା ମଧ୍ୟ ଲେଖିଥିଲେ । ମାତ୍ର ସେସବୁ ସେ ସାଇତି ରଖି ପାରି ନ ଥିଲେ । ତେଣୁ ସେଥିରୁ ଅଧିକାଂଶ ଲେଖା ନିରୁଦ୍ଦିଷ୍ଟ । ତଥାପି ଅନ୍ତତଃ ଚାରୋଟି ଗୀତି-କବିତା ପରବର୍ତ୍ତୀ କାଳରେ ସଂକଳିତ ହୋଇ ପାରିଛି । କାରାବାସର ଏକ ବର୍ଷ ପୂର୍ତ୍ତି ଉପଲକ୍ଷେ ''ଏକ ବରସ୍ ବିତ୍‌ଗୟା', ନିଜର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ''ଜୀବନ କି ଢଲନେ ଲଗୀ ସାଂଝ୍', ଦୀପାବଳୀ ଉପଲକ୍ଷେ' ଦୀବାଲି' ଇତ୍ୟାଦି କେତେକ ଗୀତିକା ସେ ଲେଖିଥିଲେ । ସେଥିରୁ କିଛି କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି :

''ଏକ ବରସ ବିତ ଗୟା....
ଝୁଲ୍‌ସାତା ଜେଠ୍ ମାସ

ଶରଦ ଚାଁଦନୀ ଉଦାସ
ସିସ୍‌କି ଭରତେ ସାବନ୍ କା
ଅନ୍ତର୍ଘଟ ରୀତ୍ ଗୟା...
ଏକ ବରସ୍ ବିତ ଗୟା ।
ସୀକ୍‌ଚୋ ମେ ସିମଟା ଜଗ୍
କିନ୍ତୁ ବିକଲ୍ ପ୍ରାଣ ବିହଗ
ଧରତୀ ସେ ଅମ୍ବର ତକ
ଗୁଁଜ ମୁକ୍ତି ଗୀତ ଗୟା
ଏକ୍ ବରସ୍ ବିତ୍ ଗୟା ।''

✣

''ଦୂର୍ ଦୀବାଲୀ
ପାସ୍ ଅଁଧେରା
ଚାର ଦୀବାରୀ
କସ୍‌ତା ଘେରା
ହଟୀ ଗରିବୀ
ଲକ୍ଷ୍ମୀ ପୂଜନ-
ଗିରୀ ଝୋଁପଡ଼ି
ନବ ପରିବର୍ତ୍ତନ;
ଘିରୀ ଅମାବସ୍
ଦୀପ ବୁଝ୍ ଗଏ
ପାସା ପଲଟା
ସାଧୁ ଲୁଟ ଗଏ ।''

✣

(୧)

''ଦସ୍ ମଂଜିଲ ଉପର ସେ ଚଢ଼କର ଦେଖା ରାବଣ ଜଲତା,
ସଦିଓଁ ସେ ସ୍ୱାହା ହୋ କର ଭି ପାପ ନିରଂତର ଫଲତା ।

(୨)

ରାଜ-ବିଜୟ କୀ କଥା ପୁରାନୀ, କିନ୍ତୁ ଯୁଦ୍ଧ ଜାରୀ ହୈ,
ରାଜଘାଟ କେ ଲିଏ ଅଯୋଧ୍ୟା ଫୁଁକ୍‌ନେ କି ବାରୀ ହୈ ।

(୩)

ମାଁ କି ମମତା ନେ ସମାଜ କୋ ଫିର୍ ସଙ୍କଟ ମେ ଡାଲା,
ନ୍ୟାୟ ନିରାଦୃତ ହୁଆ, ଧର୍ମନେ ପାୟା ଦେଶ-ନିକାଲା ।

(୪)

କୋଟି କୋଟି ଭାରତବାସୀ କ୍ୟା ଦର୍ଶକ ବନେ ରହେଁଗେ ?
ସତ୍ତା କେ ବଲ୍ ପର୍ ମୁଟଠୀ-ଭର୍ କବ ତକ ବନେ ରହେଁଗେ ?''

❖

''ଜୀବନ କି ଢଲନେ ଲଗୀ ସାଁଝ୍
ଉମର ଘଟ ଗଇ
ଡଗର କଟ ଗଇ
ଜୀବନ କି ଢଲନେ ଲଗୀ ସାଁଝ୍ ।
ବଦ୍‌ଲେ ହୈ ଅର୍ଥ୍ ।
ଶବ୍‌ଦ ହୈ ବ୍ୟର୍ଥ୍
ଶାନ୍ତି ବିନା ଖୁସିୟାଁ ହୈ ବାଂଝ୍
ଜୀବନ କି ଢଲନେ ଲଗୀ ସାଁଝ ।
ସପନୋଁ ସେ ମିତ୍
ବିଖରା ସଂଗୀତ୍
ଠିଠକ୍ ରହେ ପାଁବ ଔର ଝିଝକ ରହି ଝାଁଝ୍
ଜୀବନ କି ଢଲ୍‌ନେ ଲଗୀ ସାଁଝ୍ ।''

**।। କେନ୍ଦ୍ରରେ ପ୍ରଥମ ଅଣକଂଗ୍ରେସ ସରକାର ।।**

ଶେଷରେ ଅବାଂଛିତ ଜରୁରୀ ପରିସ୍ଥିତି ବା ଆପତ୍‌କାଳର ସେହି କଳା ବାଦଲ ଦେଶର ଭାଗ୍ୟ-ଆକାଶରୁ ଅପସରିଗଲା; ଦେଖାଦେଲା ନୂଆ ଆଲୋକର ଇସାରା । ସର୍ବୋଦୟ ନେତା ଜୟପ୍ରକାଶ ନାରାୟଣ ଓ ଆଚାର୍ଯ୍ୟ ଜେ.ବି. କୃପାଲାନୀଙ୍କ ପରାମର୍ଶକ୍ରମେ ଅଣକଂଗ୍ରେସ ଦଳମାନଙ୍କୁ ନେଇ 'ଜନତା ପାର୍ଟି' ନାମରେ ଏକ ନୂତନ ସର୍ବଭାରତୀୟ ଦଳ ଗଠନ କରାଗଲା । ଭାରତୀୟ ଜନସଂଘ ବି ଏଥିରେ ସାମିଲ ହେଲା । ଅଟଳଜୀ ସେତେବେଳେ କହିଥିଲେ :

''ଆପତ୍‌କାଳର ଘୋର ଅନ୍ଧକାର ମଧ୍ୟରେ ଜନସଂଘର 'ଦୀପ' ଆଲୋକ ଶିଖାର କେନ୍ଦ୍ର ଥିଲା । ଏବେ ସୂର୍ଯ୍ୟୋଦୟ ହୋଇଯାଇଛି; ତେଣୁ ଦୀପକୁ ଲିଭାଇ ଦେବାର ବେଳ ଆସିଯାଇଛି ।''

୧୯୭୭ରେ ଲୋକସଭା ନିମନ୍ତେ ଯେଉଁ ଐତିହାସିକ ନିର୍ବାଚନ ହେଲା, ସେଥିରେ କ୍ଷମତାସୀନ କଂଗ୍ରେସ ଦଳର ଶୋଚନୀୟ ପରାଜୟ ଓ ନବଗଠିତ ଜନତା ପାର୍ଟିର ବିପୁଳ ବିଜୟ ହେଲା ଏବଂ ଏହା ଫଳରେ ସାରା ଦେଶରେ ଏକ ନୂତନ ଉଦ୍ଦୀପନା ସୃଷ୍ଟି ହେଲା । ସେ ନିର୍ବାଚନରେ ଅଟଳଜୀ ନୂଆଦିଲ୍ଲୀରୁ ବିଜୟୀ ହୋଇଥିଲେ ।

ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସମେତ କଂଗ୍ରେସର ବହୁ ବଡ଼ ବଡ଼ ନେତା ନିର୍ବାଚନରେ ହାରି ଯାଇଥିଲେ । ନିର୍ବାଚନ ପରେ ପରେ କେନ୍ଦ୍ରରେ ପ୍ରଥମ ଅଣକଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଶ୍ରୀ ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ଏବଂ ଶ୍ରୀ ଅଟଳ ବିହାରୀ ବାଜପେୟୀ ବିଦେଶ ମନ୍ତ୍ରୀ ହେଲେ । ମନ୍ତ୍ରିମଣ୍ଡଳରେ ରହିଲେ ସର୍ବଶ୍ରୀ ଜଗଜୀବନ ରାମ, ଚୌଧୁରୀ ଚରଣ ସିଂହ, ଲାଲକୃଷ୍ଣ ଆଡ଼ଭାନୀ, ଜର୍ଜ ଫର୍ଣ୍ଣାଡ଼ିଜ, ହେମବତୀ ନନ୍ଦନ ବହୁଗୁଣା, ମଧୁ ଦଣ୍ଡବତେ, ବିଜୁ ପଟ୍ଟନାୟକ ପ୍ରମୁଖ ନେତାମାନେ ।

**।। ବିଦେଶ ମନ୍ତ୍ରୀର ଭୂମିକାରେ ଅଟଳଜୀ ।।**

ବିଦେଶ ମନ୍ତ୍ରୀ ରୂପେ ଅଟଳଜୀ ଯେପରି ଦକ୍ଷତା ଓ ବିଜ୍ଞତା ସହକାରେ ନିଜର କାର୍ଯ୍ୟ ସମ୍ପାଦନ କଲେ, ତଦ୍ଦ୍ୱାରା ସମଗ୍ର ବିଶ୍ୱରେ ଭାରତର ମର୍ଯ୍ୟାଦା ବୃଦ୍ଧି ପାଇବା ସଂଗେ ସଂଗେ ତାଙ୍କ ନିଜର ଖ୍ୟାତି ମଧ୍ୟ ବହୁତ ବଢ଼ିଗଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ସେ ଥିଲେ ରାଜନୀତି ବିଜ୍ଞାନର ଛାତ୍ର ଏବଂ ବିଦେଶ ନୀତିହିଁ ମୂଳରୁ ତାଙ୍କର ପ୍ରିୟ ବିଷୟ ରହି ଆସିଥିଲା । ସଂସଦରେ ବରାବର ସେ ଏହି ବିଷୟରେ ବିତର୍କଗୁଡ଼ିକରେ ଭାଗ ନେଇ ନିଜର ମୂଲ୍ୟବାନ ବକ୍ତବ୍ୟ ପ୍ରକାଶ କରି ଆସୁଥିଲେ । କିନ୍ତୁ ଅଟଳଜୀ ଜଣେ ଜନସଂଘୀ ନେତା ଥିବା ଦୃଷ୍ଟିରୁ ସେ ବିଦେଶ ମନ୍ତ୍ରୀ ହେବା ପରେ, ପାକିସ୍ଥାନ ସହିତ ଭାରତର ସଂପର୍କରେ ଅବନତି ହେବ ବୋଲି କେତେକ ସମ୍ବାଦପତ୍ରରେ ଆଶଙ୍କା ପ୍ରକାଶ କରାଯାଇଥିଲା । କିନ୍ତୁ ଅଟଳଜୀ ନିଜର କାର୍ଯ୍ୟ ଦ୍ୱାରା ସେ ଆଶଙ୍କାକୁ ସମ୍ପୂର୍ଣ୍ଣ ଅମୂଳକ ପ୍ରମାଣିତ କରି ଦେଇଥିଲେ । ସେ ପାକିସ୍ଥାନ ଗସ୍ତରେ ଯାଇ ଯେଉଁ ପ୍ରକାର ବକ୍ତବ୍ୟ ଓ ଆଭିମୁଖ୍ୟ ପ୍ରକାଶ କଲେ, ତଦ୍ଦ୍ୱାରା ଦୁଇ ଦେଶ ମଧ୍ୟରେ ରହି ଆସିଥିବା ମନୋମାଳିନ୍ୟ ବହୁ ପରିମାଣରେ ଦୂରୀଭୂତ ହୋଇଗଲା । ସେତେବେଳେ ସେ ଏକ ଭାଷଣ ପ୍ରସଙ୍ଗରେ କହିଥିଲେ : "ଏଣିକି ଭାରତ ପାକିସ୍ଥାନକୁ କେବଳ ହକିର ମୈଦାନରେ ହରାଇବାକୁ ଚେଷ୍ଟା କରିବ, ଅନ୍ୟ କୌଣସି କ୍ଷେତ୍ରରେ ନୁହେଁ ।" ବିଦେଶ ମନ୍ତ୍ରୀ ରୂପେ ଅଟଳଜୀଙ୍କ ଉଦ୍ୟମକ୍ରମେ 'ସଲାଲ୍ ପ୍ରଶ୍ନ'ର ସମାଧାନ ହେଲା, ଫରାକ୍କାଠାରେ ଗଙ୍ଗାନଦୀର ଜଳବଣ୍ଟନ ଘେନି ଏକ ରାଜିନାମା ସମ୍ପାଦିତ ହେଲା ଏବଂ ଭାରତ ଓ ପାକିସ୍ଥାନ ମଧ୍ୟରେ ବନ୍ଦ ହୋଇଯାଇଥିବା ରେଳ ଚଳାଚଳକୁ ପୁଣି ଆରମ୍ଭ କରାଗଲା ।"

ସେହିପରି ଅଟଳଜୀଙ୍କର ବିଶେଷ ଉଦ୍ୟମ କ୍ରମେ ଭାରତ ଓ ନେପାଳ ମଧ୍ୟରେ ବନ୍ଧୁତାର ବନ୍ଧନ ଅଧିକ ନିବିଡ଼ ଓ ଦୃଢ଼ ହୋଇ ପାରିଥିଲା । ସେ ନେପାଳ ଗସ୍ତରେ ଯାଇ ନିଜର ଭାଷଣ ପ୍ରସଙ୍ଗରେ କହିଥିଲେ : "ଭାରତ ଓ ନେପାଳର ସମ୍ପର୍କ ଯେପରି ନିବିଡ଼ ଓ ନିକଟତର, ପୃଥିବୀର ଅନ୍ୟ କୌଣସି ଦୁଇ ଦେଶ ମଧ୍ୟରେ ସେପରି ନିବିଡ଼ ଓ ନିକଟ ସମ୍ପର୍କ ସ୍ଥାପିତ ହୋଇ ନ ପାରେ । କାରଣ ପ୍ରକୃତି ତଥା ଇତିହାସ, ଭୂଗୋଳ, ସଂସ୍କୃତି, ଧର୍ମ ଏବଂ ଆମର ନଦୀମାନେ ଆମ ଦୁଇ ଦେଶକୁ ଅତୁଟ ବନ୍ଧନରେ ବାନ୍ଧି ଦେଇଛନ୍ତି ।"

### ।। 'ବସୁଧୈବ କୁଟୁମ୍ବକମ୍' ।।

ଭାରତ ବର୍ଷର ଶାଶ୍ୱତ ଓ ସୁପ୍ରାଚୀନ ଆଦର୍ଶ, ଉଦାର ଓ ମହାନ୍ ବାଣୀ ଏବଂ ବିଶ୍ୱକଲ୍ୟାଣସୂଚକ ଭାବଧାରା 'ବସୁଧୈବ କୁଟୁମ୍ବକମ୍'କୁହିଁ ଆଧାର କରି ଅଟଳଜୀ ସେତେବେଳେ ପ୍ରସ୍ତୁତ କରିଥିଲେ ଭାରତର ବିଦେଶ ନୀତିକୁ। ସାରା ବିଶ୍ୱ ସହିତ ଭାରତର କୁଟୁମ୍ବିତା ବା ପାରିବାରିକ ସମ୍ପର୍କ ଗଢ଼ି ତୋଳିବା ନିମନ୍ତେ ସେ ସବୁ ଦିଗରୁ ଉଦ୍ୟମ ଆରମ୍ଭ କରିଥିଲେ। ନିଜର ବିଦେଶ-ନୀତି ସମ୍ବନ୍ଧରେ ସେ ଲୋକସଭାରେ ୧୯୭୭ ମସିହା ଜୁନ୍ ୨୯ ତାରିଖ ଦିନ ତାଙ୍କର ପ୍ରଥମ ଅଭିଭାଷଣରେ ଯାହା କହିଥିଲେ, ତାହା ଏକ ବିଶେଷ ଉଲ୍ଲେଖଯୋଗ୍ୟ ଦଲିଲ ହୋଇ ରହିଛି ଓ ରହିଥିବ। କେବଳ ସେତିକି ନୁହେଁ, ସେ ଯେତିକି ଦିନ (ପ୍ରାୟ ଅଢ଼େଇ ବର୍ଷ) ଭାରତର ବୈଦେଶିକ ମନ୍ତ୍ରୀ ଥିଲେ, ସେହି ସମୟରେ ଋଷିଆ, ଆମେରିକା, ବ୍ରିଟେନ୍, ଫ୍ରାନ୍ସ, ଜର୍ମାନୀ, ଚୀନ, ଜାପାନ, ପାକିସ୍ଥାନ ସମେତ ପ୍ରାୟ ସବୁ ଦେଶ ତଥା ସବୁ ଶକ୍ତି-ଗୋଷ୍ଠୀ ସହିତ ଭାରତର ସମ୍ପର୍କରେ ଯଥେଷ୍ଟ ଉନ୍ନତି ପରିଲକ୍ଷିତ ହୋଇଥିଲା। ତା'ଛଡ଼ା ବିଭିନ୍ନ ଦେଶରେ ଥିବା ଭାରତୀୟ ନାଗରିକ, ଅନାବାସୀ ଭାରତୀୟ ତଥା ଭାରତୀୟ ବଂଶୋଦ୍‌ଭବମାନଙ୍କ ଉଦ୍ଦେଶ୍ୟରେ ସେ ତାଙ୍କର ପ୍ରଥମ ଭାଷଣରେ ଯେଉଁ ଉଦ୍‌ବୋଧନ ଦେଇଥିଲେ, ତାହା ସେମାନଙ୍କ ପାଇଁ ଅତ୍ୟନ୍ତ ପ୍ରେରଣାଦାୟକ ହୋଇ ପାରିଥିଲା। ଏହି ସବୁ ଦୃଷ୍ଟିରୁ ଅଟଳଜୀ ହିଁ ଏଯାବତ୍ ବୈଦେଶିକ ମନ୍ତ୍ରୀ ହୋଇ ଆସିଥିବା ନେତାମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ ଉଦାହରଣ ହୋଇ ରହିଛନ୍ତି।

### ।। ରାଷ୍ଟ୍ରସଂଘରେ ପ୍ରଥମ ହିନ୍ଦୀ ଭାଷଣ ।।

ସଂଯୁକ୍ତ ରାଷ୍ଟ୍ରସଂଘ ବା UNITED NATIONSର ଅଧିବେଶନରେ ଭାରତର ରାଷ୍ଟ୍ରଭାଷା ହିନ୍ଦୀରେ ଭାଷଣ ଦେବାରେ ଅଟଳଜୀ ଥିଲେ ପ୍ରଥମ ବିଦେଶ ମନ୍ତ୍ରୀ। ନ୍ୟୁୟର୍କଠାରେ ସଂଯୁକ୍ତ ରାଷ୍ଟ୍ରସଂଘର ୩୨ତମ ଅଧିବେଶନରେ ୧୯୭୭ ଅକ୍ଟୋବର ୪ ତାରିଖ ଦିନ ସେ ଏହି ଐତିହାସିକ ଅଭିଭାଷଣ ଦେଇଥିଲେ। ତାର ଦୁଇଦିନ ପୂର୍ବରୁ ଗାନ୍ଧୀ ଜୟନ୍ତୀ ଉପଲକ୍ଷେ ୱାଶିଂଟନଠାରେ ଆୟୋଜିତ ଏକ ଉତ୍ସବରେ ମଧ୍ୟ ସେ ହିନ୍ଦୀ ତଥା ଇଂରାଜୀରେ ଭାଷଣ ଦେଇଥିଲେ। ଏ ଦୁଇଟି ଅଭିଭାଷଣ ସହିତ ସେତେବେଳେ ସେ 'ଏସିଆ ସୋସାଇଟି' ତଥା ଆମେରିକାବାସୀ ଭାରତୀୟମାନଙ୍କର ସଂଘ ଦ୍ୱାରା ଆୟୋଜିତ ସଭାମାନଙ୍କରେ ଯେଉଁ ଭାଷଣ ଦେଇଥିଲେ, ତଦ୍ୱାରା ବିଦେଶରେ ଭାରତର ଗୌରବ ତଥା ହିନ୍ଦୀ ଭାଷାର ମର୍ଯ୍ୟାଦା ବୃଦ୍ଧି ପାଇଥିଲା। ତାଙ୍କର ତାତ୍କାଳୀନ ହିନ୍ଦୀ ଭାଷଣ ଯେଉଁମାନେ ପଢ଼ିବାକୁ ଚାହାନ୍ତି, ସେମାନେ ତାଙ୍କର 'କୁଛ ଲେଖ୍, କୁଛ ଭାଷଣ' ପୁସ୍ତକ ପଢ଼ିବା ଉଚିତ୍।

॥ ବିଦେଶନୀତିର ସଫଳତା ॥

ଅଟଳଜୀ ତାଙ୍କର ସ୍ୱଳ୍ପକାଳୀନ ବିଦେଶ-ମନ୍ତ୍ରିତ୍ୱ ସମୟରେ ବହୁ ଦେଶକୁ ସରକାରୀ ଗସ୍ତରେ ଯାଇ ଆନ୍ତର୍ଜାତିକ ପରିସ୍ଥିତି ତଥା ସେ ସବୁ ଦେଶ ସହିତ ଭାରତର ଦ୍ୱିପାକ୍ଷିକ ସମ୍ବନ୍ଧ ଘେନି ସେଠା ନେତୃବର୍ଗଙ୍କ ସହିତ ଆଲୋଚନା କାଳରେ ଯେଉଁ ପ୍ରକାର ମତାମତ ବ୍ୟକ୍ତ କରିଥିଲେ ଏବଂ ଭାରତର ଚିରାଚରିତ ନୀତି ଓ ଆଭିମୁଖ୍ୟକୁ ଯେପରି ବଳିଷ୍ଠ ଭାବରେ ଉପସ୍ଥାପନ କରିଥିଲେ, ତାହା ଦେଶ ବିଦେଶରେ ସର୍ବତ୍ର ଉଚ୍ଚ ପ୍ରଶଂସିତ ହୋଇଥିଲା । କାରଣ ସେ ସବୁ ଭାଷଣ ଓ ଆଲୋଚନାରେ ତାଙ୍କର ଦଳୀୟ ବା ବ୍ୟକ୍ତିଗତ ମତାମତ ପ୍ରତିଫଳିତ ନ ହୋଇ ବରାବର ଜାତୀୟ ଦୃଷ୍ଟିଭଙ୍ଗୀ ହିଁ ପ୍ରତିଫଳିତ ହୋଇଥିଲା । ଭାରତର ବିଦେଶ ନୀତିକୁ ମୂଳରୁ ଗଢ଼ି ତୋଳିଥିବା ପଣ୍ଡିତ ନେହେରୁଙ୍କ ଅବଦାନକୁ ଏବଂ ଏ କ୍ଷେତ୍ରରେ ତାଙ୍କର ବ୍ୟକ୍ତିଗତ ଅଭିଜ୍ଞତାକୁ ସେ ବରାବର ମୁକ୍ତକଣ୍ଠରେ ସ୍ୱୀକାର କରିଥିଲେ । ବିଦେଶ ମନ୍ତ୍ରୀ ରୂପେ ଅଟଳଜୀ ଚୀନକୁ ସରକାରୀ ଗସ୍ତରେ ଯାଇଥିବା ବେଳେ ତାହାକାଳୀନ ଚୀନା ବିଦେଶ ମନ୍ତ୍ରୀ ହୁଆଙ୍ଗ-ହୁଆଙ୍କ ସ୍ୱାଗତ ଭାଷଣର ଉତ୍ତରରେ ସ୍ପଷ୍ଟତଃ କହିଥିଲେ "ପଣ୍ଡିତ ନେହେରୁଙ୍କ ହୃଦୟର ଗଭୀର ଭାବାବେଗ, କ୍ଷୋଭ, କ୍ଳେଶ ତଥା ବ୍ୟକ୍ତିଗତ ଆଘାତକୁ ଭାରତ ଭୁଲିନାହିଁ କି କଦାପି ଭୁଲି ପାରିବ ନାହିଁ ।"

ବିଦେଶ ମନ୍ତ୍ରୀ ରୂପେ ଅଟଳଜୀ ପାକିସ୍ଥାନ ଗସ୍ତରେ ଯାଇ ଜେନେରାଲ ଜିଆ ଉଲ୍ ହକ୍ ଓ ଆଗା ସାହୀ ପ୍ରମୁଖଙ୍କ ସହିତ ଯେପରି ସଦ୍‌ଭାବପୂର୍ଣ୍ଣ କଥାବାର୍ତ୍ତା କଲେ, ତଦ୍ୱାରା ଦୁଇ ଦେଶ ମଧ୍ୟରେ ସ୍ୱାଭାବିକ ସମ୍ବନ୍ଧ ସ୍ଥାପନ କରାଯାଇ ପାରିବାର ଆଶା ଉଜ୍ଜ୍ୱଳ ହୋଇ ଉଠିଥିଲା । ପାରସ୍ପରିକ ବାଣିଜ୍ୟ କାରବାର ବୃଦ୍ଧି ଓ କଏଦୀ ବିନିମୟ ସମ୍ପର୍କରେ ମଧ୍ୟ ସହମତି ହୋଇ ପାରିଥିଲା । ଏହି ଗସ୍ତର ସଫଳତାକୁ ସବୁ ମହଲରୁ ସ୍ୱୀକାର ଓ ସ୍ୱାଗତ କରାଯାଇଥିଲା । ଦେଶ-ବିଦେଶର ବହୁ ଲୋକଙ୍କ ମୋହଭଙ୍ଗ ମଧ୍ୟ ହୋଇଥିଲା । ଦୁଇ ଦେଶ ମଧ୍ୟରେ ବିଦ୍ୱେଷ ବୃଦ୍ଧି ପାଇବ ବୋଲି କେତେକ ମହଲରେ ଯେଉଁ ଆଶଙ୍କା ପ୍ରକାଶ ପାଇଥିଲା, ତାହା ଭୁଲ ପ୍ରମାଣିତ ହେଲା । କେବଳ ପାକିସ୍ଥାନ ନୁହେଁ, ଅନ୍ୟାନ୍ୟ ଦେଶକୁ ଅଟଳଜୀଙ୍କ ଗସ୍ତ ମଧ୍ୟ ଯଥେଷ୍ଟ ଫଳପ୍ରଦ ହୋଇ ପାରିଥିଲା ।

କେବଳ ସେତିକି ନୁହେଁ, ବିଦେଶ ମନ୍ତ୍ରୀ ରୂପେ ଅଟଳଜୀ ପାସ୍‌ପୋର୍ଟ ନୀତିରେ ଯେଉଁ ପ୍ରକାର ଉଦାରତା ଦେଖାଇଥିଲେ, ତାକୁ ଦେଶବାସୀ ଆଜି ମଧ୍ୟ ସ୍ମରଣ କରୁଛନ୍ତି । ପାସ୍‌ପୋର୍ଟ ମିଳିବାରେ ଯେଉଁ ଅଯଥା ବିଳମ୍ବ ଘଟୁଥିଲା, ତାର କାରଣଗୁଡ଼ିକୁ ସେ ନିଜେ ଅନୁଧ୍ୟାନ କରି ଏହି ବ୍ୟବସ୍ଥାର ସରଳୀକରଣ କରାଇଥିଲେ ।

**।। ହଠାତ୍ ସ୍ୱପ୍ନ ଭଙ୍ଗ ।।**

ବିଦେଶ ମନ୍ତ୍ରୀ ରୂପେ ଅଟଳଜୀଙ୍କର ଏହି ସଫଳତା ଦେଶବାସୀଙ୍କୁ ଉଲ୍ଲସିତ କରୁଥିବା ବେଳେ କେତେକ ମହଲରେ ତାହା ଈର୍ଷା ଓ ଆତଙ୍କ ମଧ୍ୟ ଉଦ୍ରେକ କରିଥିଲା । ତାଙ୍କ ସହିତ ସୂଚନା ଓ ପ୍ରସାରଣ ମନ୍ତ୍ରୀ ଶ୍ରୀ ଲାଲକୃଷ୍ଣ ଆଡ଼ଭାନୀ ଏବଂ ଅନ୍ୟ ଜନସଂଘୀ ମନ୍ତ୍ରୀ ତଥା ନେତାମାନଙ୍କ କାର୍ଯ୍ୟଦକ୍ଷତା ଯୋଗୁଁ ସେମାନଙ୍କର ଲୋକପ୍ରିୟତା, ପ୍ରତିଷ୍ଠା ଓ ପ୍ରଭାବ ବଢ଼ିବା ଫଳରେ ଜନତା ପାର୍ଟିର କିଛି ନେତା ଈର୍ଷାନ୍ୱିତ ଓ ନିଜର ଭବିଷ୍ୟତ ସଂପର୍କରେ ଆଶଙ୍କିତ ହୋଇ ପଡ଼ିଥିଲେ । ସେମାନଙ୍କର ଏହି ଈର୍ଷା ଓ ଆତଙ୍କ ତଥା କେତେକ ନେତାଙ୍କ ଅଯଥା ଅହଂକାର ଓ ଉଚ୍ଚାକାଂକ୍ଷାର ବୀଜରୁ ଜନ୍ମ ନେଲା ମହା ବିଦ୍ୱେଷ ଓ ବିଭେଦର ବିଷବୃକ୍ଷ, ଯେଉଁଥିରୁ ଉପ୍ନନ ହେଲା ଦ୍ୱୈତ ସଭ୍ୟପଦ ରୂପକ ବିଷଫଳ ଏବଂ ଯାହାର ପରିଣାମରେ ଜନତା ପାର୍ଟି ତଥା ଏହାର ସରକାର ଭାଙ୍ଗିଗଲା । ତା' ସହିତ ଭାଙ୍ଗିଗଲା ଏକ ବହୁପୋଷିତ ସୁନ୍ଦର ସ୍ୱପ୍ନ ଏବଂ ବ୍ୟର୍ଥ ହେଲା ଏକ ନୂତନ ରାଜନୈତିକ ପରୀକ୍ଷା ।

ସେତେବେଳେ ଜନତା ପାର୍ଟିର ଏହି ବ୍ୟର୍ଥତାକୁ ଲକ୍ଷ୍ୟ କରି କବି ଅଟଳବିହାରୀ 'ସପ୍‌ନା ଟୁଟ୍ ଗୟା' ଶୀର୍ଷକ ଏକ କବିତା ରଚନା କରିଥିଲେ । ତାର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି :-

''ହାଥୋଁ କି ହଲ୍‌ଦୀ ହୈ ପୀଲୀ
ପୈରୋଁକି ମେହଁଦୀ କୁଛ୍ ଗୀଲୀ
ପଲକ ଛାପ୍‌କନେ ସେ ପହ୍‌ଲେ ହି ସପ୍‌ନା ଟୁଟ୍ ଗୟା ।
ଦୀପ୍ ବୁଝାୟା ରଚୀ ଦିବାଲୀ
ଲେକିନ୍ କଟୀ ନ ମାବସ୍ କାଲୀ
ବ୍ୟର୍ଥ ହୁଆ ଆବାହନ, ସ୍ୱର୍ଣ୍ଣ ସବେରା ରୁଠ୍ ଗୟା....
ସପ୍‌ନା ଟୁଟ୍ ଗୟା ।
ନିୟତି ନଟୀ କି ଲୀଲା ନ୍ୟାରୀ
ସବ୍ କୁଛ୍ ସ୍ୱାହା କି ତୟାରୀ
ଅଭି ଚଲା ଦୋ କଦମ୍ କାରୱାଁ ସାଥୀ ଛୁଟ୍ ଗୟା....
ସପ୍‌ନା ଟୁଟ୍ ଗୟା ।''

**।। ଭାରତୀୟ ଜନତା ପାର୍ଟିର ଜନ୍ମଲାଭ ।।**

ଜନତା ପାର୍ଟିରେ ସାମିଲ ହୋଇଥିବା ଜନସଂଘ-ଗୋଷ୍ଠୀର ଲୋକମାନେ ଏଥିରୁ ବାହାରି ଆସି ଶ୍ରୀ ଅଟଳବିହାରୀ ବାଜପେୟୀ ଓ ଶ୍ରୀ ଲାଲକୃଷ୍ଣ ଆଡ଼ଭାନୀଙ୍କ ନେତୃତ୍ୱରେ ଭାରତୀୟ ଜନତା ପାର୍ଟି ନାମରେ ଏକ ନୂତନ ଦଳ ଗଠନ କଲେ ।

ଏହାର ପ୍ରତିଷ୍ଠା-ଅଧିବେଶନ ମୁମ୍ବାଇଠାରେ ୧୯୮୦ ମସିହା ଏପ୍ରିଲ ୬ ତାରିଖରେ ଅନୁଷ୍ଠିତ ହେଲା । ଏଥିରେ ଦେଶର ସବୁ ପ୍ରାନ୍ତରୁ ପୂର୍ବ ଜନସଂଘର କାର୍ଯ୍ୟକର୍ତ୍ତାମାନେ ଆସି ଏକତ୍ର ହୋଇଥିଲେ । ଅଟଳଜୀ ଏହି ଅଧିବେଶନରେ ଅଧ୍ୟକ୍ଷତା କରିଥିଲେ ।

ନବଗଠିତ ଭାରତୀୟ ଜନତା ପାର୍ଟିର ପ୍ରଧାନ ଦର୍ଶନ ରୂପେ 'ଏକାତ୍ମ ମାନବବାଦ'କୁ ଏହି ଅଧିବେଶନରେ ସ୍ୱୀକାର କରାଯାଇଥିଲା । ଦଳର ପତାକା, ନିର୍ବାଚନ ଚିହ୍ନ, ସଂଗଠନାତ୍ମକ ଡାଞ୍ଚା, କେନ୍ଦ୍ରୀୟ ନିର୍ବାଚନ ସମିତି, ବିଭିନ୍ନ ପ୍ରଦେଶ ପାଇଁ ଦଳୀୟ ନିର୍ବାଚନ ସମିତି ସମୂହ ଇତ୍ୟାଦି ମଧ୍ୟ ସର୍ବସମ୍ମତିକ୍ରମେ ସ୍ଥିରୀକୃତ ହୋଇଥିଲା । ଏହି ଅଧିବେଶନରେ 'ସକାରାତ୍ମକ ଧର୍ମନିରପେକ୍ଷତା'କୁ ମଧ୍ୟ ସ୍ୱୀକାର କରାଯାଇଥିଲା ।

**।। ପଦ୍ମଫୁଲର ତାତ୍ପର୍ଯ୍ୟ ।।**

ଭାରତୀୟ ଜନତା ପାର୍ଟି 'କମଳ' ବା ପଦ୍ମଫୁଲକୁ ନିଜର ନିର୍ବାଚନ ଚିହ୍ନ ରୂପେ ଘୋଷିତ କଲା । ଭାରତୀୟ ସଂସ୍କୃତି, ସଭ୍ୟତା, ପରମ୍ପରା, ଦର୍ଶନ ତଥା ସାଧାରଣ ଜନ-ଜୀବନରେ କମଳର ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହି ଆସିଛି । ଆମର ପୁରାଣମାନଙ୍କରେ ଲେଖାଯାଇଛି ଯେ, 'କମଳ'ରୁ ହିଁ ସୃଷ୍ଟିର ଉତ୍ପତ୍ତି ହୋଇଛି । ଏହା ସତ୍-ଚିତ୍-ଆନନ୍ଦର ପ୍ରତୀକ । ଏହା ପୁଣି ଆମର ରାଷ୍ଟ୍ରୀୟ ପୁଷ୍ପ ରୂପେ ଚିହ୍ନିତ । ଏହା ଆମକୁ ଯେଉଁ ସଂଦେଶ ଦେଉଛି, ତାର ମର୍ମାର୍ଥ ହେଲା : ମାୟାର ଜାଲ ଯେତେ ବଢୁ ନା କାହିଁକି, ସେଥିରେ ବୁଡ଼ିଯିବା ଉଚିତ୍ ନୁହେଁ । ଭାରତୀୟ ସଂସ୍କୃତିରେ ପଦ୍ମଫୁଲ କେବଳ ମଙ୍ଗଳସୂଚକ ନୁହେଁ, ଅଧିକନ୍ତୁ ଏହା ପବିତ୍ରତା, ଶୁଦ୍ଧତା, ନିର୍ମଳତା, କୋମଳତା, ସୌନ୍ଦର୍ଯ୍ୟ, ସୁରୁଚି, ଅନାସକ୍ତି, ଆନନ୍ଦ ଓ ଚେତନାର ପ୍ରତୀକ ରୂପେ ସର୍ବଦା ସର୍ବସ୍ୱୀକୃତ ।

ପଦ୍ମଫୁଲ ଅଟଳଜୀଙ୍କର ଅତ୍ୟନ୍ତ ପ୍ରିୟ । କାରଣ ସେ କେବଳ ଜଣେ ରାଜନେତା ନୁହଁନ୍ତି, ସେ ମଧ୍ୟ ଜଣେ ସଂସ୍କୃତିବନ୍ତ ସୌନ୍ଦର୍ଯ୍ୟପ୍ରେମୀ କବି ଓ ପ୍ରକୃତିପ୍ରେମୀ ଭାବୁକ । ସମ୍ଭବତଃ ସେହିଁ ନିଜ ଦଳର ନିର୍ବାଚନ ଚିହ୍ନ ରୂପେ ସବୁ ଦୃଷ୍ଟିରୁ ବିଚାର କରି ଏହି 'କମଳ'କୁ ପ୍ରଥମେ ବାଛିଥିଲେ, ଯାହାକି ଅନ୍ୟ ସମସ୍ତଙ୍କ ଦ୍ୱାରା ତତ୍‌କ୍ଷଣାତ୍ ସମର୍ଥିତ ଓ ଗୃହୀତ ହୋଇଥିଲା ।

'କମଳ' ସଂପର୍କରେ ଅଟଳଜୀ ଥରେ ଲେଖିଥିଲେ "କମଳ ପରି ମୁଖ, କମଳ ପରି ଆଖି, କମଳ ପରି ହାତ, କମଳ ପରି ପାଦ, କମଳ ପରି ନାଭି.... ବୋଧହୁଏ କମଳ ବ୍ୟତୀତ ଅନ୍ୟ କୌଣସି ପୁଷ୍ପକୁ ଏପରି ସମ୍ମାନ ଓ ମହତ୍ତ୍ୱ ମିଳିନାହିଁ । ଭାରତୀୟ ଭାଷା ଓ ସାହିତ୍ୟରେ କମଳର ଯେପରି ଯଶ ଓ ପ୍ରଶସ୍ତି ଗାନ କରାଯାଇଛି, ବୋଧହୁଏ ଅନ୍ୟ କୌଣସି ଦେଶର ଭାଷା ଓ ସାହିତ୍ୟରେ କୌଣସି ଫୁଲର ସେପରି ଗୁଣ ଗାନ କରାଯାଇନାହିଁ । ମନ୍ଦିର, ମହଲ, ଉଦ୍ୟାନ, ସରୋବର

ସବୁ ସ୍ଥାନରେ ସମାନ ରୂପରେ- ଅଧ୍ୟାତ୍ମରୁ ଆରମ୍ଭ କରି ଭୌତିକ ଜୀବନର ବିଭିନ୍ନ କ୍ଷେତ୍ରରେ ସର୍ବତ୍ର ଶୋଭାୟମାନ ଏହି କମଳ । ବସ୍ତୁତଃ ଏହା ଶାଶ୍ୱତ ସଂସ୍କୃତିର ପ୍ରତୀକ ।

କମଳ ସହିତ ମୋର ପରିଚୟ ପିଲା ଦିନରୁ । ବାପାଙ୍କ ଆଙ୍ଗୁଳି ଧରି ଯେତେବେଳେ ମୁଁ ଦେବଦର୍ଶନ ପାଇଁ କେବେ କୌଣସି ମନ୍ଦିର ଉଦ୍ଦେଶ୍ୟରେ ଯାଉଥିଲି, ବାଟରେ ପଦ୍ମ-ପରିପୂର୍ଣ୍ଣ ପୁଷ୍କରିଣୀ ଦେଖି ମୋର ମନ ଆନନ୍ଦରେ ପୂରି ଉଠୁଥିଲା । ବାପା ମୋତେ ପଦ୍ମଫୁଲର ମହତ୍ତ୍ୱ ସଂପର୍କରେ ବିସ୍ତାରିତ ଭାବରେ କେତେ କଥା କହୁଥିଲେ । ସେଥିରେ ମୋର ଆନନ୍ଦ ଆହୁରି ବଢ଼ି ଯାଉଥିଲା । ପୁଷ୍କରିଣୀ ମଧ୍ୟରେ ଗୋଲ ଗୋଲ ସବୁଜ ପତ୍ରଗୁଡ଼ିକ ଉପରେ ଫୁଟିଥିବା ଅସଂଖ୍ୟ ବଡ଼ ବଡ଼ ପଦ୍ମଫୁଲକୁ ଦେଖି ଏବଂ ତା' ସମ୍ବନ୍ଧରେ ବାପାଙ୍କ ବର୍ଣ୍ଣନା ଶୁଣି ମୋର ସ୍ୱତଃ ଅନୁଭବ ହେଉଥିଲା ଯେ, ଏହି ପଦ୍ମ ହିଁ ପ୍ରକୃତରେ ଫୁଲମାନଙ୍କର ରାଜା । ପରେ, ଯେତେବେଳେ ମୁଁ ଆଉ ଟିକିଏ ବଡ଼ ହେଲି, ଆଉ ପ୍ରଭୁ ରାମଚନ୍ଦ୍ରଙ୍କ ଆରତିରେ 'ନବକଂଜଲୋଚନ କଂଜମୁଖ କର କଂଜ ପଦ କଂଜାରୁଣମ୍' ଗାୟନରେ ସାମିଲ ହେଲି, ସେତେବେଳେ କମଳର ଆଉ ଏକ ରୂପ ମୋ ସାମ୍ନାକୁ ଆସିଲା ।

xxx ଆମେ ସମସ୍ତେ ଜାଣନ୍ତି, ପଦ୍ମଫୁଲର ଚାଷ କରାଯାଏ ନାହିଁ, ଏହା ଚାଷ ଜମିର ଶୋଭା ବଢ଼ାଏ ନାହିଁ । ତା'ପାଇଁ ଦରକାର ସରୋବର । ଶୁଖିଲା ନୁହେଁ, ଜଳରେ ପରିପୂର୍ଣ୍ଣ ସରୋବର । ସେ ସରୋବରର ଜଳ ବି ଶାନ୍ତ ଓ ସ୍ଥିର ରହିବା ଆବଶ୍ୟକ । କୁହାଯାଏ, ଜଳର ନିମ୍ନଭାଗରେ ପଙ୍କ ବି ରହିବା ଦରକାର । ପଙ୍କରୁ ହିଁ ପଦ୍ମଫୁଲ ଜନ୍ମ ନିଏ । ସେଥିପାଇଁ ତାର ଅନ୍ୟ ନାମ ପଙ୍କଜ । କିନ୍ତୁ ସେ ପଙ୍କ ଆମକୁ ଦେଖାଯାଏ ନାହିଁ । ପଦ୍ମଫୁଲ ପଙ୍କରୁ ଜନ୍ମ ଲାଭ କରି ମଧ୍ୟ ପଙ୍କର ଊର୍ଦ୍ଧ୍ୱକୁ ଉଠି ନିଜର ଅସ୍ତିତ୍ୱ ଘୋଷଣା କରିଥାଏ । ଏଥିରୁ ଏହି ସିଦ୍ଧାନ୍ତ ପ୍ରତିପାଦିତ ହୋଇଥାଏ ଯେ ଜନ୍ମରୁ କେହି ହେୟ ବା ନୀଚ ହୋଇ ନଥାଏ । ବସ୍ତୁ ଅଥବା ବ୍ୟକ୍ତିର ମୂଲ୍ୟାଙ୍କନ ତାର ଚରିତ୍ର ଆଉ ଗୁଣ ଦୃଷ୍ଟିରୁ ହିଁ ହେବା ଆବଶ୍ୟକ ।''

ପ୍ରସିଦ୍ଧ ଓଡ଼ିଆ କବି ଭକ୍ତକବି ମଧୁସୂଦନ ରାଓଙ୍କର ବିଖ୍ୟାତ 'ପଦ୍ମ' କବିତାର କିଛି ଅଂଶ ଏଠାରେ ଉଦ୍ଧାରଯୋଗ୍ୟ :-

''କୋଟି ଲାବଣ୍ୟନିଧି ରେ ପଦ୍ମ ତୁହି,
କି ଅମୃତେ ତୋ ତନୁ ଗଢ଼ିଲା ବିହି !

ସଂସାର-ଦୁଃଖେ ମୁହିଁ ସଦା ମଳିନ,
ତୋ ସଙ୍ଗେ ସରି କେହ୍ନେ ହେବି ନଳୀନ !

ପଙ୍କଜ ଅଟୁ ଯେଣୁ, ତେଣୁ ଭରସା,
ତୋ ପରି ଶୁଭ୍ର ହେବି ଲଭି ସୁଦଶା ।''

ଭାରତୀୟ ଜନତା ପାର୍ଟି ଯେତେବେଳେ ପଦ୍ମ ବା କମଳକୁ ନିଜର ନିର୍ବାଚନ ଚିହ୍ନ ରୂପେ ବାଛିଲା, ସେତେବେଳେ ନୁଏତ ଅଟଳଜୀ ଓ ଅନ୍ୟ ନେତାମାନଙ୍କ ମନରେ ଏହି ଚିନ୍ତାଧାରା ସ୍ଥାନ ପାଇଥିବ ଯେ, ରାଜନୀତିର ପଙ୍କ-କାଦୁଅ ଭିତରେ ବି ଏହି ଦଳକୁ 'କମଳ' ଭଳି ନିଷ୍ପାପ ପବିତ୍ରତା ଓ ଶୁଦ୍ଧତା ନେଇ ଫୁଟିବାକୁ ହେବ, ଜଳରେ ରହି ମଧ୍ୟ ଜଳର ଊର୍ଦ୍ଧ୍ୱରେ ପ୍ରସ୍ଫୁଟିତ ହେବାକୁ ପଡ଼ିବ । ଏ ପ୍ରତ୍ୟାଶା କେତେଦୂର ପୂରଣ ହୋଇପାରିବ, ତାହା ତ ଇତିହାସ ନିର୍ଣ୍ଣୟ କରିବ । କିନ୍ତୁ ସେହି ପଦ୍ମଫୁଲର ଶୋଭା ଓ ସୁରଭି ଯେ ଗତ ୧୭-୧୮ ବର୍ଷ ମଧ୍ୟରେ ଦେଶର ଚତୁର୍ଦ୍ଦିଗରେ ଓ ପ୍ରତି କୋଣ-ଅନୁକୋଣରେ ପରିବ୍ୟାପ୍ତ ହୋଇଯାଇଛି ଏବଂ ଭାରତୀୟ ଜନତା ପାର୍ଟି ଯେ ୧୧୦ ବର୍ଷର ରାଜନୈତିକ ସଂଗଠନ କଂଗ୍ରେସକୁ ପଛରେ ପକାଇ ଦେଇ ଆଜି ଭାରତର ସର୍ବପ୍ରଧାନ ଓ ସର୍ବବୃହତ୍ ରାଜନୈତିକ ଦଳରେ ପରିଣତ ହୋଇପାରିଛି ଏହା କିଛି କମ୍ କଥା ନୁହେଁ !

୧୯୮୦ ଡିସେମ୍ବର ମାସରେ ଭାରତୀୟ ଜନତା ପାର୍ଟିର ପ୍ରଥମ ପୂର୍ଣ୍ଣାଙ୍ଗ ଅଧିବେଶନରେ ଏହାର ପ୍ରଥମ ଅଧ୍ୟକ୍ଷ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ ନିଜର ଭାଷଣ ପ୍ରସଙ୍ଗରେ କହିଥିଲେ :-

''ଭାରତ କେ ପଶ୍ଚିମୀ ଘାଟ କୋ ମଣ୍ଡିତ କରନେ ବାଲେ ମହାସାଗର କେ କିନାରେ ଖଡ଼େ ହୋକର୍ ମେଁ ଯହ୍ ଭବିଷ୍ୟବାଣୀ କର୍‌ନେ କା ସାହସ୍ କରତା ହୁଁ କି ଅଂଧେରା ଛଁଟେଗା, ସୂରଜ୍ ନିକଲେଗା, କମଲ ଖିଲେଗା ।''

**।। ସପ୍ତମ ଲୋକସଭା ନିର୍ବାଚନ ।।**

ସପ୍ତମ ଲୋକସଭା ପାଇଁ ୧୯୭୯ ଶେଷଭାଗରେ ନିର୍ବାଚନ ହେଲା । ଏଥର ଅଟଳଜୀ ପୁନର୍ବାର ନୂଆଦିଲ୍ଲୀରୁ ନିର୍ବାଚନ ଲଢ଼ି ବିପୁଳ ଭୋଟାଧିକ୍ୟରେ ନିର୍ବାଚିତ ହେଲେ । ଏ ନିର୍ବାଚନରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ଦଳ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ସହକାରେ ପୁନରାୟ କ୍ଷମତା ହାସଲ କଲା । ଅଟଳଜୀ ସ୍ଥାନ ଗ୍ରହଣ କଲେ ବିରୋଧୀ ପକ୍ଷରେ ।

ନିର୍ବାଚନର କିଛି କାଳ ପରେ ଉତ୍ତର ପ୍ରଦେଶର କେତେକ ସ୍ଥାନରେ ହରିଜନଙ୍କ ଉପରେ ସବର୍ଣ୍ଣ ଭୂମ୍ୟଧିକାରୀମାନଙ୍କ ପକ୍ଷରୁ ପ୍ରବଳ ଅତ୍ୟାଚାର କରାଯାଉଥିଲା । ଅଟଳଜୀ ଏଥିରେ ଅତ୍ୟନ୍ତ ମର୍ମାହତ ହୋଇଥିଲେ । ତେଣୁ ସେ ସଂପୃକ୍ତ ଅଞ୍ଚଳର ଜନସାଧାରଣଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଜାଗ୍ରତ କରାଇବା ଉଦ୍ଦେଶ୍ୟରେ ପଦଯାତ୍ରା ଆରମ୍ଭ କଲେ ।

ବାସ୍ତବରେ ସବୁ ପ୍ରକାର ଉତ୍ପୀଡ଼ନ ଓ ଅନ୍ୟାୟର ପ୍ରତିବାଦ କରିବା ପାଇଁ ସେ ବରାବର ଆଗେଇ ଆସୁଥିଲେ । ଲୋକ-କଲ୍ୟାଣ ଓ ଦେଶ-ସେବାକୁ ହିଁ ସେ ନିଜର ରାଜନୈତିକ ଜୀବନରେ ସବୁବେଳେ ପ୍ରଥମ ସ୍ଥାନ ଦେଇ ଆସିଛନ୍ତି ଏବଂ ଅନ୍ୟାୟ-ଅବିଚାରର ବିରୋଧ କରିବାରେ କେବେ ବି ପଶ୍ଚାତ୍‌ପଦ ହୋଇନାହାନ୍ତି । ସେଇଥିପାଇଁ କଂଗ୍ରେସ ସରକାର ଯେତେବେଳେ ମିନି ମିସାର ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ, ସେ ତାର ଦୃଢ଼ ପ୍ରତିରୋଧ କରିଥିଲେ । ଦେଶର ଯେକୌଣସି ବ୍ୟକ୍ତିଙ୍କୁ ନଜରବନ୍ଦୀ ରୂପେ ରଖିପାରିବା ନିମନ୍ତେ ଜିଲ୍ଲା ମାଜିଷ୍ଟ୍ରେଟ ବା ପୋଲିସ୍ କମିଶନରମାନଙ୍କୁ କ୍ଷମତା ଦିଆଯିବା ସଂକ୍ରାନ୍ତ ବିଧେୟକକୁ ପ୍ରତ୍ୟାହାର କରି ନିଆଯିବା ନିମନ୍ତେ ଅଟଳଜୀ ଲୋକସଭାରେ ଦୃଢ଼ ଦାବୀ ଜଣାଇଥିଲେ ।

କେବଳ ସେତିକି ନୁହେଁ, ନାଗରିକମାନଙ୍କ ବ୍ୟକ୍ତିଗତ ଅଧିକାର ଓ ସ୍ୱାଧୀନତାର ସୁରକ୍ଷା ନିମନ୍ତେ ସେ ବରାବର ସଂଗ୍ରାମ ଚଳାଇ ଆସିଥିଲେ । କୌଣସି ବ୍ୟକ୍ତିଙ୍କୁ କାରଣ ନ ଦର୍ଶାଇ ଗିରଫ କରାଯିବାର ପ୍ରକ୍ରିୟାକୁ ସେ ଦୃଢ଼ ବିରୋଧ କରୁଥିଲେ ।

**।। ପଞ୍ଜାବରେ ଅଶାନ୍ତି, ଉପଦ୍ରବ ଓ ହତ୍ୟାର ତାଣ୍ଡବ ।।**

କଂଗ୍ରେସ ସରକାର ନିଜ ଶାସଗାଦୀକୁ ସୁରକ୍ଷିତ କରିବା ଉଦ୍ଦେଶ୍ୟରେ ପଞ୍ଜାବରେ ଆତଙ୍କବାଦକୁ ପ୍ରଥମେ ପ୍ରୋତ୍ସାହନ ଦେଇ ପରେ ଅବସ୍ଥା ଅସମ୍ଭାଳ ହେବାରୁ ତାକୁ ଅଶାନ୍ତ ବା ଉପଦ୍ରୁତ ଅଞ୍ଚଳ ରୂପେ ଘୋଷଣା କଲେ । ଅଟଳଜୀ ସଂସଦରେ ଏହାର ଦୃଢ଼ ବିରୋଧ କରିଥିଲେ । ସେ ତାଙ୍କ ଭାଷଣରେ କହିଥିଲେ: ''ପଞ୍ଜାବର ଜନସାଧାରଣ ବର୍ତ୍ତମାନ ଦୁଇ ପକ୍ଷର ଅତ୍ୟାଚାର ମଧ୍ୟରେ ପେଷି ହୋଇ ରହିଛନ୍ତି । ଏକ ପକ୍ଷରେ ଆତଙ୍କବାଦୀମାନେ ନିର୍ଦ୍ଦୋଷ ଲୋକମାନଙ୍କୁ ହତ୍ୟା କରି ଚାଲିଥିବା ବେଳେ ଅପର ପକ୍ଷରେ ସରକାରଙ୍କ ପୋଲିସ୍ ବାହିନୀ ଆତଙ୍କ ଦମନ ନାମରେ ନିରପରାଧ ଲୋକଙ୍କ ପ୍ରାଣ ନାଶ କରି ଚାଲିଛନ୍ତି । ସ୍ୱରାଷ୍ଟ୍ର ମନ୍ତ୍ରୀ ତ କହୁଛନ୍ତି ଯେ, ଆମେ ଅକାଳୀମାନଙ୍କ ସହିତ ଆଲୋଚନା କରିବାକୁ, ଏପରିକି ଅକାଳୀମାନଙ୍କ ସହିତ ମିଶି ସରକାର ଗଢ଼ିବାକୁ ପ୍ରସ୍ତୁତ ଅଛୁଁ । ତା'ହେଲେ ପଞ୍ଜାବକୁ ଉପଦ୍ରୁତ ଅଞ୍ଚଳ ରୂପେ ଘୋଷଣା କରାଯିବା କି ଦରକାର ? ଯାହା ଦେଖାଯାଉଛି, ସରକାରଙ୍କର ଇଚ୍ଛା ଶକ୍ତିର ଘୋର ଅଭାବ ରହିଛି । ଏ ପରିସ୍ଥିତିରେ ସରକାର ଅଧିକରୁ ଅଧିକ କ୍ଷମତା ନେଇ କ'ଣ ବା କରିପାରିବେ ? ଆମର ଆଶଙ୍କା  ଏହି ଅତିରିକ୍ତ କ୍ଷମତାର ଦୁରୁପଯୋଗ ହେବ । ସେଥିପାଇଁ ଆମେ ଏହାର ବିରୋଧ କରୁଛୁ ।''

ପଞ୍ଜାବରେ ଉଗ୍ର ଆତଙ୍କବାଦ ଏବଂ ନିର୍ମମ ହତ୍ୟାର ତାଣ୍ଡବ ଲୀଳା ଅବ୍ୟାହତ ରହିବା କାରଣରୁ ଅଟଳଜୀ ଗଭୀର କ୍ଷୋଭ ଓ ଉଦ୍‌ବେଗ ପ୍ରକାଶ କରିଥିଲେ । ଲୋକସଭାରେ ସେ ଏ ନେଇ ତାଙ୍କର ଏକ ଭାଷଣରେ କହିଥିଲେ : ''ପଞ୍ଜାବକୁ ତ

ଉପଦ୍ରୁତ ଅଞ୍ଚଳ ରୂପେ ଘୋଷଣା କରାଯାଇ ପୋଲିସ୍ ବାହିନୀକୁ ଅସାଧାରଣ କ୍ଷମତା ଦିଆଯାଇଛି । ତା' ସତ୍ତ୍ୱେ ପରିସ୍ଥିତିରେ ଏପରି ଅବନତି ଘଟୁଛି କାହିଁକି ? ଏବେ ପଞ୍ଜାବରେ ସୈନ୍ୟ ବାହିନୀର ଉପଯୋଗ କରିବା ପାଇଁ ମଧ୍ୟ ପ୍ରସ୍ତୁତି ଚାଲିଛି । କିନ୍ତୁ ଅବସ୍ଥା ଏପରି ଅସମ୍ଭାଳ ହେଲା କିପରି ଓ କାହିଁକି, ସରକାର ତାହା ଜାଣି ପାରୁନାହାନ୍ତି । ଏହା ବାସ୍ତବିକ ବଡ଼ ଉଦ୍‌ବେଗର ବିଷୟ । ମୁଁ ସ୍ୱରାଷ୍ଟ୍ର ମନ୍ତ୍ରୀଙ୍କ ଠାରୁ ଜାଣିବାକୁ ଚାହେଁ, କେତେ ସଂଖ୍ୟକ ଆତଙ୍କବାଦୀ ଏପର୍ଯ୍ୟନ୍ତ ଧରା ପଡ଼ିଛନ୍ତି ? କୁହାଯାଉଛି ଯେ, ଇତିମଧ୍ୟରେ ଚାରି ହଜାରରୁ ଅଧିକ ଲୋକ ଗିରଫ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଚୋର-ଡକାୟତ ଥିବେ, ସମାଜବିରୋଧୀ ଥିବେ ଓ ଅନ୍ୟାନ୍ୟ ଶ୍ରେଣୀର ଅପରାଧୀ ବି ଥିବେ । କିନ୍ତୁ ଆତଙ୍କବାଦୀଙ୍କ ସଂଖ୍ୟା ସେମାନଙ୍କ ମଧ୍ୟରୁ ସଠିକ୍ କେତେ ? ମୁଁ ଚାହେଁ ଉଗ୍ରବାଦୀମାନଙ୍କର ପୂର୍ଣ୍ଣ ସଂଖ୍ୟା ଓ ଶକ୍ତି ସଂପର୍କରେ ସରକାର ତୁରନ୍ତ ଏକ ଶ୍ୱେତପତ୍ର ପ୍ରକାଶ କରନ୍ତୁ । କେଉଁ କେଉଁ ଦଳ ବା ରାଜନୈତିକ ନେତାଙ୍କ ସହିତ ଆତଙ୍କବାଦୀମାନଙ୍କର ସମ୍ବନ୍ଧ ରହିଛି, ଦଲ୍ ଖାଲ୍‌ସାର ସ୍ଥାପନା କେଉଁମାନେ କରିଛନ୍ତି ଏବଂ ୧୯୮୦ ନିର୍ବାଚନ ବେଳେ ସନ୍ଥ ଭିନ୍ଦ୍ରନ୍‌ବାଲେ ଓ ତାଙ୍କର ସହଯୋଗୀମାନଙ୍କର ସମର୍ଥନ ଓ ସହଯୋଗ କେଉଁମାନେ ନେଇଥିଲେ ଏସବୁ ବିଷୟ ମଧ୍ୟ ଏହି ଶ୍ୱେତପତ୍ରରେ ରହିବା ଆବଶ୍ୟକ ।''

ପଞ୍ଜାବର ହରମିନ୍ଦର ସାହିବ ଗୁରୁଦ୍ୱାର ମଧ୍ୟରୁ ଆତଙ୍କବାଦୀମାନଙ୍କୁ ହଟାଇବା ପାଇଁ ସୈନ୍ୟବାହିନୀକୁ ପ୍ରୟୋଗ କରାଯାଇଥିବା ବେଳେ ଅଟଳଜୀ କହିଥିଲେ ''ସେନାବାହିନୀର ସେହି ସବୁ ଅଫିସର ଓ ଜବାନ୍‌କୁ ମୁଁ ବଧାଇ ଜଣାଉଛି, ଯେଉଁମାନେ ନିଜ ଜୀବନକୁ ବିପଦାପନ୍ନ କରି ଓ ବଳି ଦେଇ ଶିଖ୍‌ମାନଙ୍କର ପବିତ୍ର ତୀର୍ଥ ଏବଂ ସବୁ ଭାରତୀୟଙ୍କ ପାଇଁ ଶ୍ରଦ୍ଧାର ସ୍ଥାନ ହରମିନ୍ଦର ସାହିବକୁ ଆତଙ୍କବାଦୀଙ୍କ କବଳରୁ ମୁକ୍ତ କରିଛନ୍ତି ଏବଂ ଏହାର ପବିତ୍ରତାକୁ ପୁନରୁଦ୍ଧାର କରି ପାରିଛନ୍ତି । ସେନାବାହିନୀକୁ ବାସ୍ତବିକ ଏକ କଠିନ ଦାୟିତ୍ୱ ଦିଆଯାଇଥିଲା, ଯାହା ସେମାନେ କୁଶଳତା ଓ ବାହାଦୁରୀ ସହକାରେ ନିର୍ବାହ କରିଛନ୍ତି । ତେଣୁ ସେମାନେ ଅଭିନନ୍ଦନୀୟ । କିନ୍ତୁ ଆମେ ଏ କଥା ଭୁଲିଯିବା ଉଚିତ ନୁହେଁ ଯେ, ମୁଖ୍ୟତଃ ବିଦେଶୀ ଶତ୍ରୁମାନଙ୍କର ମୁକାବିଲା କରିବା ନିମିତ୍ତ ହିଁ ସେନାବାହିନୀ ସଂଗଠିତ ହୋଇଛି । ନିଜ ଦେଶବାସୀଙ୍କ ବିରୁଦ୍ଧରେ ସେନାବାହିନୀର ଉପଯୋଗ କରାଯିବା ଏକ ଅପ୍ରିୟ ପଦକ୍ଷେପ, ଯାହାକି ଯଥାସମ୍ଭବ ଏଡ଼ାଯିବା ଉଚିତ୍ । ତା'ଛଡ଼ା କୌଣସି ଧାର୍ମିକ ସ୍ଥାନକୁ ସୈନ୍ୟ ପ୍ରେରଣ କରିବାର ଏହା ପ୍ରଥମ ତଥା ଶେଷ ଘଟଣା ହେବା ଦରକାର । ଭବିଷ୍ୟତ୍‌ରେ ଆଉ କେବେ ଯେପରି ଏ ପ୍ରକାର ପରିସ୍ଥିତି ସୃଷ୍ଟି ହେବାକୁ ଦିଆ ନ ଯାଏ, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।''

ଅନ୍ୟ ଏକ ଭାଷଣରେ ସେ କହିଥିଲେ : ''ସ୍ୱାଧୀନତା ଲାଭର ୩୬ ବର୍ଷ ପରେ, ଦେଶ-ବିଭାଜନର ୩୬ ବର୍ଷ ପରେ ବି ଆଜି ଦେଶର ଐକ୍ୟ ଓ ସଂହତି

ଉପରେ ପୁଣି ଏକ ପ୍ରଶ୍ନବାଚୀ ସୃଷ୍ଟି ହେବା, ଶାସନ ଚଳାଉଥିବା ଲୋକଙ୍କ ପାଇଁ ଭଲ କଥା ନୁହେଁ । ଧର୍ମ ଓ ସଂପ୍ରଦାୟର ଆଧାର ଉପରେ ହିଁ ପାକିସ୍ଥାନ ଗଢ଼ା ଯାଇଥିଲା । ଆମେ କିନ୍ତୁ ଧର୍ମ ଓ ସଂପ୍ରଦାୟକୁ ଆଧାର କରି ନ ଥିଲୁ । ଆମେ କହିଥିଲୁଁ ଯେ ଆମ ଦେଶ ହେବ ଧର୍ମନିରପେକ୍ଷ, ସେକ୍ୟୁଲାର । ତା'ହେଲେ ଏବେ ପୁଣି ସେ ପ୍ରକାର ପରିସ୍ଥିତି ସୃଷ୍ଟି ହେଲା କାହିଁକି ? ଏଥିପାଇଁ କ'ଣ କେବଳ ଅକାଳୀମାନେ ଦାୟୀ ? ଆମ ଶାସକମାନଙ୍କର, ପ୍ରଧାନମନ୍ତ୍ରୀଙ୍କର କିଛି ଦାୟିତ୍ୱ ନାହିଁ ?''

ଅମୃତସରର ସ୍ୱର୍ଣ୍ଣ ମନ୍ଦିର ପରିସର ମଧ୍ୟରେ ସୈନ୍ୟବାହିନୀର ପ୍ରବେଶ ଘେନି ଯେଉଁ ବିସ୍ଫୋରଣମୂଳକ ପରିସ୍ଥିତି ସୃଷ୍ଟି ହୋଇଥିଲା, ସେ ସଂକ୍ରାନ୍ତରେ ଅଟଳଜୀ ନିଜର ଏକ ଭାଷଣରେ ସରକାରଙ୍କୁ ଚେତାବନୀ ଶୁଣାଇ କହିଥିଲେ : ''ପ୍ରଧାନମନ୍ତ୍ରୀ କହୁଛନ୍ତି ଯେ ସେ ବିଷ ପାନ କରିବାକୁ ପ୍ରସ୍ତୁତ ଅଛନ୍ତି । ତାଙ୍କ ଭାଗରେ ତ ଅମୃତ ଆସିଛି; ବିଷ ତ ଅନ୍ୟମାନେ ପିଇବେ । କିନ୍ତୁ ମୁଁ କହିବାକୁ ଚାହୁଁଛି, ଦେଶର ଐକ୍ୟ ଓ ସଂହତିକୁ କେବେ ବି ରାଜନୀତିର ପ୍ରଶ୍ନ କରା ନ ଯାଉ । ଜାତିର ଏକତା ସହିତ ଖେଳ ଖେଳା ନ ଯାଉ । ଯାହା କିଛି ଘଟିଗଲା, ତାକୁ ଏବେ ଭୁଲିଯାଇ ନୂତନ ଅଧ୍ୟାୟ ଆରମ୍ଭ କରାଯାଉ । ସ୍ୱର୍ଣ୍ଣ ମନ୍ଦିରରେ ସୈନ୍ୟ ବାହିନୀ କେତେ କାଳ ରହିବେ ? ପଞ୍ଜାବରେ ସେନ୍‌ସର କେତେ ଦିନ ଚାଲୁ ରହିବ ?''

ସମସ୍ତେ ଜାଣନ୍ତି, ପଞ୍ଜାବରେ ଯେଉଁ ବିସ୍ଫୋରଣମୂଳକ ପରିସ୍ଥିତିର ଉଦ୍‌ଭବ ହୋଇଥିଲା, ତା'ରି ଫଳରେ ହିଁ ଶେଷରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ୧୯୮୪ ଅକ୍ଟୋବର ମାସରେ ନିଜର ପ୍ରାଣବଳି ଦେବାକୁ ପଡ଼ିଥିଲା ।

**।। ଅଷ୍ଟମ ଲୋକସଭା ନିର୍ବାଚନ ।।**

ସେହି ୧୯୮୪ରେ ହିଁ ଅନୁଷ୍ଠିତ ହେଲା ୮ମ ଲୋକସଭା ନିର୍ବାଚନ । ଅଟଳଜୀ ଏଥର ନୂଆଦିଲ୍ଲୀ ପରିବର୍ତ୍ତେ ଗ୍ୱାଲିୟରରୁ ପ୍ରାର୍ଥୀ ହୋଇଥିଲେ ଏବଂ ସେଠାରୁ କଂଗ୍ରେସ ଦଳର ପ୍ରାର୍ଥୀ ହୋଇଥିବା ପୂର୍ବତନ ଜନସଂଘୀ ତଥା ଗ୍ୱାଲିୟରର ପୂର୍ବତନ ରାଜା ଶ୍ରୀ ମାଧବ ରାଓ ସିନ୍ଧିଆଙ୍କ ନିକଟରୁ ହାରି ଯାଇଥିଲେ । ଅଳ୍ପ କିଛିଦିନ ପୂର୍ବରୁ ସଂଘଟିତ ହୋଇଥିବା ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଜଘନ୍ୟ ହତ୍ୟାକାଣ୍ଡ କାରଣରୁ ମା'ଛେଉଣ୍ଡ ପୁଅ ରାଜୀବ ଗାନ୍ଧୀଙ୍କ ପାଇଁ ଯେଉଁ ବ୍ୟାପକ ସହାନୁଭୂତି ଓ ସମ୍ବେଦନର ଲହର ସୃଷ୍ଟି ହୋଇଥିଲା,ତାର ପ୍ରବାହରେ କଂଗ୍ରେସ ଦଳ ଏ ନିର୍ବାଚନରେ ନାହିଁ ନ ଥିବା ବିପୁଳ ସଂଖ୍ୟାଗରିଷ୍ଠତା ହାସଲ କଲା ଏବଂ ବିରୋଧୀ ଦଳମାନେ ଶୋଚନୀୟ ପରାଜୟ ବରଣ କଲେ । ଏହି ନିର୍ବାଚନ ପୂର୍ବରୁ ଲୋକସଭାରେ ଭାରତୀୟ ଜନତା ପାର୍ଟିର ୨୨ ଜଣ ସଦସ୍ୟ ଥିଲେ ମଧ୍ୟ, ଏଥର ମାତ୍ର ଦୁଇଜଣ ସଭ୍ୟ ନିର୍ବାଚିତ ହୋଇଥିଲେ ।

ଅଟଳଜୀ ଏ ନିର୍ବାଚନରେ ହାରିବାର ଅନ୍ୟ ଏକ କାରଣ ମଧ୍ୟ ରହିଥିଲା । ଶ୍ରୀ ମାଧବ ରାଓ ସିନ୍ଧିଆ ଗୁନାରୁ ନିର୍ବାଚନ ଲଢ଼ିବା ସଂପର୍କରେ ପୂର୍ବରୁ ତାଙ୍କୁ ସୂଚାଇଥିଲେ ।

ତଦନୁଯାୟୀ ଅଟଳଜୀ ଗ୍ୱାଲିୟରରୁ ପ୍ରାର୍ଥୀ ହେବା ପାଇଁ ନିଶ୍ଚୟ କରିଥିଲେ । କିନ୍ତୁ ଶେଷ ମୁହୂର୍ତ୍ତରେ ଶ୍ରୀ ସିନ୍ଧିଆ ହଠାତ୍ ଗ୍ୱାଲିୟରରୁ ପ୍ରାର୍ଥୀ ହେବା ଫଳରେ ଅଟଳଜୀ ନିଜର ନିର୍ବାଚନମଣ୍ଡଳୀ ପରିବର୍ତ୍ତନ କରିବା ପାଇଁ ସମୟ ପାଇ ପାରି ନ ଥିଲେ । ପରବର୍ତ୍ତୀ କାଳରେ ଶ୍ରୀ ସିନ୍ଧିଆଙ୍କୁ ଏ ନେଇ କେତେକ ବନ୍ଧୁ ପ୍ରଶ୍ନ କରିବାରେ ସେ କହିଥିଲେ ଯେ, ଅଟଳଜୀ ତାଙ୍କୁ ଚ୍ୟାଲେଞ୍ଜ ଦେବା ଯୋଗୁହିଁ ଗ୍ୱାଲିୟରରୁ ଲଢ଼ିବା ଲାଗି ସେ ନିଷ୍ପତ୍ତି କରିଥିଲେ । କିନ୍ତୁ ଅଟଳଜୀ ଏ କଥାକୁ ଅସ୍ୱୀକାର କରି କହିଥିଲେ : "ଏହା ସଂପୂର୍ଣ୍ଣ ରୂପେ ଏକ ମନଗଢ଼ା କଥା । ନିଜର ରାଜନୀତିକ ବିରୋଧୀମାନଙ୍କ ପ୍ରତି ମୁଁ କେବେ ହେଲେ ଏ ପ୍ରକାର ଚ୍ୟାଲେଞ୍ଜ ଦିଏନାହିଁ କି ଏପରି ଅଶିଷ୍ଟ ବ୍ୟବହାର କରିବା ମୋର ସ୍ୱଭାବ ନୁହେଁ । ତା'ଛଡ଼ା ଶ୍ରୀ ସିନ୍ଧିଆଙ୍କ ପ୍ରତି ତ ସ୍ୱାଭାବିକ ଭାବେ ମୋର ସ୍ନେହ ଓ ସମ୍ମାନ ରହି ଆସିଛି । ଏକଦା ତାଙ୍କୁ ମୁଁ ନିଜେ ଜନସଂଘର ସଦସ୍ୟ କରାଇଥିଲି ।" ବାସ୍ତବରେ ସେଥର ନିର୍ବାଚନରେ ଅଟଳଜୀଙ୍କୁ ହରାଇବା ଉଦ୍ଦେଶ୍ୟରେ ହିଁ କଂଗ୍ରେସ ଦଳ ଶ୍ରୀ ସିନ୍ଧିଆଙ୍କୁ ଗ୍ୱାଲିୟରରୁ ଠିଆ କରାଇଥିଲା ।

**।। ସଂସଦ ବାହାରେ ବର୍ଷଟିଏ ।।**

୧୯୮୪ ଶେଷ ଭାଗରେ ହୋଇଥିବା ୮ମ ଲୋକସଭା ନିର୍ବାଚନରେ ଅଟଳଜୀ ହାରିଯିବା ଏବଂ ତା'ପରେ ରାଜ୍ୟସଭାକୁ ଯାଇ ନ ପାରିବା କାରଣରୁ ଗୋଟିଏ ବର୍ଷ (୧୯୮୫) ପାଇଁ ତାଙ୍କୁ ସଂସଦ ବାହାରେ ରହିବାକୁ ପଡ଼ିଥିଲା । ୧୯୫୭ରୁ ସଂସଦୀୟ ଜୀବନ ଆରମ୍ଭ କରିଥିବା ଅଟଳଜୀ କେବଳ ଗୋଟିଏ ବର୍ଷ ବ୍ୟତୀତ ଏପର୍ଯ୍ୟନ୍ତ ବରାବର ସଂସଦର କୌଣସି ନା କୌଣସି ଗୃହରେ ସଦସ୍ୟ ହୋଇ ରହି ଆସିଛନ୍ତି । ୩ୟ ଲୋକସଭା ନିର୍ବାଚନ (୧୯୬୨)ରେ ସେ ଅତି ଅଳ୍ପ ଭୋଟ ବ୍ୟବଧାନରେ ହାରି ଯାଇଥିଲେ । ତେବେ ଏହାର ଅଳ୍ପ କାଳ ପରେ ହିଁ ସେ ରାଜ୍ୟସଭାର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ । ୨ୟ ଥର ହାରିବା ପରେ ଏକ ବର୍ଷ କାଳ ତାଙ୍କୁ ସଂସଦ ବାହାରେ ରହିବାକୁ ପଡ଼ିଥିଲେ ମଧ୍ୟ ୧୯୮୬ରେ ସେ ପୁନରାୟ ରାଜ୍ୟସଭାର ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ ।

**।। ପୁଣି ରାଜ୍ୟସଭାରେ ପ୍ରତିନିଧିତ୍ୱ ।।**

ଅଟଳଜୀ ପ୍ରଥମେ ୧୯୬୨ରେ ରାଜ୍ୟସଭା ସଦସ୍ୟ ହୋଇଥିବା ବେଳେ ଭାରତୀୟ ଜନସଂଘର ନେତା ଥିଲେ ଏବଂ ସେତେବେଳେ ଦେଶର ପ୍ରଧାନମନ୍ତ୍ରୀ ଆସନରେ ଥିଲେ ଯଥାକ୍ରମେ ପଣ୍ଡିତ ନେହେରୁ, ଲାଲ ବାହାଦୁର ଶାସ୍ତ୍ରୀ ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ସେ ଯେତେବେଳେ ୨ୟ ଥର ପାଇଁ ୧୯୮୬ରେ ରାଜ୍ୟସଭାକୁ ଗଲେ, ସେତେବେଳେ ପ୍ରଧାନମନ୍ତ୍ରୀ ଆସନରେ ଥିଲେ ଶ୍ରୀ ରାଜୀବ ଗାନ୍ଧୀ । ଶ୍ରୀ ଗାନ୍ଧୀ ନିଜେ ଜଣେ ତରୁଣ ହୋଇଥିବା ଦୃଷ୍ଟିରୁ ନିଜର ବହୁ ଯୁବ-ବନ୍ଧୁଙ୍କୁ ରାଜ୍ୟସଭାର ସଭ୍ୟ କରାଇଥିଲେ । ସମ୍ଭବତଃ ଏହି ବିଷୟକୁ ଲକ୍ଷ୍ୟ କରି ଅଟଳଜୀ ଲେଖିଥିଲେ :

"ରାଜନୀତିକ ଦଳମାନେ ରାଜ୍ୟସଭା ନିମନ୍ତେ ସଭ୍ୟ ନିର୍ବାଚନ କଲାବେଳେ ଯଥେଷ୍ଟ ସାବଧାନତା ଅବଲମ୍ବନ କରିବା ବାଞ୍ଛନୀୟ । ବିଭିନ୍ନ ଦଳର ବୟୋବୃଦ୍ଧ ଓ ଅଭିଜ୍ଞ ନେତାମାନଙ୍କୁ ଏହି ସଭ୍ୟପଦ ଦ୍ୱାରା ସମ୍ମାନିତ କରାଯାଇପାରେ; କିନ୍ତୁ ଅନୁଭବ, ଅଭିଜ୍ଞତା ଓ ଜ୍ଞାନ ଦୃଷ୍ଟିରୁ ମଧ୍ୟ ସେମାନେ ଯଥେଷ୍ଟ ଯୋଗ୍ୟ ହୋଇଥିବା ଆବଶ୍ୟକ । ରାଜନୀତିକ ଦଳମାନେ ରାଜ୍ୟସଭା ପାଇଁ ସଭ୍ୟ ବାଛିବା ବେଳେ ଯଦି ସମାଜର ବିଭିନ୍ନ ବର୍ଗରୁ ଯୋଗ୍ୟ ଓ ଗୁଣୀ ବ୍ୟକ୍ତିମାନଙ୍କୁ ପ୍ରତିନିଧିତ୍ୱ ଦେବା ଲାଗି ଯତ୍ନବାନ ହୁଅନ୍ତେ, ତେବେ ତଦ୍ଦ୍ୱାରା ସଂପୃକ୍ତ ଦଳମାନେ ନିଜେ ଯଥେଷ୍ଟ ଉପକୃତ ହୋଇପାରିବା ସଂଗେ ସଂଗେ ରାଜ୍ୟସଭାର ଚେହେରା ମଧ୍ୟ ଯଥେଷ୍ଟ ଉଜ୍ଜ୍ୱଳ ଏବଂ ଏହାର କାର୍ଯ୍ୟକାରିତା ଅଧିକ ଫଳପ୍ରଦ ହୋଇପାରନ୍ତା । ପ୍ରତିରକ୍ଷା ବିଭାଗର ଅବସରପ୍ରାପ୍ତ ଅଧିକାରୀ, ଶିକ୍ଷାବିତ୍, ବୈଜ୍ଞାନିକ, ଲେଖକ, କଳାକାର, ଉଦ୍ୟୋଗପତି, ରଚନାତ୍ମକ କର୍ମୀ ଓ ସମାଜସେବୀମାନଙ୍କ ମଧ୍ୟରୁ ପ୍ରବୀଣ, ଅଭିଜ୍ଞ ଓ ଯୋଗ୍ୟ ବ୍ୟକ୍ତିମାନଙ୍କୁ ରାଜସଭାକୁ ପଠାଯାଇ ପାରିଲେ ବିଭିନ୍ନ ବିଷୟରେ ସେମାନଙ୍କର ପରାମର୍ଶ ଓ ଆଲୋଚନାରୁ ଦେଶର ଯଥେଷ୍ଟ ଉପକାର ହୋଇପାରନ୍ତା ।" (ଦ୍ରଷ୍ଟବ୍ୟ: 'ସଂସଦ ମେ ଚାର ଦଶକ୍' ପୁସ୍ତକର ପୃଷ୍ଠା-୩୧) ।

**।। ସବୁବେଳେ ଦେଶର ଚିନ୍ତା ।।**

ଦେଶର ଅଖଣ୍ଡତା ଓ ଏକତାର ପଥରେ ଯେତେବେଳେ କୌଣସି ବାଧା-ବିପତ୍ତି ଦେଖାଦିଏ, ଅଟଳଜୀ ସେଥିରେ ବଡ଼ ଉଦ୍‌ବିଗ୍ନ ହୋଇ ଉଠନ୍ତି । ପୃଥକତାବାଦୀ ଚିନ୍ତାଧାରା ଯେପରି ପ୍ରଶ୍ରୟ ନ ପାଏ, ସେଥିପାଇଁ ସେ ସର୍ବଦା ସଜାଗ ଥା'ନ୍ତି । କାଶ୍ମୀର, ପଞ୍ଜାବ, ଆସାମ, ଉତ୍ତର-ପୂର୍ବାଞ୍ଚଳ, ଝାଡ଼ଖଣ୍ଡ, ଗୋର୍ଖାଲ୍ୟାଣ୍ଡ ଓ ତାମିଲନାଡୁ ଇତ୍ୟାଦି ବିଭିନ୍ନ ଅଞ୍ଚଳର ସମସ୍ୟା ସଂକ୍ରାନ୍ତରେ ସେ ବରାବର ଚିନ୍ତା ପ୍ରକଟ କରିବା ସଂଗେ ସଂଗେ ସରକାରଙ୍କୁ ଠିକଣା ସମୟରେ ସମୁଚିତ ଚେତାବନୀ ଓ ପରାମର୍ଶ ଦେବାକୁ କେବେ ବି ଭୁଲି ନ ଥିଲେ । ତାଙ୍କ ଭିତରେ ପ୍ରଖର ରାଷ୍ଟ୍ରଭକ୍ତିର ଜୁଆର ପ୍ରବାହିତ ହେଉଥିବାରୁ ଶୟନେ-ସପନେ-ଜାଗରଣେ ସବୁବେଳେ ସେ କେବଳ ମାତୃଭୂମିର ଚିନ୍ତା କରି ଆସିଛନ୍ତି । ଶ୍ରୀଲଙ୍କାର ଅବସ୍ଥା ଯେତେବେଳେ ଦିନକୁ ଦିନ ଖରାପ ହେବାରେ ଲାଗିଥିଲା ଏବଂ ତାମିଲନାଡୁର ଲୋକେ ଚିନ୍ତାକୁଳ ରହିଥିଲେ, ସେତେବେଳେ ଆମ ସରକାର ନିଜର କର୍ତ୍ତବ୍ୟ ସ୍ଥିର କରି ପାରୁ ନ ଥିଲେ । ଅଟଳଜୀ ସେ ସମୟରେ ସରକାରଙ୍କୁ ଯେ ପ୍ରକାର ପରାମର୍ଶ ଦେଇଥିଲେ, ତାହା ଅବିସ୍ମରଣୀୟ ।

**।। ରାଷ୍ଟ୍ରର ସଜାଗ ପ୍ରହରୀ ।।**

ସଂସଦର ଭିତରେ ତଥା ବାହାରେ ଅଟଳଜୀ ବରାବର ରାଷ୍ଟ୍ରର ସଜାଗ ପ୍ରହରୀ ରୂପେ କାର୍ଯ୍ୟ କରି ଆସିଛନ୍ତି । ରାଷ୍ଟ୍ରର ସମ୍ମାନ ଓ ମର୍ଯ୍ୟାଦା ଉପରେ ଆଞ୍ଚ ଆସିବାକୁ

ସେ କେବେ ବି ଦେଉ ନ ଥିଲେ। ରାଷ୍ଟ୍ରୀୟ ଗୌରବ ରକ୍ଷା କ୍ଷେତ୍ରରେ ସେ ବରାବର ଅଗ୍ରଣୀ ଭୂମିକା ତୁଲାଇ ଆସିଛନ୍ତି। ବୁଡ଼ାଜାହାଜ କିଣା ବ୍ୟାପାର ହେଉ କି ବୋଫର୍ସ ତୋପ କିଣା କାରବାର ହେଉ, ଏ ପ୍ରକାର ଜାତୀୟ ଦୁର୍ନାମ ରଟନା କ୍ଷେତ୍ରରେ ସେ ସରକାରଙ୍କୁ କଠୋର ସମାଲୋଚନା କରିବା ସଂଗେ ସଂଗେ, ସମୟୋଚିତ ପଦକ୍ଷେପ ଗ୍ରହଣ ଏବଂ ପରିସ୍ଥିତିର ଉପଯୁକ୍ତ ମୁକାବିଲା କରିବା ନିମନ୍ତେ ସରକାରଙ୍କୁ ବହୁମୂଲ୍ୟ ପରାମର୍ଶମାନ ମଧ୍ୟ ଦେଇ ଆସିଛନ୍ତି।

କଂଗ୍ରେସ ସରକାରଙ୍କ ଭ୍ରମାତ୍ମକ ନୀତି ଓ କାର୍ଯ୍ୟକଳାପ ଯୋଗୁଁ ଅନେକ ସମୟରେ ଦେଶର ଆଭ୍ୟନ୍ତରୀଣ ତଥା ବାହ୍ୟ ପରିସ୍ଥିତି ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥିଲା। ତାର ଫଳଶ୍ରୁତି ସ୍ୱରୂପ ପଞ୍ଜାବ ତଥା ଦିଲ୍ଲୀରେ ଭୟାବହ ତଥା ଅବାଞ୍ଛିତ ଦଙ୍ଗା ଗୋଳ ସୃଷ୍ଟି ହୋଇ ଅସଂଖ୍ୟ ନିର୍ଦ୍ଦୋଷ ଲୋକଙ୍କର ପ୍ରାଣହାନୀ ଘଟିଥିଲା। ଜଣେ ଜାଗରୁକ ସାଂସଦର ଭୂମିକା ନିର୍ବାହ କରିବାକୁ ଯାଇ ଅଟଳଜୀ ରାଜ୍ୟସଭାରେ କହିଥିଲେ : ''ଦିଲ୍ଲୀର ଦଙ୍ଗାରେ ଯେଉଁମାନଙ୍କର ହାତ ରକ୍ତରଂଜିତ ହୋଇଛି, ସେମାନେ ଯେ ପଞ୍ଜାବ ସମସ୍ୟାର ସମାଧାନ କରିପାରିବେ- ଏ ନେଇ ଘୋର ସଂଦେହ ରହିଛି। ଦିଲ୍ଲୀ-ଦଙ୍ଗା ଲାଗି ଯେଉଁମାନେ ଦାୟୀ, ଦିନେ ନା ଦିନେ ସେମାନଙ୍କୁ ଶାସ୍ତି ଭୋଗିବାକୁ ପଡ଼ିବ। ଏକଥା କେହି ଭୁଲିଯିବା ଉଚିତ ନୁହେଁ। xxx ଯେତେବେଳେ ମୁଁ ପଞ୍ଜାବକୁ ଯାଉଛି ଓ ହିନ୍ଦୁ-ଶିଖ୍ ଭାଇଚାରା ବିଷୟରେ କିଛି କହୁଚି, ସେତେବେଳେ ମୋତେ ସେଠା ଲୋକେ ପ୍ରଶ୍ନ କରୁଛନ୍ତି- ଇନ୍ଦିରାଜୀଙ୍କ ହତ୍ୟା ଘଟଣା ପରେ ପରେ ଯେତେବେଳେ ଶହ ଶହ ନିରୀହ ନିରପରାଧ ଶିଖ୍ଙ୍କୁ ଦିଲ୍ଲୀରେ ହତ୍ୟା କରାଯାଉଥିଲା, ସେତେବେଳେ ଆପଣ କେଉଁଠି ଥିଲେ ? ମୁଁ ଅବଶ୍ୟ ନିଜ ଢଙ୍ଗରେ ସେ ପ୍ରଶ୍ନର ଉତ୍ତର ଦେଇଥାଏଁ; କାରଣ ଏହି ହତ୍ୟାକାରୀମାନଙ୍କ ମଧ୍ୟରେ ଆମେ ସାମିଲ ନ ଥିଲୁଁ। କିନ୍ତୁ ସରକାର ଯେ ଏ ନେଇ କାଠଗଡ଼ାରେ ଅଛନ୍ତି- ଏଥିରେ କୌଣସି ସନ୍ଦେହ ନାହିଁ।''

### ।। ଶିକ୍ଷା-ସଂସ୍କାର ପାଇଁ ପରାମର୍ଶ ।।

ବ୍ୟକ୍ତି ଆଉ ରାଷ୍ଟ୍ର- ଉଭୟର ଉତ୍‌ଥାନ ପାଇଁ ଅଟଳଜୀ ବରାବର ସମୁଚିତ ଶିକ୍ଷା ବ୍ୟବସ୍ଥା ଉପରେ ଗୁରୁତ୍ୱ ଦେଇ ଆସିଛନ୍ତି। ଭାରତବର୍ଷକୁ ସେ ଏପରି ଏକ ସଭ୍ୟ-ସୁଶିକ୍ଷିତ ରାଷ୍ଟ୍ର ରୂପେ ଦେଖିବାକୁ ଚାହାନ୍ତି, ଯେଉଁଥିରେ ଆପଣାର ପ୍ରାଚୀନ ସାହିତ୍ୟ, ସଂସ୍କୃତି, କଳାର ସହାୟତାରେ ବର୍ତ୍ତମାନର ଦିଗ-ନିର୍ଦ୍ଦେଶନ କରାଯାଇ ପାରିବ। ଆମର ଅତୀତ ଯେପରି ସ୍ୱର୍ଣ୍ଣିମ ଥିଲା, ଭବିଷ୍ୟତକୁ ମଧ୍ୟ ସେହିପରି ସ୍ୱର୍ଣ୍ଣିମ କରିବା ପାଇଁ ଆମକୁ ବର୍ତ୍ତମାନ ଯେ ଯଥେଷ୍ଟ ଯତ୍ନଶୀଳ ହେବାକୁ ପଡ଼ିବ- ସେଥିଲାଗି ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ଗଢ଼ି ତୋଳିବା ନିମନ୍ତେ ଅଟଳଜୀ ବରାବର ପରାମର୍ଶ ଦେଇଥାନ୍ତି। ଦେଶରେ ସମସ୍ତଙ୍କ ଲାଗି ସମାନ ପ୍ରକାର ଶିକ୍ଷା ବ୍ୟବସ୍ଥା ପାଇଁ ସେ ଦାବୀ

ଜଣାଇ ଆସିଛନ୍ତି । ରାଜ୍ୟସଭାରେ ନିଜର ଏକ ଭାଷଣ ପ୍ରସଙ୍ଗରେ ସେ କହିଥିଲେ : ''ଗୋଟିଏ ମୂଳ ପ୍ରଶ୍ନ ହେଉଛି, ଏ ଦେଶର ପ୍ରତ୍ୟେକ ନାଗରିକ ନିମନ୍ତେ କ'ଣ ଏକ ସମାନ ଶିକ୍ଷା ବ୍ୟବସ୍ଥା କରାଯାଇପାରିବ ନାହିଁ ? ଶିକ୍ଷା କ୍ଷେତ୍ରରେ ଏବେ ଯେଉଁ ପ୍ରକାର ବୈଷମ୍ୟ ରହିଛି, ତାହା କ'ଣ ସବୁଦିନ ପାଇଁ ଚାଲୁ ରହିଥିବ ? ଯାହାକୁ ପବ୍ଲିକ ସ୍କୁଲ ବୋଲି କୁହାଯାଉଛି, ତାହା ପ୍ରକୃତରେ ସମ୍ପୂର୍ଣ୍ଣ ପ୍ରାଇଭେଟ ସ୍କୁଲ ଏବଂ ଏହିସବୁ ସ୍କୁଲରେ କେବଳ ବଡ଼ ଲୋକ ବା ପଇସାବାଲାମାନଙ୍କର ପିଲାମାନେ ପାଠ ପଢ଼ିବାର ସୁଯୋଗ ପାଉଛନ୍ତି । ଅନ୍ୟ ପକ୍ଷରେ ସରକାରୀ ବା ପୌର ସଂସ୍ଥାର ବିଦ୍ୟାଳୟମାନଙ୍କରେ କେବଳ ଗରିବ ପିଲାମାନେ ପଢୁଛନ୍ତି । ଶିକ୍ଷା କ୍ଷେତ୍ରରେ ଏ ପ୍ରକାର ବୈଷମ୍ୟକୁ ପ୍ରଶ୍ରୟ ଦିଆଯାଉଛି କାହିଁକି ?''

ଶିକ୍ଷା କ୍ଷେତ୍ରରୁ ବୈଷମ୍ୟ ଦୂରୀକରଣ ସହିତ ଦେଶରେ ବଢ଼ି ଚାଲିଥିବା ଇଂଲିଶ୍-ମିଡ଼ିୟମ ସ୍କୁଲଗୁଡ଼ିକର ଉଚ୍ଛେଦ ସାଧନ ପାଇଁ ଏବଂ ମାତୃଭାଷାକୁ ହିଁ ସର୍ବତ୍ର ଶିକ୍ଷାର ମାଧ୍ୟମ କରାଯିବା ଲାଗି ଅଟଳଜୀ ବରାବର ପରାମର୍ଶ ଦେଇ ଆସିଛନ୍ତି । ରାଜ୍ୟସଭାରେ ନିଜର ଏକ ଭାଷଣ ପ୍ରସଙ୍ଗରେ ସେ କହିଥିଲେ : ''ଶିକ୍ଷାର ମାଧ୍ୟମ ମାତୃଭାଷାହିଁ ହେବା ଏକାନ୍ତ ଆବଶ୍ୟକ । କେବଳ ପ୍ରାଥମିକ ବା ମାଧ୍ୟମିକ ନୁହେଁ, ଉଚ୍ଚରୁ ଉଚ୍ଚତର ଶିକ୍ଷା ମଧ୍ୟ ମାତୃଭାଷା ମାଧ୍ୟମରେ ଦିଆଯିବା ଦରକାର ।''

॥ ନ୍ୟୁୟର୍କରେ ଚିକିତ୍ସା ॥

ଅଟଳଜୀ ନିଜର କେତେକ ଶାରୀରିକ ଅସୁସ୍ଥତାର ଉପଯୁକ୍ତ ଚିକିତ୍ସା ନିମନ୍ତେ ୧୯୮୮ ନଭେମ୍ବରରେ ନ୍ୟୁୟର୍କକୁ ଯାଇଥିଲେ । ସେହି ମାସ ୨୩ ତାରିଖ ଦିନ ସେଠାରୁ ସେ 'ଧର୍ମଯୁଗ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ଏକ ପତ୍ର ସହିତ ''ମୌତ୍ ସେ ଠନ୍ ଗୟି'' ଶୀର୍ଷକ ନିଜର ସଦ୍ୟରଚିତ ଏକ କବିତା ପଠାଇଥିଲେ । ଚିଠିରେ ସେ ଲେଖିଥିଲେ : ''ଆପଣ ସମ୍ଭବତଃ ଜାଣିଥିବେ ଯେ ମୁଁ ଏଠାକୁ ନିଜର ଚିକିତ୍ସା ଲାଗି ଆସିଛି । ସେଦିନ ଡାକ୍ତର ଯେତେବେଳେ ମୋତେ କହିଲେ ଯେ ଅପରେସନ୍ କରିବାକୁ ପଡ଼ିବ, ସେଦିନ ରାତିରେ ମୋତେ ଭଲ ନିଦ ହେଲା ନାହିଁ । ଗୋଟାଏ ଆଶଙ୍କା ମନକୁ କିଛିଟା ଅସ୍ଥିର କରି ଦେଇଥିଲା । ମୋ ମନର ସେହି ଭାବକୁ ମୁଁ ଶବ୍ଦବଦ୍ଧ କରି ପକାଇଛି । କବିତାର କଷୋଟିରେ ମୋର ଏ ପ୍ରୟାସ ଉତ୍ତୀର୍ଣ୍ଣ ହୋଇ ନ ପାରିଲେ ବି, ଏହା ମୋ ଜୀବନର ଏକ ଦସ୍ତାବିଜ୍ ।''

ଅଟଳଜୀଙ୍କ ଜୀବନର ସେହି ଦଲିଲଟିକୁ ତାଙ୍କର ନିଜର ହସ୍ତାକ୍ଷରରେ ହିଁ ଏଠାରେ ଉଦ୍ଧାର କରାଯାଉଛି, ଯାହା ସେତେବେଳେ ସାପ୍ତାହିକ 'ଧର୍ମଯୁଗ' ପତ୍ରିକାର ୧୯୮୮ ଡିସେମ୍ବର ୧୮-୨୪ ତାରିଖର ସଂଖ୍ୟାରେ ପ୍ରକାଶ ପାଇଥିଲା ।

## ।। ସଂରକ୍ଷଣ ନୀତିର ଭୟାବହତା ।।

୧୯୯୦ରେ ଭି.ପି. ସିଂହଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ଯେତେବେଳେ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ଘେନି ଦେଶର ଛାତ୍ରଛାତ୍ରୀଙ୍କ ମଧ୍ୟରେ ଘୋର ନୈରାଶ୍ୟ ଓ ଉତ୍ତେଜନା ସୃଷ୍ଟି ହେଲା ଏବଂ ସ୍ଥାନେ ସ୍ଥାନେ ସେମାନେ ଆତ୍ମାହୂତି ଦେବାକୁ ଆରମ୍ଭ କଲେ, ସେତେବେଳେ ସମଗ୍ର ଦେଶ ଅତ୍ୟନ୍ତ ଶୋକାକୁଳ ହୋଇ ଉଠିଲା । ଦେଶର ଭାବୀ ବଂଶଧର ଓ ପ୍ରତିଭାସମ୍ପନ୍ନ ଯୁବକ-ଯୁବତୀମାନେ ନିଜ ନିଜର ଅମୂଲ୍ୟ ଜୀବନକୁ ଲେଲିହାନ ବହ୍ନିଶିଖାରେ ବଳି ଦେବାର ଦେଖି ଦେଶର ସମ୍ବେଦନଶୀଳ ନାଗରିକମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଥିଲେ । ଜାତିଆଣ ମନୋଭାବକୁ କେନ୍ଦ୍ର କରି ଲୋକଙ୍କ ମଧ୍ୟରେ ବିଦ୍ୱେଷ ଓ ଉତ୍ତେଜନାର ବହ୍ନି ତେଜି ଉଠିଥିଲା । ଶାସକମାନଙ୍କର ଭୋଟବ୍ୟାଙ୍କ- ରାଜନୀତି ଓ ଭେଦଭାବପୂର୍ଣ୍ଣ ଆରକ୍ଷଣ ନୀତି କେତେକ ଜାତିର ଲୋକଙ୍କ ମଧ୍ୟରେ ଅତ୍ୟଧିକ ଉତ୍ସାହ ସୃଷ୍ଟି କରିଥିବା ବେଳେ ଅନ୍ୟମାନଙ୍କ ମଧ୍ୟରେ ଗଭୀର ନୈରାଶ୍ୟ ଭରି ଦେବା ଯୋଗୁଁ ସଂଘର୍ଷ ଓ ଉତ୍ତେଜନାର ବାତାବରଣ ଦେଖା ଦେଇଥିଲା । ଆତ୍ମଦାହର ଘଟଣାମାନ ପ୍ରାୟ ପ୍ରତିଦିନ ଘଟିବାରେ ଲାଗିଥିଲା । କିନ୍ତୁ ଶାସକମାନେ ଥିଲେ ତାର ନୀରବଦ୍ରଷ୍ଟା । କାରଣ ସେହିମାନେ ଥିଲେ ଏହି ଅବାଞ୍ଛିତ ପରିସ୍ଥିତିର ସ୍ରଷ୍ଟା ।

ଏହି ପରିସ୍ଥିତି ସମ୍ପର୍କରେ ଅଟଳଜୀ ତାଙ୍କର ଏକ ଭାଷଣ ପ୍ରସଙ୍ଗରେ କହିଥିଲେ: "ପରିସ୍ଥିତି ଅତ୍ୟନ୍ତ ଭୟାବହ ଓ ବିସ୍ଫୋରଣମୂଳକ । ଦେଶ ସମକ୍ଷରେ ଏ ପ୍ରକାର ଗୁରୁତର ଅବସ୍ଥା ଏହା ପୂର୍ବରୁ କେବେ ଉପୁନ୍ନ ହୋଇ ନ ଥିଲା ବୋଲି କହିଲେ ତାହା ଅତିଶୟୋକ୍ତି ହେବନାହିଁ । ଆମର ନିରୀହ ଓ ପ୍ରତିଭାବାନ୍ କିଶୋର-କିଶୋରୀ ଓ ତରୁଣ-ତରୁଣୀମାନେ ନୈରାଶ୍ୟ-ଜର୍ଜରିତ ହୋଇ ଆତ୍ମଦାହ କରିବାରେ ଲାଗିଛନ୍ତି । ଏହାଠାରୁ ବଳି ଦୁଃଖଦାୟକ ଅବସ୍ଥା ଆଉ କ'ଣ ହୋଇପାରେ ? ଆତ୍ମଦାହ ଘଟଣା ସହିତ ଦକ୍ଷିଣ ଭାରତ କିଛି ମାତ୍ରାରେ ପରିଚିତ । କିନ୍ତୁ ଉତ୍ତର ଭାରତରେ ଏହା ଏକ ନୂତନ ଘଟଣା । ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ, ସରକାରଙ୍କର ଆରକ୍ଷଣ-ନୀତି ସେମାନଙ୍କ ହୃଦୟକୁ ଘୋର ନୈରାଶ୍ୟରେ ଭରି ଦେଇଛି । ଆମେ କଦାପି ଏ ପ୍ରକାର ଘଟଣାର ନୀରବଦ୍ରଷ୍ଟା ହୋଇ ରହି ପାରିବା ନାହିଁ । ସେ ନୈରାଶ୍ୟକୁ ଦୂର କରିବା ପାଇଁ ଆମକୁ ତୁରନ୍ତ ଯତ୍ନବାନ୍ ହେବାକୁ ପଡ଼ିବ ।"

## ।। ୧୦ମ ଲୋକସଭା ନିର୍ବାଚନ ।।

୧୯୮୯ ଶେଷଭାଗରେ ଅନୁଷ୍ଠିତ ହୋଇଥିବା ନବମ ଲୋକସଭା ନିର୍ବାଚନରେ କୌଣସି ଦଳ ସ୍ପଷ୍ଟ ବହୁମତ ବା ସଂଖ୍ୟାଗରିଷ୍ଠତା ଲାଭ କରି ନ ପାରିବା ଏବଂ କଂଗ୍ରେସ ତଥା ଭାରତୀୟ ଜନତା ପାର୍ଟି ସରକାର ଗଢ଼ିବାକୁ ରାଜି ନ ହେବା କାରଣରୁ ଜନତା ଦଳ ପକ୍ଷରୁ ଶ୍ରୀ ଭି.ପି. ସିଂହଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏକ ମନ୍ତ୍ରିମଣ୍ଡଳ କେନ୍ଦ୍ରରେ ଗଠିତ ହୋଇଥିଲା । କିନ୍ତୁ ବର୍ଷଟିଏ ନ ପୂରୁଣୁ ଆଭ୍ୟନ୍ତରୀଣ କନ୍ଦଳରୁ ଏ ସରକାରର ପତନ ଘଟିଥିଲା ଏବଂ କଂଗ୍ରେସ ଦଳର ସମର୍ଥନରେ ଶ୍ରୀ ଚନ୍ଦ୍ରଶେଖରଙ୍କ ପ୍ରଧାନମନ୍ତ୍ରିତ୍ୱରେ

ପରବର୍ତ୍ତୀ ମନ୍ତ୍ରିମଣ୍ଡଳ ଗଢ଼ା ଯାଇଥିଲା । କିନ୍ତୁ ୫ ମାସ ନ ପୂରୁଣୁ କଂଗ୍ରେସର ସମର୍ଥନ ପ୍ରତ୍ୟାହାର ଫଳରେ ଏ ସରକାରର ମଧ୍ୟ ପତନ ଘଟିଲା । ତେଣୁ ଏହା ପରେ ୧୯୯୧ରେ ଅନୁଷ୍ଠିତ ହେଲା ଦେଶର ଦଶମ ଲୋକସଭା ନିର୍ବାଚନ । ଏହି ନିର୍ବାଚନ ପାଇଁ ପ୍ରଚାର ଅଭିଯାନ ଚାଲିଥିବା ବେଳେ-ହିଁ ତାମିଲନାଡୁର ପେରୁମ୍ବୁଦୁରଠାରେ ରାଜୀବ ଗାନ୍ଧୀଙ୍କର ନିର୍ମମ ହତ୍ୟାକାଣ୍ଡ ସଂଘଟିତ ହୋଇଥିଲା । ସମଗ୍ର ଦେଶ ଏଥିଯୋଗୁଁ ଶୋକାଭିଭୂତ ହୋଇ ପଡ଼ିଥିଲା । ନିର୍ବାଚନର ନିର୍ଦ୍ଧାରିତ କାର୍ଯ୍ୟସୂଚୀ ମଧ୍ୟ ଏହା ଫଳରେ କିଛି ଦିନ ପାଇଁ ସ୍ଥଗିତ ରଖିବାକୁ ପଡ଼ିଥିଲା । ସେ ଯାହାହେଉ, ଏହି ନିର୍ବାଚନରେ ମଧ୍ୟ କୌଣସି ଦଳ ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ହାସଲ କରିପାରି ନ ଥିଲା । ତଥାପି କଂଗ୍ରେସ ଦଳ ନିଜର ଏକକ ସଂଖ୍ୟାଗରିଷ୍ଠତା ବଳରେ ଶ୍ରୀ ପି.ଭି. ନରସିଂହ ରାଓଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏକ ସଂଖ୍ୟାଲଘୁ ସରକାର ଗଠନ କଲା ।

**।। ରାଜୀବ ଗାନ୍ଧୀଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ।।**

୧୯୯୧ ମେ ମାସରେ ରାଜୀବ ଗାନ୍ଧୀ ଯେଉଁ ପରିସ୍ଥିତିରେ ଏକ ପୂର୍ବ-ପରିକଳ୍ପିତ ଷଡ଼ଯନ୍ତ୍ରଜନିତ ହତ୍ୟାକାଣ୍ଡର ଶୀକାର ହେଲେ, ତାହା ଅଟଳଜୀଙ୍କୁ ଅତ୍ୟନ୍ତ ମର୍ମାହତ କରିଥିଲା । ସେତେବେଳେ ସେ ଯେଉଁ ଶୋକବାର୍ତ୍ତା ଦେଇଥିଲେ, ସେଥିରୁ ତାହା ସୁସ୍ପଷ୍ଟ ଥିଲା । ନିର୍ବାଚନ ପରେ ୧୦ମ ଲୋକସଭାରେ ତାଙ୍କ ପାଇଁ ଯେଉଁ ଶୋକ ପ୍ରକାଶ କରାଯାଇଥିଲା, ସେଥିରେ ଅଂଶ ଗ୍ରହଣ କରି ଅଟଳଜୀ ନିମ୍ନୋକ୍ତ ଭାଷାରେ ରାଜୀବଙ୍କ ସ୍ମୃତି ପ୍ରତି ନିଜର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ :

"ମୃତ୍ୟୁ ହେଉଛି ଶରୀରର ଧର୍ମ ଓ ସ୍ୱାଭାବିକ ପରିଣତି । ଜନ୍ମ ସହିତ ମୃତ୍ୟୁ ମଧ୍ୟ ସଂଯୁକ୍ତ ହୋଇ ରହି ଆସିଛି । କିନ୍ତୁ ମୃତ୍ୟୁ ଯେତେବେଳେ ସହଜ ବା ସ୍ୱାଭାବିକ ଭାବରେ ଘଟି ନ ଥାଏ, ମୃତ୍ୟୁ ଯେତେବେଳେ ବିନା ମେଘରେ ବଜ୍ରପାତ ଭଳି ଆସିଥାଏ, ପୂର୍ଣ୍ଣ ଯୌବନ କାଳରେ କୌଣସି ଜୀବନ-ପୁଷ୍ପକୁ ମୃତ୍ୟୁ ଯେତେବେଳେ ଚିତାର ଅଗ୍ନିରେ ପୋଡ଼ି ପାଉଁଶ କରିଦିଏ, ମୃତ୍ୟୁ ଯେତେବେଳେ ହୋଇଥାଏ ଏକ ଷଡ଼ଯନ୍ତ୍ରର ପରିଣତି.... ସେତେବେଳେ ମଣିଷ ବୁଝି ପାରେ ନାହିଁ କିପରି ଭାବରେ ସେ ଧୈର୍ଯ୍ୟ ଧରି ପାରିବ, ତାର ପରିବାରର ଲୋକେ କିପରି ବା ଏ ବଜ୍ରପାତକୁ ସହ୍ୟ କରି ପାରିବେ ! ଶ୍ରୀ ରାଜୀବ ଗାନ୍ଧୀଙ୍କ ଜଘନ୍ୟ ହତ୍ୟା, ଆମର ରାଷ୍ଟ୍ରୀୟ ମର୍ମ ପ୍ରତି ଏକ ଦାରୁଣ ଆଘାତ, ଭାରତୀୟ ଲୋକତନ୍ତ୍ର ପାଇଁ ଆଉ ଏକ କଳଙ୍କ । ପୁଣି ଥରେ ଆମର ମହାନ୍ ସଭ୍ୟତା ଆଉ ପ୍ରାଚୀନ ସଂସ୍କୃତି ବିଶ୍ୱରେ ଉପହାସର ବିଷୟ ହୋଇ ପଡ଼ିଛି । ବୋଧହୁଏ ଦୁନିଆରେ ଅନ୍ୟ କୌଣସି ଦେଶ ନ ଥିବ, ଯିଏ କି ଅହିଂସାକୁ ନେଇ ଏତେ ବଡ଼ ବଡ଼ କଥା କହୁଥିବ ଅଥଚ ତାର ନିଜର ରାଜନେତାମାନେ ଏ ପ୍ରକାର ହିଂସାର ଶରବ୍ୟ ହେଉଥିବେ ! ଏ ପ୍ରକାର ହିଂସା ଓ ହତ୍ୟାର ବର୍ବରଲୀଳା ବନ୍ଦ ହେବା ଦରକାର ।

ସଭାପତି ମହୋଦୟ, ରାଜୀବ ଗାନ୍ଧୀଙ୍କର ଅକାଳ ମୃତ୍ୟୁ ପାଇଁ ହୃଦୟର ଶୋକାନୁଭୂତି ପ୍ରକାଶ କରିବା ଏବଂ ଏଇ ଜଘନ୍ୟ ହତ୍ୟାକାଣ୍ଡର ନିନ୍ଦା କରିବା ପାଇଁ ମୋର ଆଉ ଭାଷା ନାହିଁ। ମୁଁ ମୋ ନିଜ ପକ୍ଷରୁ, ଆମ ଦଳ ପକ୍ଷରୁ ରାଜୀବଙ୍କ ସ୍ମୃତି ପ୍ରତି ବିନମ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ଏବଂ ପରମାତ୍ମାଙ୍କୁ ପ୍ରାର୍ଥନା କରୁଛି- ଦିବଂଗତ ନେତାଙ୍କର ଆତ୍ମାକୁ ସେ ସଦ୍‌ଗତି ଦିଅନ୍ତୁ ଏବଂ ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗ ତଥା ଦେଶବାସୀଙ୍କୁ ଏହି ବଜ୍ରପାତକୁ ସହନ କରିବାର ଶକ୍ତି ଦିଅନ୍ତୁ।''

**।। ଦୁଇଟି ଆସନରୁ ପ୍ରାର୍ଥିତ୍ୱ ।।**

ଦଶମ ଲୋକସଭା ନିର୍ବାଚନରେ ଅଟଳଜୀ ଉତ୍ତରପ୍ରଦେଶର ଲକ୍ଷ୍ନୌ ତଥା ମଧ୍ୟପ୍ରଦେଶର ବିଦିଶାରୁ ପ୍ରାର୍ଥୀ ହୋଇ ଉଭୟ ଆସନରୁ ନିର୍ବାଚିତ ହୋଇଥିଲେ ଏବଂ ପରେ ବିଦିଶା ଆସନଟି ଛାଡ଼ି ଦେଇଥିଲେ। ଏ ସଂକ୍ରାନ୍ତରେ ତାଙ୍କର ବକ୍ତବ୍ୟ ଏହି ପ୍ରକାର ଥିଲା :

''୧୯୯୧ରେ ମୁଁ କାହିଁକି ଲୋକସଭା ନିର୍ବାଚନ ଲଢ଼ିଲି ଏବଂ ଦୁଇଟି ଆସନରୁ କାହିଁକି ଛିଡ଼ା ହେଲି, ତାର ଏକ ପୃଷ୍ଠଭୂମି ରହିଛି। ସେତେବେଳେ ମୁଁ ରାଜ୍ୟସଭାର ସଦସ୍ୟ ଥିଲି। ତେଣୁ ପ୍ରଥମେ ମୁଁ ଘୋଷଣା କରିଥିଲି ଯେ ଲୋକସଭା ନିର୍ବାଚନରେ ଲଢ଼ିବି ନାହିଁ। କିନ୍ତୁ ମୋତେ ନିର୍ବାଚନରେ ପ୍ରାର୍ଥୀ କରାଇବା ପାଇଁ ଦଳ ସିଦ୍ଧାନ୍ତ କଲା। ଭା.ଜ.ପା. ଉତ୍ତର ପ୍ରଦେଶରେ ସରକାର ଗଢ଼ିବା ପାଇଁ ଇଚ୍ଛୁକ ଥିଲା। ନିର୍ବାଚନ ଅଭିଯାନକୁ ତୀବ୍ର ଗତି ଦେବା ଲାଗି ଏପରି ଜଣେ ନେତାଙ୍କୁ ସେ ରାଜ୍ୟରୁ ପ୍ରାର୍ଥୀ କରାଯିବା ଆବଶ୍ୟକ ଥିଲା, ଯିଏକି ଅଧିକ ଜନ-ସମର୍ଥନ ମିଳିବାରେ ଯଥେଷ୍ଟ ସହାୟକ ହୋଇ ପାରିବେ। ଡଃ ମୁରଲୀ ମନୋହର ଯୋଶୀ ସେତେବେଳେ ପାର୍ଟିର ରାଷ୍ଟ୍ରୀୟ ଅଧ୍ୟକ୍ଷ ଥିବା କାରଣରୁ ନିର୍ବାଚନ ନ ଲଢ଼ିବା ପାଇଁ ସ୍ଥିର କରି ସାରିଥିଲେ। ରାଜମାତା ବିଜୟା ରାଜେ ସିନ୍ଧିଆ ଅଥବା ଶ୍ରୀ ଲାଲକୃଷ୍ଣ ଆଡ଼ଭାନୀଙ୍କୁ ନିଜର ଜିତିଥିବା ଆସନରୁ ହଟାଇବାର ପ୍ରଶ୍ନ ହିଁ ନ ଥିଲା। ତେଣୁ ପାର୍ଟିର ନଜର ମୋ ଉପରେ ହିଁ ପଡ଼ିଲା। ଜ୍ୟୋତିଷୀମାନେ ବି ଏଥିରେ ନିଜର ଯୋଗଦାନ ଦେଇଥିଲେ। ମୋର ଜନ୍ମପତ୍ରୀ (ଜାତକ) ଦେଖିବା ପରେ ଜ୍ୟୋତିଷୀମାନେ କହିଥିଲେ ଯେ, ମୋର ଗ୍ରହ ସ୍ଥିତି ଉଚ୍ଚରେ ରହିଛି ଏବଂ ମୋତେ ପ୍ରାର୍ଥୀ କରାଇବା ଲାଭଦାୟକ ହେବ। ତା'ଛଡ଼ା ଲକ୍ଷ୍ନୌରୁ ନିର୍ବାଚନ ଲଢ଼ିବା ପାଇଁ ଦଳର ଜଣେ ଟାଣୁଆ ପ୍ରାର୍ଥୀର ଆବଶ୍ୟକତା ବି ରହିଥିଲା। ଲକ୍ଷ୍ନୌ ସହିତ ମୋର ପୁରୁଣା ସମ୍ବନ୍ଧ ରହିଛି। ଇତିପୂର୍ବରୁ ମୁଁ ତିନିଥର ସେଠାରୁ ନିର୍ବାଚନ ଲଢ଼ି ସାରିଥିଲି। ସେଥିପାଇଁ ମୋତେ ସେଠାରୁ ଠିଆ କରାଇବାର ସିଦ୍ଧାନ୍ତ କରାଯାଇଥିଲା।

କିନ୍ତୁ ପରେ ଯେତେବେଳେ ସ୍ଥିର କରାଗଲା ଯେ, ଶ୍ରୀ ଆଡ଼ଭାନୀ ନୂଆଦିଲ୍ଲୀ ଆସନ ସହିତ ଗୁଜରାଟ୍‌ର ଗାନ୍ଧିନଗର ଆସନରୁ ମଧ୍ୟ ନିର୍ବାଚନ ଲଢ଼ିବେ, ସେତେବେଳେ

ମୋତେ ବି ସେହିଭଳି ଦୁଇଟି ଆସନରୁ ଲଢ଼ିବା ପାଇଁ କୁହାଗଲା ଏବଂ ମୋର ଅନ୍ୟତମ ଆସନ ରୂପେ ବିଦିଶାକୁ ବଛାଗଲା ।''

## ।। ୯୧- ନିର୍ବାଚନର ଫଳଶ୍ରୁତି ।।

୧୯୯୧ର ସେହି ଦଶମ ଲୋକସଭା ନିର୍ବାଚନ ସମୟର ପରିସ୍ଥିତି ଓ ତାର ଫଳଶ୍ରୁତି ସଂପର୍କରେ ଅଟଳଜୀ ଆହୁରି କହିଥିଲେ

''ଲକ୍ଷ୍ନୌରୁ ସେଥର ପାର୍ଟିର ଜିତାପଟ ଏକ ପ୍ରକାର ସୁନିଶ୍ଚିତ ଥିଲା । ସାରା ଉତ୍ତରପ୍ରଦେଶ ରାମ-ଲହରରେ ଆପ୍ଲାବିତ ଥିଲା । ପ୍ରତିପକ୍ଷ କେବଳ ବିଭାଜିତ ନୁହେଁ, ବଦ୍‌ନାମ ମଧ୍ୟ ହୋଇ ସାରିଥିଲେ । ଅଯୋଧ୍ୟାରେ କାରସେବକମାନଙ୍କ ଉପରେ ହୋଇଥିବା ଅତିରିକ୍ତ ବଳପ୍ରୟୋଗ ଲୋକଙ୍କୁ ବିକ୍ଷୁବ୍ଧ କରି ଦେଇଥିଲା । ଭାରତୀୟ ଜନତା ପାର୍ଟିକୁ ହରାଇବା ନିମନ୍ତେ ପ୍ରତିପକ୍ଷମାନେ ଯେଉଁସବୁ ରାଲି ବା ସମାବେଶ ଆୟୋଜନ କରିଥିଲେ, ସେଥିରେ ସଂଖ୍ୟାଲଘୁ ସଂପ୍ରଦାୟର ଲୋକମାନଙ୍କୁ ବହୁ ସଂଖ୍ୟାରେ ସାମିଲ କରାଇବା ଏବଂ ସେମାନଙ୍କୁ ଉତ୍ତେଜିତ କରାଇବା ଭଳି ଭାଷଣମାନ ଦିଆଯିବା ଫଳରେ ତାହା ଭା.ଜ.ପା. ପାଇଁ ଅଧିକ ସହାୟକ ହୋଇଥିଲା । ଯଦି ଅଯୋଧ୍ୟାରେ କାରସେବକମାନଙ୍କ ଉପରେ ଗୁଳିଚାଳନା କରାଯାଇ ନ ଥାନ୍ତା ଏବଂ ସଂଖ୍ୟାଗୁରୁ ଲୋକଙ୍କ ଭାବାବେଗକୁ ଆଘାତ ଦେଲାଭଳି ଭାଷଣ ପ୍ରତିପକ୍ଷର ନେତାମାନେ ଦେଇ ନ ଥାନ୍ତେ, ତେବେ ଭାରତୀୟ ଜନତା ପାର୍ଟିକୁ ନିର୍ବାଚନରେ ଏତେ ସଫଳତା ହୁଏତ ମିଳି ପାରି ନ ଥାନ୍ତା । ତା'ଛଡ଼ା ଭାଜପା-ବିରୋଧୀ ଭୋଟଗୁଡ଼ିକର ବିଭାଜନ ମଧ୍ୟ ଏହି ସଫଳତାରେ ସହାୟକ ହୋଇଥିଲା ।

ଦଶମ ସାଧାରଣ ନିର୍ବାଚନ ପରେ ଲୋକସଭାରେ ଯେଉଁ ପ୍ରକାର ଦଳୀୟ ସ୍ଥିତି ହୋଇଥିଲା, ସେଥିରେ ଭାରତୀୟ ଜନତା ପାର୍ଟି ୧୧୯ଟି ସ୍ଥାନ ଲାଭ କରି ମୁଖ୍ୟ ବିରୋଧୀ ଦଳ ରୂପେ ପ୍ରତିଷ୍ଠିତ ହେଲା । ୨୨୭ଟି ସ୍ଥାନ ଲାଭ କରି କଂଗ୍ରେସ ଦଳ ଲୋକସଭାର ସବୁଠାରୁ ବଡ଼ ଦଳ ରୂପେ ଉଭା ହୋଇଥିଲା । ରାଷ୍ଟ୍ରପତି ଶ୍ରୀ ଭେଙ୍କଟରମଣ ଯେତେବେଳେ କଂଗ୍ରେସ ସଂସଦୀୟ ଦଳର ନେତା ଶ୍ରୀ ପି.ଭି. ନରସିଂହ ରାଓଙ୍କୁ ସରକାର ଗଢ଼ିବା ପାଇଁ ନିମନ୍ତ୍ରଣ କଲେ, ସେତେବେଳେ ସେ ଦଳର ବହୁମତ ନ ଥିଲା । ତେଣୁ ଏ ପ୍ରକାର ସ୍ଥିତିରେ କଂଗ୍ରେସକୁ ସରକାର ଗଢ଼ିବା ପାଇଁ କହିବା ପୂର୍ବରୁ ଭାଜପା ସହିତ ମଧ୍ୟ ବିଚାର-ବିନିମୟ କରାଯିବା ଉଚିତ ଥିଲା । କିନ୍ତୁ ରାଷ୍ଟ୍ରପତି ସମ୍ଭବତଃ ଗତ ଦେଢ଼ବର୍ଷର ରାଜନୀତିକ ଅସ୍ଥିରତା ଯୋଗୁ ଏତେ ବିରକ୍ତ ହୋଇ ପଡ଼ିଥିଲେ ଯେ ଅନ୍ୟ କୌଣସି ଦଳ ସହିତ ସେ ନେଇ ପରାମର୍ଶ କରିବାର ଆବଶ୍ୟକତା ଦେଖି ନ ଥିଲେ ।''

ବାସ୍ତବିକ ୧୯୯୦-୯୧ର କାଳଖଣ୍ଡ (ଭି.ପି. ସିଂହ ଓ ଚନ୍ଦ୍ରଶେଖରଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟ)କୁ ଜାତୀୟ ରାଜନୀତିର ଇତିହାସରେ ରାଜନୀତିକ ଅସ୍ଥିରତାର କାଳଖଣ୍ଡ ରୂପରେ ସ୍ମରଣ କରାଯିବ। (ସେହିପରି ୧୯୯୬-୯୭ର କାଳଖଣ୍ଡ ମଧ୍ୟ ରାଜନୀତିକ ଅସ୍ଥିରତାର ଆଉ ଏକ କାଳଖଣ୍ଡ ରୂପେ ଚିହ୍ନିତ ହୋଇ ରହିବ। ତେବେ ସେ ସଂକ୍ରାନ୍ତ ଆଲୋଚନା ଯଥାସମୟରେ କରାଯିବ)।

**।। ଆଡ଼ଭାନୀଙ୍କ ରଥଯାତ୍ରା ।।**

୧୯୯୦ରେ ଅଯୋଧ୍ୟା ପ୍ରଶ୍ନ ଘେନି ଭାଜପା ସଭାପତି ଶ୍ରୀ ଲାଲକୃଷ୍ଣ ଆଡ଼ଭାନୀ ଯେଉଁ ଐତିହାସିକ ରଥଯାତ୍ରା କରିଥିଲେ, ସେ ସଂକ୍ରାନ୍ତରେ ଅଟଳଜୀଙ୍କ ବକ୍ତବ୍ୟ ଥିଲା : ''ଶ୍ରୀ ଆଡ଼ଭାନୀଙ୍କ ରଥଯାତ୍ରା ସଂଯୁକ୍ତ ମୋର୍ଚ୍ଚା ସରକାରର ପତନ ଘଟାଇବା ପାଇଁ ଉଦ୍ଦିଷ୍ଟ ନ ଥିଲା। ଏହାର ଉଦ୍ଦେଶ୍ୟ ଥିଲା ଅଯୋଧ୍ୟାରେ ଶ୍ରୀରାମ ମନ୍ଦିରର ପୁନଃନିର୍ମାଣ ସପକ୍ଷରେ ବ୍ୟାପକ ରାଷ୍ଟ୍ରୀୟ ଜନ-ସମର୍ଥନ ସଂଗ୍ରହ କରିବା। ଏହି ଉଦ୍ଦେଶ୍ୟ ସାଧନରେ ତାଙ୍କୁ ଯଥେଷ୍ଟ ସଫଳତା ମଧ୍ୟ ମିଳିଥିଲା। ତାଙ୍କର ରଥ ଯେତିକି ଯେତିକି ଆଗକୁ ବଢୁଥିଲା, ସେତିକି ସ୍ପଷ୍ଟ ହୋଇ ଉଠୁଥିଲା ଯେ ଅଯୋଧ୍ୟାରେ ଶ୍ରୀରାମ ମନ୍ଦିର ନିର୍ମାଣ ପ୍ରଶ୍ନ ଦେଶର ସଂଖ୍ୟାଧିକ ଲୋକଙ୍କ ଅନ୍ତର୍ମନକୁ ଅତି ଗଭୀର ଭାବରେ ସ୍ପର୍ଶ କରିଛି। କିନ୍ତୁ ସେ କଥା ବୁଝିବାକୁ ଭି.ପି. ସିଂହଙ୍କ ତାତ୍କାଳୀନ ସରକାର ତଥା ତାଙ୍କର ବନ୍ଧୁମାନେ ସମର୍ଥ ନ ଥିଲେ କି ପ୍ରସ୍ତୁତ ନ ଥିଲେ। ଶେଷରେ ସେମାନଙ୍କର ଅନ୍ତର୍ନିହିତ ଦୁର୍ବଳତା, ଅକ୍ଷମତା ଓ ଅଦୂରଦର୍ଶିତା ଯୋଗୁଁ ୧୯୯୦ ନଭେମ୍ବର ୭ ତାରିଖରେ ଭି.ପି.ଙ୍କ ସଂଯୁକ୍ତ ମୋର୍ଚ୍ଚା ସରକାର ମାତ୍ର ୧୧ ମାସରେ ଭୁଷୁଡ଼ି ପଡ଼ିଲା। ''

**।। ଜାତୀୟ ସରକାର ଗଠନ ପ୍ରଶ୍ନ ।।**

ଏହା ଏକ ସର୍ବବିଦିତ ସତ୍ୟ ଯେ, ୧୯୯୦ ନଭେମ୍ବର ପ୍ରଥମ ସପ୍ତାହରେ ଯେତେବେଳେ ଭି.ପି. ସିଂହଙ୍କ ସରକାରର ପତନ ଆସନ୍ନ ଥିଲା ଏବଂ କ୍ଷମତାସୀନ ଜନତା ଦଳର ଗୋଟିଏ ଗୋଷ୍ଠୀ ଚନ୍ଦ୍ରଶେଖରଙ୍କ ନେତୃତ୍ୱରେ କଂଗ୍ରେସ ଦଳର ସମର୍ଥନ କ୍ରମେ ଏକ ବିକଳ୍ପ ସରକାର ଗଠନ ପାଇଁ ସଚେଷ୍ଟ ରହିଥିଲେ, ସେତିକିବେଳେ ରାଷ୍ଟ୍ରପତି ଶ୍ରୀ ଆର୍. ଭେଙ୍କଟରମଣ କେନ୍ଦ୍ରରେ ଏକ ଜାତୀୟ ବା ରାଷ୍ଟ୍ରୀୟ ସରକାର ଗଠନର ସମ୍ଭାବ୍ୟତା ବା ଆବଶ୍ୟକତା ସଂପର୍କରେ ଚିନ୍ତା କରିଥିଲେ ଏବଂ ଏ ନେଇ ବିଭିନ୍ନ ଦଳର ନେତାମାନଙ୍କ ସହିତ କେତେକ ଅନୌପଚାରିକ କଥାବାର୍ତ୍ତା ବି କରିଥିଲେ।

ଅଟଳଜୀ ଏ ସଂକ୍ରାନ୍ତରେ କହନ୍ତି : ''ରାଜନୀତିକ ଦଳଗୁଡ଼ିକର ନେତାମାନଙ୍କ ମତିଗତି ଓ କାର୍ଯ୍ୟକଳାପ ଦୃଷ୍ଟିରୁ ଦେଶର ଭବିଷ୍ୟତ ଘେନି ସେତେବେଳେ ରାଷ୍ଟ୍ରପତି ଗଭୀର ଭାବରେ ଚିନ୍ତିତ ଥିଲେ। କେନ୍ଦ୍ରରେ ରାଜନୀତିକ ସ୍ଥାୟିତ୍ୱର ଅଭାବ ଯୋଗୁଁ

ଦେଶରେ ଯେଉଁ ସଂକଟର ଉଦ୍‌ଭବ ହୋଇଥିଲା, ସେଥିରୁ କିପରି ଉଦ୍ଧାର ପାଇ ହେବ, ରାଷ୍ଟ୍ରୀୟ ସହମତିର ଅଭାବରୁ ଦେଶ ଆଗରେ ଦେଖା ଦେଉଥିବା ଚ୍ୟାଲେଞ୍ଜଗୁଡ଼ିକୁ କିପରି ମୁକାବିଲା କରାଯାଇ ପାରିବ, ସେ ନେଇ ସେ ଚିନ୍ତାକୁଳ ଥିଲେ । ସେହି ଦୃଷ୍ଟିରୁ ହିଁ ଏକ ରାଷ୍ଟ୍ରୀୟ ସରକାର ଗଠନର ଚିନ୍ତାଧାରା ତାଙ୍କ ମନକୁ ଆସିଥିଲା । ମୁଁ ମଧ୍ୟ ସାର୍ବଜନିକ ରୂପେ ଏହି ଚିନ୍ତାଧାରା ଓ ପରାମର୍ଶକୁ ସ୍ୱାଗତ କରିଥିଲି । ପରେ ଭାରତୀୟ ଜନତା ପାର୍ଟି ମଧ୍ୟ ଏଥିରେ ନିଜର ସହମତି ପ୍ରକାଶ କରିଥିଲା । କିନ୍ତୁ ଏ ନେଇ କଥାବାର୍ତ୍ତା ଆଉ ଆଗକୁ ବଢ଼ି ପାରି ନ ଥିଲା; କାରଣ ଅନ୍ୟ ଦଳମାନେ ସେଥିପାଇଁ ପ୍ରସ୍ତୁତ ନ ଥିଲେ । ସେମାନଙ୍କ ମନରେ ସେ ପ୍ରକାର ସଦ୍‌ଭାବନା କାର୍ଯ୍ୟ କରୁ ନ ଥିଲା । ସେମାନେ ଭାଜପା ସହିତ ଏକତ୍ର ବସିବାକୁ ରାଜି ନ ଥିଲେ । ପୋଲାଣ୍ଡରେ 'ସଲିଡାରିଟୀ' ନାମକ ଏକ ସଂଗଠନ (ଯାହାକୁ କି ଗୋଟିଏ ଦୃଷ୍ଟିରୁ ରୋମାନ୍ କ୍ୟାଥଲିକ୍ ଚର୍ଚ୍ଚର ଏକ ସଂପ୍ରସାରଣ ରୂପେ ଗ୍ରହଣ କରାଯାଇଥାଏ), ଯଦି କମ୍ୟୁନିଷ୍ଟମାନଙ୍କ ସହିତ ମିଶି ସରକାର ଗଠନ କରିପାରେ, ତେବେ ଭାରତରେ ଭାଜପା, କଂଗ୍ରେସ, ଜନତାଦଳ ଓ କମ୍ୟୁନିଷ୍ଟ ଦଳମାନେ ଏକ ସର୍ବନିମ୍ନ କାର୍ଯ୍ୟକ୍ରମ ଭିତ୍ତିରେ ଏକତ୍ର ହୋଇ କାହିଁକି ଏକ ସରକାର ଗଢ଼ି ନ ପାରିବେ ବୋଲି ଶ୍ରୀ ମଧୁ ଲିମାୟେ ଯେଉଁ ଯୁକ୍ତି ବାଢ଼ିଥିଲେ, ତାହା ମଧ୍ୟ କାମ ଦେଲା ନାହିଁ । ଏ କ୍ଷେତ୍ରରେ ଅନ୍ୟାନ୍ୟ ବାଧା ମଧ୍ୟ ଥିଲା । ଜନତା ଦଳର କଂଗ୍ରେସ ବିରୋଧୀ ମନୋଭାବ ମଧ୍ୟ ଅତି ତୀବ୍ର ହୋଇଯାଇଥିଲା । X X X X X

ତା'ଛଡ଼ା ଆଉ ଏକ ବିଷୟ, ଯାହାକି ସେତେବେଳେ ଚାପା ସ୍ୱରରେ ଆଲୋଚିତ ହୋଇଥିଲା ଓ ଯାହାକୁ ନେଇ ଏବେ ବି କେତେକ ମହଲରେ ଭୁଲ ଧାରଣା ରହିଛି, ତାହା ହେଉଛି- ରାଷ୍ଟ୍ରପତି ଶ୍ରୀ ଭେଙ୍କଟରମଣ କୁଆଡ଼େ ନିଜେ ପ୍ରଧାନମନ୍ତ୍ରୀ ହେବା ଉଦ୍ଦେଶ୍ୟରେ ହିଁ ଏକ ରାଷ୍ଟ୍ରୀୟ ସରକାର ଗଠନର ପ୍ରସଙ୍ଗ ଉଠାଇଥିଲେ । କିନ୍ତୁ ଏହା ଠିକ୍ ନୁହେଁ । ଭାରତୀୟ ଜନତା ପାର୍ଟିର ସଂସଦୀୟ ଦଳ ନେତା ରୂପେ ସେତେବେଳେ ମୁଁ ସେ ସଂକ୍ରାନ୍ତ ସମସ୍ତ କଥାବାର୍ତ୍ତାରେ ସାମିଲ ଥିଲି । ଶ୍ରୀ ଭେଙ୍କଟରମଣଙ୍କ ସହିତ ହୋଇଥିବା କଥାବାର୍ତ୍ତାର ଭିତ୍ତି ଉପରେ ମୁଁ ଦୃଢ଼ତା ପୂର୍ବକ ଏ କଥା କହିପାରିବି ଯେ, ରାଷ୍ଟ୍ରୀୟ ସରକାର ଗଠନର ପ୍ରସ୍ତାବ ଦେଲା ବେଳେ ତାଙ୍କ ମନକୁ ନିଜେ ପ୍ରଧାନମନ୍ତ୍ରୀ ହେବାର ଚିନ୍ତା ଆଦୌ ସ୍ପର୍ଶ କରି ନ ଥିଲା । ତେଣୁ ତାଙ୍କ ସଂପର୍କରେ ସେ ପ୍ରକାର ଆରୋପ ବାସ୍ତବିକ ଆମର ପୂର୍ବତନ ରାଷ୍ଟ୍ରପତିଙ୍କ ପ୍ରତି ଏକ ଅନ୍ୟାୟ । X X X X X ଶ୍ରୀ ଭେଙ୍କଟରମଣ ଯଦି ଚାହିଁଥାନ୍ତେ, ତେବେ ଆଉ ଏକ ମିଆଦ ନିମନ୍ତେ ଦେଶର ରାଷ୍ଟ୍ରପତି ରୂପେ ନିର୍ବାଚିତ ହୋଇ ପାରିଥାନ୍ତେ । କିନ୍ତୁ ସେ ସ୍ୱେଚ୍ଛାକ୍ରମେ ହସ ହସ ବଦନରେ ଯେପରି ଭାବେ ରାଷ୍ଟ୍ରପତି ଭବନରୁ ବିଦାୟ ନେଇଥିଲେ, ତାହା ଅନ୍ୟମାନଙ୍କ ପାଇଁ ଏକ ଉଦାହରଣ ।''

ତେବେ ସେ ଯାହା ହେଉ, ସେ ସମୟର ଅସ୍ଥିରତାସୂଚକ ରାଜନୀତିକ ପରିସ୍ଥିତି ଏବଂ ୧୯୯୬ର ଏକାଦଶ ଲୋକସଭା ନିର୍ବାଚନ ପରବର୍ତ୍ତୀ କାଳରେ ସୃଷ୍ଟି ହୋଇଥିବା ଅଧିକତର ଅସ୍ଥିରତାସୂଚକ ରାଜନୀତିକ ଅବସ୍ଥା ଏବଂ ସରକାର ଭଙ୍ଗା-ଗଢ଼ାର ଖାମଖିଆଲ ଖେଳ ଦୃଷ୍ଟିରୁ ବିଚାର କଲେ, ଆମର ଏହି ବିଶାଳ ଦେଶକୁ ସୁଦୃଢ଼ ଓ ସମୃଦ୍ଧ କରି ଗଢ଼ି ତୋଳିବା ପାଇଁ ରାଷ୍ଟ୍ରୀୟ ସମସ୍ୟାବଳୀ ଉପରେ ଏକ ସହମତିସୂଚକ ସିଦ୍ଧାନ୍ତ ଗ୍ରହଣ କରାଯିବା ଯେ ଏକାନ୍ତ ଜରୁରୀ- ଏଥିରେ କୌଣସି ସନ୍ଦେହ ନାହିଁ। ରାଷ୍ଟ୍ରୀୟ ମାନସ ଯେପରି ବିଭକ୍ତ ନ ହୁଏ, ସେଥିପ୍ରତି ଦୃଷ୍ଟି ଦେବା ଆଜି ସମସ୍ତଙ୍କର ପରମ କର୍ତ୍ତବ୍ୟ। ''ସଂବୋ ମନାଂସି ଜାନତାମ୍''ର ଏହାହିଁ ସଂଦେଶ।

**।। ଭାରତୀୟ ଲୋକତନ୍ତ୍ରର ସ୍ଥିତି-ବୈଚିତ୍ର୍ୟ ।।**

ଭାରତୀୟ ଲୋକତନ୍ତ୍ର ବା ଡେମୋକ୍ରାସୀର ଶକ୍ତି ଓ ଦୁର୍ବଳତା ଏବଂ ଏହାର ସାଫଲ୍ୟ ଓ ବ୍ୟର୍ଥତା ସଂପର୍କରେ ଅଟଳଜୀଙ୍କ ବିଚାର ଓ ବିଶ୍ଳେଷଣ ଯେପରି ମୌଳିକ ଓ ବାସ୍ତବଧର୍ମୀ, ସେହିପରି ବଳିଷ୍ଠ ଓ ଯୁକ୍ତିସିଦ୍ଧ। ସେ କହନ୍ତି : ''ଭାରତ ହେଉଛି ପୃଥିବୀର ସବୁଠାରୁ ବଡ଼ ଲୋକତନ୍ତ୍ର। ୧୯୭୫ ଓ ୭୬ର ଏକ କ୍ଷୁଦ୍ର କାଳଖଣ୍ଡ (ଜରୁରୀ ପରିସ୍ଥିତିର ସମୟ)କୁ ଛାଡ଼ି, ଦେଶରେ ଲୋକତନ୍ତ୍ରର ବ୍ୟବସ୍ଥା ବରାବର ଅକ୍ଷୁର୍ଣ୍ଣ ରହିଛି। ବଳିଷ୍ଠ ମତାଧିକାର, ନିଷ୍ପକ୍ଷ ନିର୍ବାଚନ, ସ୍ୱାଧୀନ ନ୍ୟାୟପାଳିକା, ବହୁଦଳୀୟ ପଦ୍ଧତି ତଥା ସମ୍ବାଦପତ୍ରର ସ୍ୱାଧୀନତା ଆମ ଲୋକତନ୍ତ୍ରର ଭିତ୍ତି। ଲୋକମାନେ ନିର୍ବାଚନ ଜରିଆରେ ସରକାର ବଦଳାଇ ଦେଇ ପାରୁଛନ୍ତି।

୧୯୭୭ରେ ଲୋକେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପରି ଶକ୍ତିଶାଳୀ ପ୍ରଧାନମନ୍ତ୍ରୀଙ୍କୁ ତଥା ତାଙ୍କ ଦଳକୁ ନିର୍ବାଚନରେ ସଂପୂର୍ଣ୍ଣ ପରାସ୍ତ କରି ଦେଇଥିଲେ ଓ ଜନତା ଦଳ ଭଳି ଏକ ନବଗଠିତ ଦଳକୁ ଶାସନଗାଦୀରେ ବସାଇ ଦେଇଥିଲେ। ମାତ୍ର ତିନିବର୍ଷ ମଧ୍ୟରେ ଲୋକେ ସେ ଦଳର ଅକ୍ଷମ ଓ ଅପଦାର୍ଥ ସରକାରକୁ ଫିଙ୍ଗି ଦେଇ ପୁଣି ଇନ୍ଦିରା ଗାନ୍ଧୀଙ୍କ ସରକାରକୁ କ୍ଷମତାକୁ ଫେରାଇ ଆଣିଥିଲେ। ସେହିପରି ୧୯୮୪ରେ ଇନ୍ଦିରା-ପୁତ୍ର ରାଜୀବ ଗାନ୍ଧୀଙ୍କୁ ଦେଶର ଜନସାଧାରଣ ଲୋକସଭାର ମୋଟ ୫୧୭ଟି ଆସନ ମଧ୍ୟରୁ ୪୧୫ଟି ସ୍ଥାନରେ ବିଜୟୀ କରାଇ ଅଭୂତପୂର୍ବ ସମର୍ଥନ ଦେଇଥିଲେ ମଧ୍ୟ ୫ ବର୍ଷ ପରେ ୧୯୮୯ ନିର୍ବାଚନରେ ତାଙ୍କୁ କ୍ଷମତାଚ୍ୟୁତ କରି ଦେଇଥିଲେ। କେନ୍ଦ୍ର ପରି ବିଭିନ୍ନ ରାଜ୍ୟରେ ମଧ୍ୟ ଲୋକେ ଅନୁରୂପ ଭାବରେ ସରକାର ପରିବର୍ତ୍ତନ କରି ମତାଧିକାରର ନିର୍ଣ୍ଣାୟକ ଶକ୍ତି ପ୍ରକଟ କରିଛନ୍ତି।

କିନ୍ତୁ ଭାରତର ଲୋକତନ୍ତ୍ର ଉପରକୁ ଯେପରି ଜୀବନ୍ତ ଓ ଶକ୍ତିଶାଳୀ ଜଣା ପଡୁଛି, ଭିତରେ ମଧ୍ୟ ତାହା ସେହିପରି ବଳିଷ୍ଠ ଓ ସକ୍ଷମ କି ? ଆମ ଗଣତନ୍ତ୍ରର ସବୁ ସଂସ୍ଥା କ'ଣ ନିଜ ନିଜର ଦାୟିତ୍ୱ ଠିକ୍ ଭାବେ ପାଳନ କରି ପାରୁଛନ୍ତି ? ଦେଶରେ

ଲୋକତାନ୍ତ୍ରିକ ଜୀବନଧାରା ଓ ମୂଲ୍ୟବୋଧଗୁଡ଼ିକର ସୁରକ୍ଷା ହୋଇ ପାରୁଛି କି ? ଆମ ଗଣତନ୍ତ୍ରର ଭିତ୍ତି ଯଥେଷ୍ଟ ଦୃଢ଼ ରହିଛି କି ? ଏହାର ଚେର ଖୁବ୍ ଗଭୀରକୁ ଯାଇ ପାରିଛି କି ?

ବାସ୍ତବିକ୍, ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଖୋଜିବାକୁ ଗଲେ ମନରେ ଘୋର ନୈରାଶ୍ୟ ସୃଷ୍ଟି ହୋଇଥାଏ । ଆମର ପାର୍ଲିଆମେଣ୍ଟରେ ଓ ବିଧାନସଭାମାନଙ୍କରେ ଯୁକ୍ତିତର୍କ ବା ଆଲୋଚନା ବହୁତ କମ୍, କିନ୍ତୁ ହୋ'ହଲ୍ଲା ଓ ଧସ୍ତାଧସ୍ତି ବେଶି । ନିର୍ବାଚନରେ ବିପୁଳ ଧନ-ଶକ୍ତି ଓ ଗୁଣ୍ଡାବାହିନୀର ପ୍ରୟୋଗ ଦ୍ୱାରା ଜବରଦସ୍ତ ବିଜୟ ହାସଲ କରାଯିବା ଫଳରେ ନିର୍ବାଚନ ପଦ୍ଧତି ମଧ୍ୟ ଦୂଷିତ ହୋଇ ପଡ଼ିଛି । ଦଳ-ବଦଳର ଅନୈତିକ ପ୍ରବୃତ୍ତି ଓ ସୁବିଧାବାଦୀ ମନୋଭାବ ବୃଦ୍ଧି ଯୋଗୁଁ ଦଳୀୟ ବ୍ୟବସ୍ଥା ଘୋର କ୍ଷତିଗ୍ରସ୍ତ ହୋଇଛି । ରାଜନୀତିରେ ଅପରାଧୀମାନଙ୍କର ପ୍ରାଧାନ୍ୟ ବୃଦ୍ଧି ପାଉଛି । ନ୍ୟାୟପାଳିକାର ନିଷ୍ପକ୍ଷତା ଘେନି ମଧ୍ୟ ସନ୍ଦେହ ସୃଷ୍ଟି ହେବାକୁ ଆରମ୍ଭ କଲାଣି । ରାଜନୀତି ତଥା ପ୍ରଶାସନ ଏବେ ଘୋର ଦୁର୍ନୀତି, ଭ୍ରଷ୍ଟାଚାର, ମିଥ୍ୟାଚାର ଓ ସ୍ୱାର୍ଥପରତା ଦ୍ୱାରା କବଳିତ ହେବା ଯୋଗୁଁ ଲୋକତନ୍ତ୍ର ଉପରୁ ଲୋକଙ୍କର ଆସ୍ଥା ଓ ବିଶ୍ୱାସ କ୍ରମଶଃ ତୁଟିଯାଉଛି । ଗଣତନ୍ତ୍ରର ବାହ୍ୟ ଢାଞ୍ଚା ବଜାୟ ରହିଥିଲେ ମଧ୍ୟ ତାର ଭିତରଟା ଘୁଣ ଧରିଲାଣି ।

**।। ବିଚିତ୍ର ପରିସ୍ଥିତି ।।**

ଆମକୁ ମନେ ରଖିବାକୁ ହେବ, ଲୋକତନ୍ତ୍ର ୫୧ ବନାମ ୪୯ର ଖେଳ ନୁହେଁ । ଆମର ନିର୍ବାଚନ ପଦ୍ଧତି ଏପରି ଯେ, ଯେଉଁଥିରେ ବିଜୟୀ ଦଳ ଏବଂ ବିଜୟୀ ପ୍ରାର୍ଥୀଙ୍କ ପାଇଁ ଶତକଡ଼ା ୫୦ ଭାଗ ଭୋଟ ପାଇବାର ଆବଶ୍ୟକତା ବି ନାହିଁ । ଦେଶରେ ଦଳଗୁଡ଼ିକର ବହୁଳତା ଏବଂ ନିର୍ବାଚନରେ ପ୍ରାର୍ଥୀମାନଙ୍କ ସଂଖ୍ୟାର ଅତ୍ୟଧିକତା କାରଣରୁ ବହୁମୁଖୀ ଭୋଟବିଭାଜନ ଏକ ବିଚିତ୍ର ପରିସ୍ଥିତି ସୃଷ୍ଟି କରୁଛି । ୩୦-୩୫ ଶତାଂଶ ଭୋଟ ପାଇ ମଧ୍ୟ ଦଳମାନେ ସରକାର ଗଢ଼ିବାକୁ ସମର୍ଥ ହୋଇ ପାରୁଛନ୍ତି ଏବଂ ତା'ଠାରୁ ଆହୁରି କମ୍ ଭୋଟ ପାଇ ଲୋକେ ସାଂସଦ ବା ବିଧାୟକ ରୂପେ ନିର୍ବାଚିତ ହୋଇ ପାରୁଛନ୍ତି । ଏ ବ୍ୟବସ୍ଥା ମୂଳତଃ ତ୍ରୁଟିପୂର୍ଣ୍ଣ, ଯାହାର ସଂଶୋଧନ ଏକାନ୍ତ ବାଞ୍ଛନୀୟ ।

ଭାରତରେ ୱେଷ୍ଟ ମିନିଷ୍ଟର ପ୍ରଣାଳୀ ଅନୁସାରେ ପ୍ରତିପକ୍ଷର ନେତାଙ୍କୁ ବିଶେଷ ମର୍ଯ୍ୟାଦା ଦିଆଯାଉଛି, ତାଙ୍କୁ ମନ୍ତ୍ରିପରିଷଦର, ସଦସ୍ୟଙ୍କ ସମକକ୍ଷ ବେତନ, ଭତ୍ତା ଓ ଅନ୍ୟାନ୍ୟ ସୁବିଧା ଦିଆଯାଉଛି । ବ୍ରିଟେନର ପରମ୍ପରା ଅନୁଯାୟୀ ଭାରତରେ ବି ଲୋକ ଲେଖା ସମିତି ବା ପବ୍ଲିକ ଆକାଉଣ୍ଟସ୍ କମିଟିର ଅଧ୍ୟକ୍ଷ ପଦ ପ୍ରତିପକ୍ଷକୁ ମିଳୁଛି । ଲୋକସଭାର ଉପାଧ୍ୟକ୍ଷ ପଦ ମଧ୍ୟ ପ୍ରତିପକ୍ଷକୁ ମିଳିପାରୁଛି । କିନ୍ତୁ ଏ ପ୍ରକାର

ବ୍ୟବସ୍ଥା ଓ ପରମ୍ପରାର ମୂଳରେ ପ୍ରତିପକ୍ଷକୁ ସମାଦର କରିବାର ଯେଉଁ ଭାବନା ନିହିତ ଅଛି, ତାହାର ବାସ୍ତବ କାର୍ଯ୍ୟକାରିତାରେ ଅଭାବ ପରିଦୃଷ୍ଟ ହେଉଛି। ପାରସ୍ପରିକ ସମାଦର ତ ଦୂରର କଥା, ଏଠାରେ ପ୍ରତିପକ୍ଷ ପ୍ରତି ସହିଷ୍ଣୁତା ପ୍ରଦର୍ଶନର ମାନସିକତା ବି ନାହିଁ। ପ୍ରତିପକ୍ଷକୁ ଶତ୍ରୁପକ୍ଷ ବୋଲି ମନେ କରାଯାଉଛି। ସରକାରୀ ଓ ବିରୋଧୀ ପକ୍ଷ ମଧ୍ୟରେ ଅସହିଷ୍ଣୁତା ବୃଦ୍ଧି ପାଉଥିବାରେ ଲାଗିଛି, ଯାହାକି ଦେଶର ଲୋକତାନ୍ତ୍ରିକ ବ୍ୟବସ୍ଥା ପାଇଁ ଏକ ଗୁରୁତର ବିପଦ।

ବେଷ୍ଟ୍ ମିନିଷ୍ଟର ପଦ୍ଧତିର ପରିଣାମସ୍ୱରୂପ ଭାରତୀୟ ସମାଜରେ ପୂର୍ବରୁ ରହିଥିବା ଅନେକ ଭେଦଭାବ ଏବେ ଅଧିକ ତୀବ୍ର ହୋଇ ଉଠିଛି। ଜାତି-ଉପଜାତି, ଉପାସନା ପଦ୍ଧତି, ଭାଷା ଏବଂ ଚାଲିଚଳନର ଭିତ୍ତିରେ ଯେଉଁ ଭେଦ ରହିଥିଲା, ତାହା ଉକ୍ରଟତର ହୋଇଛି। ସାମ୍ପ୍ରଦାୟିକତାର ଭେଦଭାବ ଅଧିକ ମାତ୍ରାରେ ଓ ଖୋଲାଖୋଲି ଭାବରେ ପ୍ରକାଶ ପାଉଛି। ଜାତିବାଦର ଜହର ଜନ-ଜୀବନକୁ ବିଷାକ୍ତ କରି ଦେଉଛି। ସଂଯୋଜକ ତତ୍ତ୍ୱ ବିଭାଜକ ତତ୍ତ୍ୱରେ ପରିଣତ ହେଉଛି। ରାଜନୀତି ଏବେ କେବଳ କ୍ଷମତାର ଖେଳ ହୋଇଛି। ଯେକୌଣସି ଉପାୟରେ କ୍ଷମତା ହାସଲ କରିବା ଏବଂ ଥରେ କ୍ଷମତାକୁ ଆସିଲେ ତାକୁ ଯେକୌଣସି ପନ୍ଥାରେ ବଜାୟ ରଖିବାହିଁ ଏବେ ରାଜନୀତିକ ଦଳମାନଙ୍କର ଏକମାତ୍ର ଲକ୍ଷ୍ୟରେ ପରିଣତ ହୋଇଛି। କ୍ଷମତାର ଲୋଭରେ ସେମାନେ ଭୋଟବ୍ୟାଙ୍କ- ରାଜନୀତିର ଆଶ୍ରୟ ନେଇ ସମାଜର ବିଭିନ୍ନ ବର୍ଗର ଲୋକଙ୍କ ମଧ୍ୟରେ ଭେଦଭାବ ପୂରାଉଛନ୍ତି। ଏପରିକି ରାଷ୍ଟ୍ରବିରୋଧୀ ତତ୍ତ୍ୱ ଓ ଶକ୍ତିମାନଙ୍କ ସହିତ ହାତ ମିଳାଇବାକୁ ମଧ୍ୟ ସେମାନେ ସଂକୋଚ ବୋଧ କରୁନାହାନ୍ତି।''

**॥ ପଦ୍ମବିଭୂଷଣ ॥**

ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀଙ୍କୁ ୧୯୯୨ ମସିହା ଜାନୁୟାରୀ ୨୫ ତାରିଖରେ 'ପଦ୍ମବିଭୂଷଣ' ଅଳଂକରଣରେ ସମ୍ମାନିତ କରାଯାଇଥିଲା। ଏହି ଉପଲକ୍ଷେ ନୂଆଦିଲ୍ଲୀଠାରେ ତାଙ୍କୁ ଅଭିନନ୍ଦନ ଓ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଏକ ଉତ୍ସବର ଆୟୋଜନ କରାଯାଇଥିଲା। ଏହି ଅଭିନନ୍ଦନ ସମାରୋହରେ ଅଟଳଜୀ ନିଜର ଜୀବନ-ଦର୍ଶନ ଉପରେ ଏକ ସ୍ୱରଚିତ କବିତା ପାଠ କରିଥିଲେ। କବିତାର ଶୀର୍ଷକ ଥିଲା 'ଉଁଚାଇ' ବା ଉଚ୍ଚତା। ସେ କବିତାଟିର କିଛି କିଛି ଅଂଶ ଅନେକ ପତ୍ର-ପତ୍ରିକାରେ ପ୍ରକାଶ ପାଇଛି। ଏଠାରେ ସେହି କବିତାଟିକୁ ସମ୍ପୂର୍ଣ୍ଣ ରୂପେ ଉଦ୍ଧାର କରାଯାଉଛି।

**॥ ଉଁଚାଇ ॥**

ଉଁଚେ ପହାଡ଼ ପର୍
ପେଡ଼୍ ନହିଁ ଲଗତେ,
ପୌଧେ ନହିଁ ଉଗତେ,

ନ ଘାସ୍ ହି ଜମତୀ ହୈ ।
ଜମତୀ ହୈ ସିର୍ଫ୍ ବର୍ଫ,
ଜୋ କଫନ୍ କି ତରହ୍ ସଫେଦ୍ ଔର
ମୌତ୍ କି ତରହ ଠଣ୍ଡୀ ହୋତୀ ହୈ ।
ଖେଲତୀ, ଖିଲଖିଲାତୀ ନଦୀ
ଜିସ୍‌କା ରୂପ ଧାରଣ କର
ଅପ୍‌ନେ ଭାଗ୍ୟ ପର ବୁଁଦ୍-ବୁଁଦ୍ ରୋତୀ ହୈ ।

ଐସୀ ଉଁଚାଇ,
ଜିସ୍‌କା ପରସ୍
ପାନୀ କୋ ପତ୍‌ଥର କର ଦେ,
ଐସୀ ଉଁଚାଇ
ଜିସ୍‌କା ଦରସ୍ ହୀନ ଭାବ ଭର ଦେ,
ଅଭିନନ୍ଦନ କି ଅଧିକାରୀ ହୈ
ଆରୋହୀଓଁ କେ ଲିୟେ ଆମଂତ୍ରଣ ହୈ
ଉସ୍ ପର୍ ଝଣ୍ଡେ ଗାଡ଼େ ଜା ସକ୍‌ତେ ହୈଁ ।
କିନ୍ତୁ କୋଇ ଗୌରେୟା
ବହାଁ ନୀଡ଼ ନହିଁ ବନା ସକତୀ
ନ କୋଇ ଥକା-ମାଁଦା ବଟୋହି
ଉସ୍‌କି ଛାଁବମେ ପଲଭର୍
ପଲକ ହି ଛାପ୍‌କା ସକ୍‌ତା ହୈ ।

ସଚାଇ ୟହ୍ ହୈ କି :
କେବଲ୍ ଉଁଚାଇ ହି କାଫି ନହି ହୋତି
ସବସେ ଅଲଗ- ଥଲଗ
ପରିବେଶ ସେ ପୃଥକ୍
ଅପନୋଁସେ କଟା-ବଁଟା
ଶୂନ୍ୟ ମେ ଅକେଲା ଖଡ଼ା ହୋନା
ପହାଡ୍ କା ମହାନତା ନହିଁ,
ମଜବୁରୀ ହୈ ।
ଉଁଚାଇ ଔର ଗହରାଇ ମେ
ଆକାଶ-ପାତାଲ୍ କି ଦୂରୀ ହୈ ।

ଜୋ ଜିତ୍‌ନା ଊଁଚା
ଉତ୍‌ନାହିଁ ଏକାକୀ ହୋତା ହୈ,
ହର ଭାର କୋ ସ୍ୱୟଂ ହି ଢୋତା ହୈ
ଚେହରେ ପର ମୁସ୍କାନେ ଚିପ୍‌କା
ମନ ହି ମନ୍ ରୋତା ହୈ ।

ଜରୁରୀ ୟହ ହୈ କି :
ଊଁଚାଇ କେ ସାଥ୍ ବିସ୍ତାର ଭି ହୋ,
ଜିସ୍‌ସେ ମନୁଷ୍ୟ
ଠୁଁଠ୍-ସା ଖଡ଼ା ନ ରହେ
ଔରୋଁ ସେ ଘୁଲେ-ମିଲେ
କିସୀ କୋ ସାଥ୍ ଲେ
କିସୀ କେ ସଂଗ୍ ଚଲେ ।
ଭୀଡ଼୍ ମେ ଖୋ ଜାନା,
ୟାଦୋଁ ମେ ଡୁବ୍ ଜାନା,
ସ୍ୱୟଂ କୋ ଭୁଲ୍ ଜାନା ।
ଅସ୍ତିତ୍ୱ କୋ ଅର୍ଥ,
ଜୀବନ କୋ ସୁଗନ୍ଧ ଦେତା ହୈ ।
ଧରତୀ କୋ ବୌନୋଁ କୀ ନହିଁ
ଊଁଚେ କଦ୍ କେ ଇନ୍‌ସାନୋଁ କି ଜରୁରତ୍ ହୈ ।
ଇତ୍‌ନେ ଊଁଚେ କି ଆସ୍‌ମାନ୍ କୋ ଛୁ ଲେଁ,
ନୟେ ନକ୍ଷତ୍ରୋଁ ମେ ପ୍ରତିଭା କେ ବୀଜ୍ ବୋ ଲେଁ,
କିଂତୁ ଇତ୍‌ନେ ଊଁଚେ ଭି ନହିଁ
କି ପାଁବ ତଲେ ଦୁବ୍ ହି ନ ଜମେ
କୋଇ କାଁଟା ନ ଚୁଁଭେ
କୋଇ କଲି ନ ଖିଲେ ।
ନ ବସଂତ ହୋ, ନ ପତ୍‌ଝାଡ଼
ହୋ ସିର୍ଫ୍ ଊଁଚାଇ କା ଅଂଧଡ଼-
ମାତ୍ର ଅକେଲେପନ୍ କା ସନ୍ନାଟା ।
ମେରେ ପ୍ରଭୁ !
ମୁଝେ ଇତନୀ ଊଁଚାଇ କଭି ମତ୍ ଦେନା ।

ଗୈରୋଁ କୋ ଗଲେ ନ ଲଗା ସକୁଁ,
ଇତନୀ ରୁଖାଇ କଭି ମତ୍ ଦେନା ।

॥ 'ହିନ୍ଦୀ-ଗୌରବ' ସମ୍ମାନ ॥

ହିନ୍ଦୀ ଭାଷା ଓ ସାହିତ୍ୟର ଗୌରବ ବୃଦ୍ଧି କରାଇବାରେ ଅଟଳଜୀ ତାଙ୍କର ଛାତ୍ରାବସ୍ଥାରୁ ହିଁ ଉଦ୍ୟମ କରି ଆସିଛନ୍ତି ଏବଂ ଦେଶ-ବିଦେଶରେ ଏହାର ମର୍ଯ୍ୟାଦା ବୃଦ୍ଧି କ୍ଷେତ୍ରରେ ବିଶେଷ ଅବଦାନ ଦେଇଛନ୍ତି । ଏଥିନିମନ୍ତେ ଉତ୍ତରପ୍ରଦେଶର 'ହିନ୍ଦୀ ସଂସ୍ଥାନ' ପକ୍ଷରୁ ତାଙ୍କୁ ୧୯୯୨ ସେପ୍ଟେମ୍ବର ୨୮ ତାରିଖ ଦିନ 'ହିନ୍ଦୀ-ଗୌରବ' ଉପାଧିରେ ସମ୍ମାନିତ କରାଯାଇଥିଲା । ଏଥିସହିତ ତାଙ୍କୁ ୫୧ ହଜାର ଟଙ୍କାର ପୁରସ୍କାର ମଧ୍ୟ ପ୍ରଦତ୍ତ ହୋଇଥିଲା । ଅଟଳଜୀ ସେହି ମଞ୍ଚ ଉପରେ ହିଁ ନିଜ ପକ୍ଷରୁ ଆଉ ୫୧ହଜାର ଟଙ୍କା ସହ ଏକ ଲକ୍ଷ ଦୁଇହଜାର ଟଙ୍କାର ଧନରାଶି 'ହିନ୍ଦୀ ସଂସ୍ଥାନ'କୁ ପ୍ରଦାନ କରିଥିଲେ । ଏହି ଅର୍ଥାନୁକୂଲ୍ୟରେ ସେ ତାଙ୍କର ପିତା ସ୍ୱର୍ଗତ କୃଷ୍ଣବିହାରୀ ବାଜପେୟୀଙ୍କ ନାମରେ ଏକ ପାଣ୍ଠି ସୃଷ୍ଟି କରାଯାଇ, ରାଜ୍ୟର ବୋର୍ଡ଼ ପରୀକ୍ଷାରେ ତଥା ଇଣ୍ଟର ପରୀକ୍ଷାରେ ହିନ୍ଦୀରେ ସର୍ବାଧିକ ନମ୍ବର ପାଇଥିବା ଦୁଇଜଣ ଛାତ୍ର-ଛାତ୍ରୀଙ୍କୁ ପ୍ରତିବର୍ଷ ଯଥାକ୍ରମେ ୫ ଓ ୭ ହଜାର ଟଙ୍କା କରି ପୁରସ୍କାର ଦିଆଯିବାର ବ୍ୟବସ୍ଥା କରିବା ଲାଗି ନିବେଦନ କରିଥିଲେ । ସେହି ଅର୍ଥର ସୁଧରୁ ଲବ୍ଧ ଅର୍ଥରେ ଏହି ପୁରସ୍କାର ପ୍ରଦାନର ବ୍ୟବସ୍ଥା ପ୍ରଚଳିତ ହୋଇଛି ।

॥ **ଜନ୍ମନକ୍ଷତ୍ରର କବିତା** ॥

ଅଟଳଜୀ ବରାବର ଆପଣା ପରିବାରର ଲୋକଙ୍କ ମଧ୍ୟରେ ହିଁ ନିଜର ଜନ୍ମନକ୍ଷତ୍ର ବା ଜନ୍ମଦିନ (୨୫ ଡିସେମ୍ବର) ପାଳନ କରିଥାନ୍ତି । ଏ ଉଦ୍ଦେଶ୍ୟରେ ବିଶେଷ ଆଡ଼ମ୍ବର ସେ ପସନ୍ଦ କରନ୍ତି ନାହିଁ । ୧୯୯୩ରେ ନିଜର ୬୯ତମ ଜନ୍ମତିଥିରେ ସେ 'ମୋଡ଼ ପର' ଶୀର୍ଷକ ଏକ କବିତା ରଚନା କରିଥିଲେ । ଏହି କବିତାରେ ସେ ଅତ୍ୟନ୍ତ ସରଳ ରୀତିରେ ହିଁ ନିଜର ମନୋଭାବ ପ୍ରକାଶ କରିଥିଲେ । ଏଠାରେ ସେହି କବିତାଟି ଉଦ୍ଧାର କରାଯାଉଛି :

॥ **ମୋଡ଼ ପର** ॥

ମୁଝେ ଦୂର କା ଦିଖାଇ ଦେତା ହୈ,
ମେ ଦୀବାର ପର ଲିଖା ପଢ଼ ସକତା ହୁଁ,
ମଗର ହାଥ୍ କି ରେଖାଏଁ ନହିଁ ପଢ଼ ପାତା ।
ସୀମା କେ ପାର ଭଡ଼କତେ ଶୋଲେ
ମୁଝେ ଦିଖାଇ ଦେତେ ହୈଁ ।
ପର ପାଁବୋ କେ ଇର୍ଦ୍-ଗିର୍ଦ୍ ଫୈଲୀ ଗର୍ମ୍ ରାଖ୍

ନଜର ନହିଁ ଆତୀ ।
କ୍ୟା ମେ ବୁଢ଼ା ହୋ ଚଲା ହୁଁ ?
ହର ପଚିଶ୍ ଦିସମ୍ବର କୋ
ଜାନେ କି ଏକ ନଇ ସୀଢ଼ି ଚଢ଼ତା ହୁଁ
ନୟେ ମୋଡ଼ ପର୍
ଔରୋଁ ସେ କମ୍, ସ୍ୱୟଂ ସେ ଜ୍ୟାଦା ଲଡ଼ତା ହୁଁ ।
ମୈଁ ଭୀଡ଼ କୋ ଚୁପ୍ କରା ଦେତା ହୁଁ
ମଗର ଅପନେ କୋ ଜବାବ ନହିଁ ଦେ ପାତା,
ମେରା ମନ ମୁଝେ ଆପନୀ ହି ଅଦାଲତ ମେ ଖଡ଼ା କର୍
ଜବ୍ ଜିରହ କରତା ହୈ,
ମେରା ହଲଫନାମା ମେରେ ହି ଖିଲାଫ୍ ପେଶ୍ କରତା ହୈ
ତୋ ମୈ ମୁକଦମା ହାର ଜାତା ହୁଁ,
ଅପନୀ ହି ନଜର ମେଁ ଗୁନହଗାର ବନ୍ ଜାତା ହୁଁ ।
ତବ ମୁଝେ କୁଛ ଦିଖାଇ ନହିଁ ଦେତା-
ନ ଦୂରକା, ନ ପାସ୍ କା
ମେରୀ ଉମ୍ର ଅଚାନକ ଦସ୍ ସାଲ୍ ବଢ଼ ଜାତୀ ହୈ
ମେଁ ସଚମୁଚ୍ ବୁଢ଼ା ହୋ ଜାତା ହୁଁ ।

**॥ ଶ୍ରେଷ୍ଠ ସାଂସଦ ॥**

ଅଟଳଜୀଙ୍କୁ ୧୯୯୪ ଅଗଷ୍ଟ ୧୫ ତାରିଖ ଦିନ ପାର୍ଲିଆମେଣ୍ଟର କେନ୍ଦ୍ରୀୟ ହଲରେ ଆୟୋଜିତ ଏକ ଉତ୍ସବରେ 'ଶ୍ରେଷ୍ଠ ସାଂସଦ' ରୂପେ ସମ୍ମାନିତ କରାଯାଇଥିଲା । ସ୍ୱର୍ଗତ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ନାମରେ ଏହି ସମ୍ମାନ ପ୍ରଦତ୍ତ ହୋଇଥାଏ । ଅଟଳଜୀଙ୍କୁ ଏହି ସମ୍ମାନସୂଚକ ମାନପତ୍ର ଅର୍ପଣ କରାଯିବା ବେଳେ ତାହାଙ୍କୀନ ପ୍ରଧାନମନ୍ତ୍ରୀ ଶ୍ରୀ ରାଓ ଓ ଉପ-ରାଷ୍ଟ୍ରପତି ଶ୍ରୀ ନାରାୟଣନ୍‌ଙ୍କ ସମେତ ବହୁ ସାଂସଦ ଉପସ୍ଥିତ ଥିଲେ ।

**॥ ଅଧୁରା ଆଜାଦୀ ॥**

ସ୍ୱାଧୀନତା ଦିବସ, ଅର୍ଥାତ୍ ଅଗଷ୍ଟ ପନ୍ଦରରେ ଅଟଳଜୀ ସାଧାରଣତଃ ରାଜଧାନୀ ଦିଲ୍ଲୀରେ ନ ଥାନ୍ତି । ନିଜ ନିର୍ବାଚନମଣ୍ଡଳୀର କୌଣସି ସ୍ଥାନରେ ବା ଗାଁ ଗହଳିରେ ହିଁ ସେ ଏହି ଦିନଟି ବିତାଇଥାନ୍ତି । ଲୋକଙ୍କ ଭଲ-ମନ୍ଦ ବୁଝିବା ସହିତ ନିଜ ଉଦ୍ୟମରେ ବା ସରକାରୀ ଯୋଜନା ଅଧୀନରେ ହେଉଥିବା ଉନ୍ନୟନମୂଳକ କାର୍ଯ୍ୟର ଅଗ୍ରଗତି ତଦାରଖ କରିଥାନ୍ତି । ୧୯୯୫ର ସ୍ୱାଧୀନତା ଦିବସର ସକାଳେ ଅଟଳଜୀ ଲକ୍ଷ୍ନୌର

ମୀରାବାଈ ଗେଷ୍ଟ ହାଉସ୍‌ରେ ଇଡ଼ଲୀ-ଦୋସାର ଜଳଖିଆ ସାରି ବଖସୀ ସରୋବର ଅଭିମୁଖେ ଯାତ୍ରା କରିଥିଲେ । ସାଙ୍ଗରେ ଥିଲେ ଅଧ୍ୟାପକ ବିଷ୍ଣୁକାନ୍ତ ଶାସ୍ତ୍ରୀ ଓ ଶ୍ରୀ ଲାଲଜୀ ଟଣ୍ଡନ । ବାଟରେ ନେଉରୀ ଗାଁର ଲୋକେ ଫୁଲମାଳ ଦେଇ ଆଦର ସହକାରେ ତାଙ୍କୁ ସ୍ୱାଗତ ଜଣାଇଲେ । ସେଠାରେ ଆୟୋଜିତ ଏକ ଛୋଟ ସଭାରେ ସଂକ୍ଷିପ୍ତ ଭାଷଣ ଦେଇ ଅଟଳଜୀ କହିଥିଲେ : ''ଆଉ ଦୁଇବର୍ଷ ପରେ ଆମେ ପାଳନ କରିବା ଆମ ସ୍ୱାଧୀନତାର ୫୦ ବର୍ଷ ପୂର୍ତ୍ତି ବା ସୁବର୍ଣ୍ଣ ଜୟନ୍ତୀ ଉତ୍ସବ । ଏହି ସ୍ୱାଧୀନତା ପାଇଁ ଦେଶବାସୀ ଯେଉଁ ସଂଗ୍ରାମ କରିଥିଲେ, ସେଥିରେ ବହୁ ଲୋକଙ୍କୁ ଶହୀଦ ହେବାକୁ ପଡ଼ିଛି, ବଳିଦାନ ଦେବାକୁ ପଡ଼ିଛି । ସେମାନଙ୍କର ଅସୀମ ତ୍ୟାଗ ବଳରେ ଯେଉଁ ସ୍ୱାଧୀନତା ଆମକୁ ମିଳିଛି, ତାହା ଏବେ ମଧ୍ୟ ଅଧୁରା ରହିଛି । ଯେପର୍ଯ୍ୟନ୍ତ ଦେଶର ପ୍ରତ୍ୟେକ ଲୋକ ନିଜ ଜୀବନର ଆବଶ୍ୟକ ସର୍ବନିମ୍ନ ସୁବିଧା ସବୁ ପାଇ ନ ପାରିଛି, ସେପର୍ଯ୍ୟନ୍ତ ଏ ସ୍ୱାଧୀନତା ସମ୍ପୂର୍ଣ୍ଣ ହେବନାହିଁ । ଆମକୁ ନିଜର ଏହି ସ୍ୱାଧୀନତାକୁ ରକ୍ଷା କରିବା ସଂଗେ ସଂଗେ ତାକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ଆଗେଇ ଚାଲିବାକୁ ପଡ଼ିବ ।''

**॥ ଭାରତ ବନାମ ଇଣ୍ଡିଆ ॥**

ଦେଶର ପରିସ୍ଥିତି ସମ୍ବନ୍ଧୀୟ ଆଲୋଚନା ପ୍ରସଙ୍ଗରେ ଅଟଳଜୀ ଆହୁରି କହିଥିଲେ : ''ସ୍ୱାଧୀନତା ପ୍ରାପ୍ତି ସମୟରେ ତ ଆମର ଏଇ ମାତୃଭୂମିକୁ ଦୁଇ ଭାଗରେ ବିଭକ୍ତ ହେବାକୁ ପଡ଼ିଥିଲା । ସେହି ଅବାଞ୍ଛିତ ବିଭାଜନର ଦୁଷ୍ପରିଣାମ ଆମକୁ ଏବେ ନାନା ଭାବରେ ଭୋଗିବାକୁ ପଡୁଛି । ତାକୁ ଛାଡ଼ି ଦେଲେ ବି, ହିନ୍ଦୁସ୍ଥାନ ନାମରେ ପରିଚିତ ଆମର ଏଇ ଦେଶ ଏବେ ଅତି ବିଚିତ୍ର ଭାବରେ ଦୁଇଟି ଦେଶର ପରିଚୟ ନେଇ ଠିଆ ହୋଇଛି--- ଭାରତ ଏବଂ ଇଣ୍ଡିଆ । ଗାଁ ଗହଳରେ ଏହା ଭାରତ ହୋଇ ରହିଥିବା ବେଳେ ରାଜଧାନୀ ଦିଲ୍ଲୀରେ 'ଇଣ୍ଡିଆ' । ସେଠି ଉଡ଼ାଜାହାଜରେ ବସିବା ପାଇଁ ଲୋକଙ୍କର ଏତେ ଭିଡ଼ ହେଉଛି ଯେ, ଟିକେଟ ମିଳୁନାହିଁ । ଆଉ ଏଠି ଗାଁ ଗହଳିର ଲୋକଙ୍କୁ ଦି' ବେଳା ଦି'ମୁଠା ଖାଇବାକୁ ଦାନା ମିଳୁନାହିଁ । ଏହି ଅବାଞ୍ଛିତ ବୈଷମ୍ୟକୁ ଦୂର କରିବାକୁ ପଡ଼ିବ । ନିଜର ଜନ୍ମଭୂମି ଭାରତକୁ ଏଇ 'ଇଣ୍ଡିଆ'ରୁ ମୁକ୍ତ ଓ ସ୍ୱତନ୍ତ୍ର କରିବାକୁ ହେବ ।

**॥ ଗାନ୍ଧି-ବାଦର ବିଚାର ॥**

ସେହି ବର୍ଷ ଗାନ୍ଧି-ଜୟନ୍ତୀର ଅବସରରେ ବିଶିଷ୍ଟ ଭାରତୀୟ ସାହିତ୍ୟିକ ଶ୍ରୀ ବିଷ୍ଣୁ ପ୍ରଭାକରଙ୍କ ସମ୍ମାନାର୍ଥେ ଲକ୍ଷ୍ନୌଠାରେ ଏକ ଉତ୍ସବର ଆୟୋଜନ କରାଯାଇଥିଲା । ଏଥିରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଅଟଳଜୀ ନିଜର ଭାଷଣ ପ୍ରସଙ୍ଗରେ କହିଥିଲେ ''ଆଜି ଗାନ୍ଧିଜୀଙ୍କର ୧୨୫ତମ ଜନ୍ମତିଥି ଏବଂ ଶାନ୍ତି-ଦୂତ ଲାଲ

ବାହାଦୁର ଶାସ୍ତ୍ରୀଙ୍କର ସ୍ୱନକ୍ଷତ୍ର ପାଳନ ସହିତ ମହାନ୍ ସାହିତ୍ୟ ସାଧକ ଶ୍ରୀ ବିଷ୍ଣୁ ପ୍ରଭାକରଙ୍କ ସମ୍ମାନ ସମାରୋହରେ ଯୋଗଦାନ ମୋ ପାଇଁ ଅତ୍ୟନ୍ତ ଆନନ୍ଦଦାୟକ। X X X ଗାନ୍ଧିଜୀ ଆମକୁ ଯୁଗ ଯୁଗ ଧରି ଅନୁପ୍ରାଣିତ କରିବେ, ଚର୍ଚ୍ଚାର ବିଷୟ ହୋଇ ରହିବେ ଏବଂ ଭବିଷ୍ୟତ ପାଇଁ ଦିଗ୍‌ଦର୍ଶନ ଦେଇ ଚାଲିଥିବେ। ଚିନ୍ତନ ଆଉ ବିଚାର କ୍ଷେତ୍ରରେ ସେ ନୂଆ ନୂଆ ପ୍ରୟୋଗ କରିଥିଲେ। ଭାରତୀୟ ଜନ-ଜୀବନରେ ତାଙ୍କର ଯୋଗଦାନ ଏକ ଋଷିର ଯୋଗଦାନ। ସମୟ ଯେତିକି ଯେତିକି ବିତୁଥିବ, ଆମେ ଗାନ୍ଧିଜୀଙ୍କ ଆବଶ୍ୟକତା ସେତିକି ସେତିକି ଅନୁଭବ କରୁଥିବା ଏବଂ ତାଙ୍କୁ ମନେ ପକାଉଥିବା। ତାଙ୍କ ଲାଗି ସ୍ୱାଧୀନତାର ସଂଗ୍ରାମ ଏବଂ ସାମାଜିକ ପରିବର୍ତ୍ତନର ସଂଗ୍ରାମ ପୃଥକ୍- ପୃଥକ୍ ନ ଥିଲା। ତାହା ଥିଲା ଗୋଟିଏ ରାସ୍ତାର ଦୁଇ ପାଖ। ସମାଜର ପରିବର୍ତ୍ତନ ପାଇଁ ତାଙ୍କର ଥିଲା ଏକ ସ୍ୱତନ୍ତ୍ର ଶୈଳୀ। ସେ ସଂଘର୍ଷର ଆଗରେ ମୁଣ୍ଡ ନୁଆଁଉ ନ ଥିଲେ, ନିଜର ସଂଗ୍ରାମ ଚଳାଇ ରଖୁଥିଲେ। ସେ ସହଜ ଓ ଅହିଂସ ଭାବରେ ହିଁ ପରିବର୍ତ୍ତନ ଘଟାଇବାର ପକ୍ଷପାତୀ ଥିଲେ। ନଦୀର ପ୍ରତ୍ୟେକ ଲହର ଯେପରି ନୂଆ ହୋଇ ମଧ୍ୟ ପୁରୁଣା ସହିତ ସଂଯୁକ୍ତ ରହିଥାଏ, ସେହିପରି ସମାଜକୁ ପୁରାତନ ସହିତ ସଂଯୁକ୍ତ କରାଇ ନବୀନତା ଆଡ଼କୁ ନେଇ ଯିବାର ପ୍ରଣାଳୀକୁ ସେ ଶ୍ରେୟସ୍କର ମଣୁଥିଲେ।''

**॥ ମରିସସ୍‌ର ଶ୍ରଦ୍ଧା-ସମ୍ମାନ ॥**

'ଲଘୁ ଭାରତ' ରୂପେ କଥିତ ମରିସସ୍‌ର ବିଦେଶ ମନ୍ତ୍ରୀଙ୍କ ନିମନ୍ତ୍ରଣକ୍ରମେ ଅଟଳଜୀ ୧୯୯୫ ଜୁଲାଇ ୭ ତାରିଖରେ ଲୋକସଭାର ବିରୋଧୀ ଦଳ ନେତା ରୂପେ ଛ' ଦିନିଆ ମରିସସ୍ ଗସ୍ତରେ ଯାତ୍ରା କରିଥିଲେ। ସେଠାରେ ସେ ମରିସସ୍‌ର ପ୍ରଧାନମନ୍ତ୍ରୀ ଶ୍ରୀ ଅନିରୁଦ୍ଧ ଜଗନ୍ନାଥ, ବିରୋଧୀ ଦଳ ନେତା ଶ୍ରୀ ନବୀନ ରାମଗୁଲାମ ତଥା ଅନ୍ୟ ନେତାମାନଙ୍କୁ ଭେଟି ଦୁଇ ଦେଶର ସମ୍ବନ୍ଧ ଘେନି କଥାବାର୍ତ୍ତା କରିଥିଲେ। ସେଠାରେ ଅଟଳଜୀଙ୍କ ସ୍ୱାଗତ ଉପଲକ୍ଷେ ଆୟୋଜିତ ଏକ ସଭାରେ ଡଃ ବି.ଏମ୍. ଭଗତ 'ମଧୁକର' ଏକ ଅଭିନନ୍ଦନ-ଗୀତିକା ଗାନ କରିଥିଲେ। ତାର ପ୍ରଥମ ଚାରି ଧାଡ଼ି ଥିଲା ଏହି ପ୍ରକାର :

''ଅଟଳ ବିହାରୀ ବାଜପେୟୀ କେ ଉନ୍ନତ ଭାଲ ଲଗାକର ଚନ୍ଦନ
ଲଘୁ ଭାରତ, ବିଶାଲ କା କରତା ଶ୍ରଦ୍ଧା ସେ ଅଭିନନ୍ଦନ
ଅଗବାନୀ ମେ ହୃଦୟ ଖୋଲ୍ କର ମଧୁକର କରତା ମଧୁମୟ ଗୁଂଜନ
ନତମସ୍ତକ ହୋ ଚରଣ କମଲ ମେ କରତା ଅର୍ଚ୍ଚନ ବନ୍ଦନ ପୂଜନ।''

ଅଟଳଜୀ ସେଠାରେ ପ୍ରଧାନମନ୍ତ୍ରୀ ଶ୍ରୀ ଜଗନ୍ନାଥଙ୍କ ଉପସ୍ଥିତିରେ ହିନ୍ଦୀଭାଷା ସଂଗଠନର ଉଦ୍‌ଘାଟନ ମଧ୍ୟ କରିଥିଲେ ଏବଂ ଭାଷା ଓ ସଂସ୍କୃତିର ଅତୁଟ ବନ୍ଧନ ସମ୍ବନ୍ଧରେ ହିନ୍ଦୀ ଭାଷାରେ ଏକ ଚମତ୍କାର ଭାଷଣ ଦେଇଥିଲେ। ଅନ୍ୟ ନେତାମାନେ

ମଧ୍ୟ ସମସ୍ତେ ସେ ସଭାରେ ହିନ୍ଦୀରେ ଭାଷଣ ଦେଇଥିଲେ । ଅଟଳଜୀ ସେଠାରେ ପ୍ରକାଶ କରିଥିଲେ ଯେ, ସେ ବିଦେଶ ମନ୍ତ୍ରୀ ଥିବାବେଳେ ଜାତିସଂଘରେ ଯେଉଁ ପ୍ରଥମ ହିନ୍ଦୀ ଅଭିଭାଷଣ ଦେଇଥିଲେ, ତାର ପ୍ରେରଣା ୧୫ ବର୍ଷ ତଳେ ମରିସସ୍‌ରେ ଅନୁଷ୍ଠିତ ୨ୟ ବିଶ୍ୱ ହିନ୍ଦୀ ସମ୍ମିଳନୀରୁ ହିଁ ସେ ପାଇଥିଲେ ।

ଅଟଳଜୀ ଏହି ଅବସରରେ, ୧୮୩୪ରେ ପ୍ରଥମ ମରିସସ୍ ଯାତ୍ରୀ ଭାରତୀୟ ଦଳ ଜାହାଜରୁ ଓହ୍ଲାଇ ମରିସସ୍‌ର ଯେଉଁ ସ୍ଥାନରେ ପାଦ ରଖିଥିଲେ, ସେ ସ୍ଥାନ ପରିଦର୍ଶନ କରି ପୂର୍ବଜମାନଙ୍କ ଉଦ୍ଦେଶ୍ୟରେ ଶ୍ରଦ୍ଧା-ସୁମନ ଅର୍ପଣ କରିଥିଲେ ଏବଂ ମରିସସ୍‌ର ରାଷ୍ଟ୍ରପତି ସ୍ୱର୍ଗତ ଶିବସାଗର ରାମଗୁଲାମଙ୍କ ସମାଧି ସ୍ଥଳକୁ ଯାଇ ଶ୍ରଦ୍ଧାଞ୍ଜଳି ଜଣାଇଥିଲେ ।

**।। 'ମେରୀ ଇକ୍ୟାବନ କବିତାଏଁ'ର ପ୍ରକାଶନ ।।**

ଅଟଳଜୀ କେବଳ ଜଣେ ତୁଙ୍ଗ ରାଜନେତା, ରାଷ୍ଟ୍ରନାୟକ, ସାଂସଦ, ବାଗ୍ମୀ, ପତ୍ରକାର, ଚିନ୍ତାନାୟକ ଓ ପ୍ରାଜ୍ଞ ସୁପଣ୍ଡିତ ନୁହଁନ୍ତି, ସେ ମଧ୍ୟ ଜଣେ ସଚ୍ଚା କବି ଓ ଲେଖକ । ବିଭିନ୍ନ ସମୟରେ, ବିଭିନ୍ନ ଅବକାଶରେ ସେ ବହୁ କବିତା ରଚନା କରିଥିଲେ ମଧ୍ୟ ସେଗୁଡ଼ିକୁ ସାଇତି ରଖି ପାରି ନାହାନ୍ତି । ତଥାପି ପରବର୍ତ୍ତୀ କାଳରେ ତାଙ୍କର କେତେକ ପ୍ରକାଶିତ ଓ ଅପ୍ରକାଶିତ କବିତା ସଂଗ୍ରହ କରାଯାଇ. ୧୯୯୫ ମସିହାରେ ସେଥିରୁ ସୁନିର୍ବାଚିତ ୫୧ଟି କବିତାର ଏକ ସଞ୍ଚୟନ କିତାବଘର ପ୍ରକଶନ ସଂସ୍ଥା ପକ୍ଷରୁ ପ୍ରକାଶ କରାଯାଇଥିଲା । ଡଃ ଚନ୍ଦ୍ରିକା ପ୍ରସାଦ ଶର୍ମାଙ୍କ ଦ୍ୱାରା ସଂପାଦିତ ଏହି ପୁସ୍ତକଟିର ନାମ ''ମେରୀ ଇକ୍ୟାବନ୍ କବିତାଏଁ'' । କେତେକ ଗୁଣଗ୍ରାହୀଙ୍କର ବିଶେଷ ଆଗ୍ରହ ଓ ବାରମ୍ବାର ଉଦ୍ୟମ କ୍ରମେ ସେହି ବର୍ଷ ଅକ୍ଟୋବର ମାସ ୧୩ ତାରିଖ ଦିନ ଏହି ପୁସ୍ତକଟିର ଲୋକାର୍ପଣ ବା ଉନ୍ମୋଚନ ଉତ୍ସବରେ ଯୋଗ ଦେବାକୁ ଅଟଳଜୀ ସମ୍ମତି ଦେଇଥିଲେ । 'ଲୋକ ଅଭିଯାନ' ସଂସ୍ଥା ପକ୍ଷରୁ ଦିଲ୍ଲୀରେ ଏହି ଉତ୍ସବର ଆୟୋଜନ କରାଯାଇଥିଲା ।

**।। ଅବିସ୍ମରଣୀୟ ଲୋକାର୍ପଣ ସମାରୋହ ।।**

ଏହି ଉତ୍ସବରେ କବିତା ସଞ୍ଚୟନଟିର ଉନ୍ମୋଚକ ରୂପେ ଯୋଗ ଦେଇଥିଲେ ତାତ୍କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ପି.ଭି. ନରସିଂହ ରାଓ, ଯିଏକି ନିଜେ ଜଣେ ଲେଖକ ଓ ପଣ୍ଡିତ ବ୍ୟକ୍ତି ରୂପେ ପରିଚିତ । ଉତ୍ସବରେ ଅଧକ୍ଷତା କରିଥିଲେ ହିନ୍ଦୀ ସାହିତ୍ୟର ଯଶସ୍ୱୀ ଲେଖକ ଡଃ ବିଦ୍ୟାନିବାସ ମିଶ୍ର । ଉତ୍ସବରେ ଅନ୍ୟାନ୍ୟ ସମ୍ମାନିତ ଓ ବିଶିଷ୍ଟ ବକ୍ତା ରୂପେ ଯୋଗ ଦେଇଥିଲେ ମୂର୍ଦ୍ଧନ୍ୟ ପ୍ରଗତିବାଦୀ କବି ଡଃ ଶିବମଙ୍ଗଳ ସିଂହ 'ସୁମନ', ରାଷ୍ଟ୍ରଦୂତ ଡଃ ଲକ୍ଷ୍ମୀମଲ୍ଲ ସିଂହଭୀ ଓ କେ. ସୀତାରାମେୟା ସୁଦର୍ଶନ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ଅଟଳଜୀ ଗ୍ୱାଲିୟରର ଭିକ୍ଟୋରିଆ କଲେଜରେ ବି.ଏ.

ପଢୁଥିବା ବେଳେ କବି ସୁମନ୍‌ଜୀ ସେଠାରେ ହିନ୍ଦୀ ଭାଷା ଓ ସାହିତ୍ୟର ଅଧ୍ୟାପକ ଥିଲେ । ଡଃ ସିଂହଭୀ ଏହି ଉତ୍ସବରେ ଯୋଗ ଦେବାପାଇଁ ଲଣ୍ଡନରୁ ସ୍ୱତନ୍ତ୍ର ଭାବେ ନୂଆଦିଲ୍ଲୀକୁ ଆସିଥିଲେ ।

ସଭାମଞ୍ଚରେ ପ୍ରଧାନମନ୍ତ୍ରୀ ଶ୍ରୀ ନରସିଂହ ରାଓ ଏବଂ ପ୍ରତିପକ୍ଷର ନେତା ଶ୍ରୀ ଅଟଳ ବିହାରୀ ବାଜପେୟୀ ଦୁଇ ସାହିତ୍ୟିକ ବନ୍ଧୁ ରୂପେ ପାଖାପାଖି ବସିଥିଲେ । ଅତ୍ୟନ୍ତ ହୃଦୟସ୍ପର୍ଶୀ ଥିଲା ସେହି ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିବେଶ । କୂଟୀଳ ରାଜନୀତି ସିନା ହୃଦୟ ସବୁକୁ ତଫାତ୍ କରିଦିଏ; କିନ୍ତୁ ସାହିତ୍ୟ ଘଟାଉଥାଏ ଏହିପରି ସଶ୍ରଦ୍ଧ ସମ୍ମିଳନ । ଦୁଇ ବିପରୀତ ବିଚାରଧାରାର ପ୍ରତିନିଧିତ୍ୱ କରୁଥିବା ଦୁଇ ତୁଙ୍ଗ ବ୍ୟକ୍ତିତ୍ୱ ନରସିଂହଜୀ ଓ ଅଟଳଜୀ ଯେତେବେଳେ ନିଜ ନିଜର ରାଜନୈତିକ ପରିଚୟକୁ ପଛରେ ପକାଇ ପରସ୍ପରକୁ ସ୍ନେହ ଓ ସଂପ୍ରୀତିର ବାହୁ ପ୍ରସାରଣ କରି କୋଳାଗ୍ରତ କଲେ, ସେତେବେଳେ କ୍ଷଣକ ଲାଗି ବାସ୍ତବିକ୍ ଏକ ଅପୂର୍ବ ଭାବାବେଗର ବାତାବରଣ ସୃଷ୍ଟି ହୋଇଥିଲା ।

ଏହି ଅବସରରେ ଦିଲ୍ଲୀର ବହୁ ସାଂସଦ, ବୁଦ୍ଧିଜୀବୀ, ସାହିତ୍ୟପ୍ରେମୀ, କବି, କଳାକାର ଓ ଅଟଳପ୍ରେମୀ ବ୍ୟକ୍ତିଙ୍କ ସହିତ ଶ୍ରୀ ଲାଲକୃଷ୍ଣ ଆଡ୍‌ଭାନୀ, ଡଃ ମୁରଲୀ ମନୋହର ଯୋଶୀ, ଶ୍ରୀ ମଦନଲାଲ ଖୁରାନା, ଶ୍ରୀ କେଦାରନାଥ ସାହାଣୀ ପ୍ରମୁଖ ନେତାମାନେ ମଧ୍ୟ ଉପସ୍ଥିତ ଥିଲେ । ଶ୍ରୀ ନରସିଂହ ରାଓ ପ୍ରଦୀପ ପ୍ରଜ୍ୱଳନ କରି ସମାରୋହର ଶୁଭାରମ୍ଭ କଲେ । ଡଃ ବିନ୍ୟାନିବାସ ମିଶ୍ର ପୁସ୍ତକର ଲୋକାର୍ପଣ କରି ତାର ପ୍ରଥମ କପି ଶ୍ରୀ ରାଓଙ୍କୁ ଭେଟି ଦେଲେ । ଏହାପରେ ରାଓଜୀ, ଅଟଳଜୀଙ୍କୁ ପୁଷ୍ପ ଗୁଚ୍ଛ ଦେଇ ଓ ତାଙ୍କ କାନ୍ଧ ଉପରେ ଏକ ଉତ୍ତରୀୟ ଚଢ଼ାଇ ତାଙ୍କୁ ସମ୍ବର୍ଦ୍ଧିତ କଲେ । ତାର ପ୍ରତିବଦଳରେ ଅଟଳଜୀ ମଧ୍ୟ ରାଓଜୀଙ୍କ କାନ୍ଧ ଉପରେ ଏକ ଚାଦର ଚଢ଼ାଇ ତାଙ୍କୁ ସମ୍ମାନିତ କଲେ । ଏହି ସମୟରେ ସଭାଗୃହରୁ ବହୁ ସମୟ ଧରି ଉଲ୍ଲାସସୂଚକ କରତାଳି ଧ୍ୱନି ଶୁଣାଯାଇଥିଲା ।

**॥ ଅଟଳଜୀ ମୋର ଗୁରୁ : ରାଓ ॥**

ଶ୍ରୀ ନରସିଂହ ରାଓ ଏହି ଉତ୍ସବରେ ହିନ୍ଦୀରେ ନିଜର ଭାଷଣ ଆରମ୍ଭ କରି କହିଲେ : "ଅଟଳଜୀ ମୋର ଗୁରୁ"- (ବିପୁଳ ଉଲ୍ଲାସ ଓ କରତାଳି ଧ୍ୱନି)— "ଦିନେ ପାର୍ଲାଆମେଣ୍ଟର ସେଣ୍ଟ୍ରାଲ ହଲରେ ଚନ୍ଦ୍ରଶେଖରଜୀ (ପୂର୍ବତନ ପ୍ରଧାନମନ୍ତ୍ରୀ) ଅଟଳଜୀଙ୍କୁ 'ଗୁରୁଜୀ' ବୋଲି ସମ୍ବୋଧନ କଲେ । ସେତେବେଳେ ମୋର ମନେ ହେଲା, ମୋ ଜୀବନ ତ ଏମିତି ଏମିତି କଟିଗଲା । ମୁଁ କାହାରିକୁ ନିଜର ଗୁରୁ କରି ପାରିନାହିଁ । କୁହାଯାଏ ଯେ ବିନା ଗୁରୁରେ ଶିକ୍ଷା ପୂର୍ଣ୍ଣ ହୁଏ ନାହିଁ । ତେଣୁ ସେହି ଦିନଠାରୁ ମୁଁ ମଧ ଅଟଳଜୀଙ୍କୁ ନିଜର ଗୁରୁ କରିନେଲି । ଏହିପରି ଭାବରେ ମୁଁ ଗୁରୁହୀନ ହେବାର କଳଙ୍କକୁ ଧୋଇ ଦେଲି ।"

ନିଜର ଭାଷଣ ପ୍ରସଙ୍ଗରେ ସେ ଆହୁରି କହିଥିଲେ : ''ଗତ କୋଡ଼ିଏ ବର୍ଷ ହେଲା ମୁଁ ଅଟଳଜୀଙ୍କ ନିକଟ ସମ୍ପର୍କରେ (ଇଅର ନୈକଟ୍ୟ ନୁହେଁ, ଗଜର ନୈକଟ୍ୟ) ରହି ଆସିଛି । ତାଙ୍କ ବ୍ୟକ୍ତିତ୍ୱରେ ଏପରି କିଛି ଅଛି, ଯାହା ମୋତେ ବରାବର ଆକୃଷ୍ଟ କରିଛି, ଦୂରେଇ ଯିବାକୁ ଦେଇନାହିଁ । ତାଙ୍କର ଭାଷଣ ଶୁଣିବାକୁ ମୋତେ ଖୁବ୍ ଭଲ ଲାଗେ । ବେଳେବେଳେ ସଂସଦରେ ସେ ଏପରି କଠୋର ସମାଲୋଚନା କରିଥାନ୍ତି ଯେ, ତାହା ଆମକୁ ଖୁବ୍ ବାଧେ । ତଥାପି ସେଥିରେ ଥିବା ସୌହାର୍ଦ୍ଦ୍ୟ ସେ ବାଧାକୁ ଭୁଲେଇ ଦିଏ । ତାଙ୍କର ଭାଷଣ ରୌଦ୍ର ହୋଇଥିଲେ ବି ଶାନ୍ତ ରସର ଆଭାସ ଦେଇଥାଏ । କାରଣ ତାଙ୍କ ହୃଦୟରେ କଠୋରତା ନାହିଁ । ନିଜର ସଂବେଦନଶୀଳତା ଯୋଗୁ ଆମ ପକ୍ଷର ସଦସ୍ୟମାନେ ମଧ୍ୟ ତାଙ୍କ ଭାଷଣକୁ ବହୁତ ପସନ୍ଦ କରନ୍ତି ।''

**।। କବିତା ଓ ରାଜନୀତିର ଯୁଗଳବନ୍ଦୀ ।।**

ସୁମନଜୀ ତାଙ୍କ ଭାଷଣରେ ଅଟଳଜୀଙ୍କ କବିତାଗୁଡ଼ିକର ସମୀକ୍ଷା କରି ସେ ସବୁର ବୈଶିଷ୍ଟ୍ୟ ଦର୍ଶାଇଥିଲେ । ସେ କହିଥିଲେ ଯେ, ଏହି କବିତାଗୁଡ଼ିକରେ ସଂଗ୍ରାମଶୀଳତା, ସଂବେଦନଶୀଳତା, ସତ୍ୟନିଷ୍ଠା, ଆହ୍ୱାନ (ଚ୍ୟାଲେଞ୍ଜ), ବିଦ୍ରୋହ, ଯୁଗରୁଚି, ଭବିଷ୍ୟତ-ଦୃଷ୍ଟି, ଅନାସକ୍ତି ଓ ସ୍ଥିତପ୍ରଜ୍ଞତାର ଯେଉଁ ସମନ୍ୱୟ ଘଟିଛି ; ତାହା ଏକାନ୍ତ ଉଲ୍ଲେଖଯୋଗ୍ୟ । ଶ୍ରୀ ସୁଦର୍ଶନ, ଅଟଳଜୀଙ୍କ କେତୋଟି· କବିତା ପାଠ କରି ସେ ସବୁର ବଳିଷ୍ଠ ଭାଷା, ଭାବ ଓ ଶୈଳୀ ସମ୍ପର୍କରେ ଏକ ତାତ୍ତ୍ୱିକ ବ୍ୟାଖ୍ୟା ଶୁଣାଇଥିଲେ । ଶ୍ରୀ ସିଂହଭୀ ଅଟଳଜୀଙ୍କ କବିତାଗୁଡ଼ିକରେ ଭାବଗାମ୍ଭୀର୍ଯ୍ୟ ସହିତ ସରସତାର ପ୍ରାଚୁର୍ଯ୍ୟ ଥିବା ଦର୍ଶାଇଥିଲେ । ସଭାଧକ୍ଷ ବିଦ୍ୟାସାଗରଜୀ କହିଥିଲେ, ଦେଶର ରାଜନେତାମାନେ ଅଟଳଜୀଙ୍କ ପରି ଉଦାରଚେତା, ସହବେଦନଶୀଳ, ଦରଦୀ ଓ ସହୃଦୟ କାବ୍ୟାମୋଦୀ ହୋଇ ପାରିଲେ ଦେଶର ଚେହେରା ବଦଳିଯାଇ ପାରନ୍ତା । ଶେଷରେ ଅଟଳଜୀ ଅତ୍ୟନ୍ତ ବିନମ୍ରତା ସହକାରେ ନିଜର ବକ୍ତବ୍ୟ ପ୍ରକାଶ କରି ସମସ୍ତଙ୍କୁ କୃତଜ୍ଞତା ଜଣାଇଥିଲେ ଏବଂ ଶ୍ରୋତାମାନଙ୍କ ଅନୁରୋଧକ୍ରମେ ନିଜର ତିନୋଟି କବିତା ପାଠ କରିଥିଲେ ।

ସଭାଗାର ବାହାରେ କିତାବଘର ପ୍ରକାଶନ ସଂସ୍ଥା ପକ୍ଷରୁ ଲୋକାର୍ପିତ କବିତା ପୁସ୍ତକଟିର ଏକ ବିପଣୀ ଖୋଲାଯାଇଥିଲା । ଅଳ୍ପ ସମୟ ମଧ୍ୟରେ ହିଁ ପୁସ୍ତକର ବହୁ ସଂଖ୍ୟକ କପି ବିକ୍ରି ହୋଇଯିବାର ଦେଖାଯାଇଥିଲା । ପି.ଏ. ଶିବ କୁମାରଜୀଙ୍କ ଠାରୁ ପରେ ଜଣାଯାଇଥିଲା ଯେ, କୌଣସି ପୁସ୍ତକର ଲୋକାର୍ପଣ କାଳରେ ଇତିପୂର୍ବରୁ ଏତେ ସଂଖ୍ୟକ କପି ଆଉ କେବେ ବିକ୍ରୀ ହୋଇ ନଥିଲା ।

ଲୋକାର୍ପଣ ଉତ୍ସବର ପରଦିନ ଦେଶ-ବିଦେଶର ବହୁ ସମ୍ବାଦ ପତ୍ରରେ ଏହି ଉତ୍ସବର ବିବରଣୀ ଫଟୋ ସହ ଯଥେଷ୍ଟ ଗୁରୁତ୍ୱ ସହକାରେ ପ୍ରକାଶ ପାଇଥିଲା । ବହୁ ପତ୍ର-ପତ୍ରିକାରେ 'କବିତା ଓ ରାଜନୀତିର ଏହି ଯୁଗଳବନ୍ଦୀ'କୁ ସ୍ୱାଗତ କରାଯାଇ

ସପ୍ରଶଂସ ମନ୍ତବ୍ୟମାନ ମଧ ପ୍ରକାଶ କରାଯାଇଥିଲା । ଅଟଳଜୀଙ୍କର ଏହି କବିତା ସଂଚୟନଟି ଏତେ ଲୋକପ୍ରିୟ ହୋଇପାରିଛି ଯେ, 'ମେରୀ ଇକ୍ୟାବନ କବିତାଏଁ''ର ଇତିମଧରେ ସାତଟି ସଂସ୍କରଣ ହୋଇ ସାରିଲାଣି । ଏହା ବ୍ୟତୀତ ଗୁଜରାତୀ ଓ ମରାଠୀ ଇତ୍ୟାଦି କେତେକ ପ୍ରାନ୍ତୀୟ ଭାଷାରେ ମଧ ଏହାର ଅନୁବାଦ ପ୍ରକାଶ ପାଇ ସାରିଛି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ୧୯୯୮ ମାର୍ଚ୍ଚ ମାସରେ ଅଟଳଜୀ ଦ୍ୱିତୀୟଥରପାଇଁ ପ୍ରଧାନ ମନ୍ତ୍ରୀ ହେବା ପରେ ପୂର୍ବତନ ପ୍ରଧାନ ମନ୍ତ୍ରୀ ଶ୍ରୀ ପି.ଭି. ନରସିଂହ ରାଓଙ୍କ ଦ୍ୱାରା ଲିଖିତ ଇଂରାଜୀ ଉପନ୍ୟାସରେ (THE INSIDER) ଉନ୍ମୋଚନ ପାଇଁ ରାଜଧାନୀ ଦିଲ୍ଲୀରେ ଏପ୍ରିଲ ପ୍ରଥମ ସପ୍ତାହରେ ଯେଉଁ ଉତ୍ସବର ଆୟୋଜନ କରାଯାଇଥିଲା, ସେଥିରେ ଅଟଳଜୀହିଁ ତାର ଉନ୍ମୋଚକ ରୂପେ ଯୋଗ ଦେଇଥିଲେ । ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଭାବରେ ୧୯୯୫ର ପୂର୍ବୋକ୍ତ ଲୋକାର୍ପଣ ଉତ୍ସବକୁ ସ୍ମରଣ କରାଇ ଦେଇଥିଲା ।

### ।। ଏକାଦଶ ଲୋକସଭା ନିର୍ବାଚନ ।।

ଏକାଦଶ ଲୋକସଭା ନିର୍ବାଚନର କାର୍ଯ୍ୟସୂଚୀ ଘୋଷିତ ହେବା ପରେ ଅଟଳଜୀ ପୁନର୍ବାର ଲକ୍ଷ୍ନୌରୁ ନିଜର ପ୍ରାର୍ଥୀପତ୍ର ଦାଖଲ କଲେ । ଗୁଜରାତର ଗାନ୍ଧିନଗର ଆସନରୁ ମଧ ପାର୍ଟି ତାଙ୍କୁ ପ୍ରାର୍ଥୀ କରାଇଲା । ଗତ ନିର୍ବାଚନରେ ଶ୍ରୀ ଲାଲକୃଷ୍ଣ ଆଡଭାନି ଏଠାରୁ ନିର୍ବାଚିତ ହୋଇଥିଲେ । କିନ୍ତୁ ହାଓଲା ବ୍ୟାପାରରେ ତାଙ୍କର ନାମ ଡାଏରୀରେ ଉଲ୍ଲିଖିତ ହୋଇଥିବା କାରଣରୁ ସେ ନିଜ ଚରିତ୍ରବତ୍ତାର ପରିଚୟ ଦେଇ ନିଜର ଲୋକସଭା ସଭ୍ୟ ପଦରୁ ଇସ୍ତଫା ଦେବା ସଙ୍ଗେ ସଙ୍ଗେ ଏଥିରୁ ମୁକ୍ତ ନହେବା ପର୍ଯ୍ୟନ୍ତ ନିର୍ବାଚନ ଲଢ଼ିବେ ନାହିଁ ବୋଲି ଘୋଷଣା କରିଥିଲେ । ତେଣୁ ଏଠାରୁ ଅଟଳଜୀଙ୍କୁ ଠିଆ କରାଇବା ଲାଗି ପାର୍ଟି ନିଷ୍ପତ୍ତି କଲା ଏବଂ ତାଙ୍କୁ ଏଥର ଦୁଇଟି ଆସନରୁ ଲଢ଼ିବାକୁ ପଡ଼ିଲା । ଲକ୍ଷ୍ନୌ ତଥା ଗାନ୍ଧିନଗରରେ ସେ ପ୍ରାର୍ଥୀ ପତ୍ର ଦାଖଲ କଲାବେଳେ ଜନସାଧାରଣଙ୍କ ପକ୍ଷରୁ ତାଙ୍କ ପ୍ରତି ଯେଉଁ ବିପୁଳ ଜନ-ସମର୍ଥନର ସୂଚନା ମିଳିଥିଲା, ସେଥିରୁ ସ୍ପଷ୍ଟ ଅନୁମିତ ହୋଇଥିଲା ଯେ, ଉଭୟ ଆସନରୁହିଁ ସେ ଜିତିବେ । ଉଭୟ ସ୍ଥାନରେ ହଜାର ହଜାର ଲୋକ ସ୍ୱତଃସ୍ଫୂର୍ତ୍ତ ଭାବରେ ତାଙ୍କ ଶୋଭାଯାତ୍ରାରେ ସାମିଲ ହୋଇ ତାଙ୍କର ତଥା ଭାରତମାତାର ଓ ଭାରତୀୟ ଜନତା ପାର୍ଟିର ଜୟଧ୍ୱନିରେ ଗଗନ-ପବନ ମୁଖରିତ କରି ଦେଇଥିଲେ । ସବୁରି ମୁହଁରୁ ଶୁଣାଯାଇଥିଲା : 'ସବ ପର ଭାରୀ .... ଅଟଳ ବିହାରୀ', 'ହମାରା ପି.ଏମ. କୈସା ହୋ.... ଅଟଲ ବିହାରୀ ଜୈସା ହୋ', 'ପ୍ରଧାନମନ୍ତ୍ରୀ ଅଗଲି ବାରୀ.... ଅଟଳ ବିହାରୀ, ଅଟଳ ବିହାରୀ', ଲାଲ କିଲେ ପର କମଲ ନିଶାନ ... ମାଁଗ ରହି ହେ ହିନ୍ଦୁସ୍ଥାନ୍' ।

ଲକ୍ଷ୍ନୌରେ ସେଦିନ ଏକ ବିପୁଳ ଜନ ସମାବେଶକୁ ଉଦ୍‌ବୋଧନ ଦେଇ ଅଟଳଜୀ କହିଥିଲେ: ''ଆପଣମାନେ ମୋତେ ଗତ ଥର ନିଜର ପ୍ରତିନିଧି ରୂପେ ନିର୍ବାଚିତ କରାଇ ଲୋକସଭାକୁ ପଠାଇଥିଲେ। ମୁଁ ସେଠାରେ ନିଜର ଦାୟିତ୍ୱପୂର୍ଣ୍ଣ ସତର୍କତା ସହକାରେ ନର୍ବାହ କରିଛି। ଏକ ସଜାଗ ପ୍ରହରୀ ରୂପେ ମୁଁ ନିଜର ନିର୍ବାଚନମଣ୍ଡଳୀର ଯଥାସାଧ ସେବା କରିଛି ଓ ଉନ୍ନୟନ କାର୍ଯ୍ୟ ପାଇଁ ଯଥାସମ୍ଭବ ଅର୍ଥ ବ୍ୟବସ୍ଥା କରାଯିବା ଦିଗରେ ଯତ୍ନବାନ ହୋଇଛି। ଏ କ୍ଷେତ୍ରରେ କିଛି ସଫଳତା ମଧ ପାଇଛି। କିନ୍ତୁ ବର୍ଷ ବର୍ଷ ଧରି ଉପେକ୍ଷିତ ରହି ଆସିଥିବା ଏହି ନଗର ପାଇଁ ଯେତେ ପରିମାଣର ଅର୍ଥ ଆବଶ୍ୟକ, ତାକୁ ବିଚାର କଲେ, ମୋତେ କେନ୍ଦ୍ର ସରକାରଙ୍କଠାରୁ ଯାହା କିଛି ମିଳିଛି, ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି। ମୋତେ ଯଦି ଆପଣମାନେ ପୁନରାୟ ନିଜର ପ୍ରତିନିଧି ରୂପେ ସଂସଦକୁ ପଠାନ୍ତି, ତେବେ ମୁଁ ଦୁଇ ଗୁଣ ଶକ୍ତି ସହକାରେ ନିଜର ଉତ୍ତରଦାୟିତ୍ୱ ପାଳନ କରି ପାରିବି ବୋଲି ଆଶା କରୁଛି।''

ଲୋକେ ଉଚ୍ଚ ସ୍ୱରରେ ଧ୍ୱନି ଦେଉଥିଲେ : ''ହମାରା ପି.ଏମ୍. କୈସା ହୋ.... ଅଟଲ ବିହାରୀ ଯୈସାଁ ହୋ '' ଅଟଳଜୀ ହସି ହସି କହିଲେ : '' ଆରେ ଭାଇ, ପହଲେ ଏମ୍.ପି ବନାଓ, ତବ୍‌ଭୀ ତୋ ପି.ଏମ୍ ବନ୍ ସକେଗା !'' ଆହୁରି ଉତ୍ସାହରେ ଲୋକେ ତାଙ୍କର, ତାଙ୍କ ଦଳର ତଥା ଭାରତ ମାତାର ଜୟଧ୍ୱନି କରି ଚାଲିଥିଲେ।

**॥ ଦେଶବାସୀଙ୍କୁ ନିବେଦନ ॥**

ଏହି ନିର୍ବାଚନ କାଳରେ ଅଟଳଜୀଙ୍କର ଏକ ନିବେଦନ ବି.ଜେ.ପି ପକ୍ଷରୁ ଦେଶର ପ୍ରାୟ ସବୁ ସମ୍ବାଦପତ୍ରରେ ବିଜ୍ଞାପନ ଭାବରେ ପ୍ରକାଶ କରାଯାଇଥିଲା। ତାକୁ ଏଠାରେ ପୁନରୁଦ୍ଧାର କରାଯାଉଛି।

''ପ୍ରିୟ ବନ୍ଧୁଗଣ,

ନମସ୍କାର।

ବର୍ତ୍ତମାନ୍ ଆମେ ପୁଣି ଥରେ ଇତିହାସର ମୋଡ଼ ଉପରେ ଠିଆ ହୋଇଛେଁ। ଆମକୁ ସ୍ଥିର କରିବାକୁ ପଡ଼ିବ : କେଉଁ ଦିଗରେ ଆମେ ଯିବା। ଆମର ଲକ୍ଷ୍ୟ କ'ଣ ହେବା ଉଚିତ। ଏହା ସ୍ଥିର କଲାବେଳେ ଆମେ କେବଳ ଗତ ପାଞ୍ଚ ବର୍ଷ ଉପରେ ଦୃଷ୍ଟି ନ ଦେଇ, ଗତ ୫୦ବର୍ଷର କୁଶାସନ ଓ ତାର ପରିଣାମ ଉପରେ ମଧ ଦୃଷ୍ଟି ଦେବା ଆବଶ୍ୟକ।

ଭାରତ ଏକ ପ୍ରାଚୀନ ରାଷ୍ଟ୍ର। ଆମର ସଭ୍ୟତା ଓ ସଂସ୍କୃତି ପାଞ୍ଚ ହଜାର ବର୍ଷରୁ ଅଧିକ ପୁରୁଣା। ଆମ ଦେଶରେ ଅମୂଲ୍ୟ ଆଧ୍ୟାତ୍ମିକ, ସାଂସ୍କୃତିକ ଓ ଭୌତିକ ସମ୍ପଦ ପୂରି ରହିଛି। ତା' ସତ୍ତ୍ୱେ ଆମ ଦେଶ ଏତେ ଦରିଦ୍ର କାହିଁକି ? କାହିଁକି ଆମ ଦେଶ ଏତେ ବିପୁଳ ଋଣ ଭାରରେ ବୁଡ଼ି ରହିଛି ? ଦେଶ ଭିତରେ ଏତେ ବେକାରୀ,

ଅଶିକ୍ଷା, ଅସ୍ୱାସ୍ଥ୍ୟ, ଦୁର୍ମୂଲ୍ୟତା ଓ ସବୁ କ୍ଷେତ୍ରରେ ଏତେ ଅଭାବ ଅନଟନ ଭରି ରହିଛି କାହିଁକି ? ସରକାରୀ ତଥା ପ୍ରଶାସନ ଓ ରାଜନୀତିକ କ୍ଷେତ୍ରରେ ଏତେ ଦୁର୍ନୀତି ଓ ଭ୍ରଷ୍ଟାଚାର କାହିଁକି ? ଅବସ୍ଥାର ପରିବର୍ତ୍ତନ ପାଇଁ ଆମକୁ ବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ପଡ଼ିବ । ଏହି ସବୁ ଭ୍ରଷ୍ଟ, ନୀତିହୀନ, ଅପାରଗ, ନିଷ୍କର୍ମା ସରକାର ବଦଳରେ ଏକ-ମର୍ଯ୍ୟାଦାବନ୍ତ, ସୁସମର୍ଥ, କର୍ମକ୍ଷମ ଓ ସମ୍ବେଦନଶୀଳ ସରକାର ପ୍ରତିଷ୍ଠା ନିମନ୍ତେ ଉପଯୁକ୍ତ ଦଳ ଓ ପ୍ରାର୍ଥୀମାନଙ୍କୁ ଭୋଟ ଦେଇ ଜିତାଇବାକୁ ପଡ଼ିବ ।

ଭାରତୀୟ ଜନତା ପାର୍ଟି ଆଜି ଦେଶବାସୀଙ୍କ ଆଗରେ ଏକ ନୂତନ ବିକଳ୍ପ ରୂପେ ଉଭା ହୋଇଛି । ଆପଣମାନଙ୍କ ସମର୍ଥନରେ ଏହା ଏକାକୀ ଦେଶରେ ଏକ ସ୍ଥାୟୀ ତଥା ଉତ୍ତରଦାୟୀ ସରକାର ଗଢ଼ିବାକୁ ଆଜି ସଂପୂର୍ଣ୍ଣ ସମର୍ଥ । ଦେଶରୁ ଦାରିଦ୍ର୍ୟର ବିଲୋପ ସାଧନ କରିବା, ଅଧିକରୁ ଅଧିକ ଲୋକଙ୍କ ରୋଜଗାର ବ୍ୟବସ୍ଥା କରିବା, ସମାଜରୁ ସମସ୍ତ ପ୍ରକାର ବୈଷମ୍ୟ ହଟାଇବା ଏବଂ ରାଷ୍ଟ୍ରକୁ ନିଜ ଗୋଡ଼ରେ ଠିଆ କରାଇ ପ୍ରଗତି ପଥରେ ଆଗେଇ ନେବା ନିମନ୍ତେ ଭାରତୀୟ ଜନତା ପାର୍ଟି ଏକ ନୂତନ ଅର୍ଥ ବ୍ୟବସ୍ଥାର ନକ୍‌ସା ନେଇ ଆସିଛି । ଏହାର ଆଧାର ହେବ ସ୍ୱାବଲମ୍ବନଶୀଳତା । ଆମେ ସ୍ୱଦେଶୀ ମନ୍ତ୍ରର ପୁନର୍ଜାଗରଣ କରାଇ ଏପରି ଏକ ଅର୍ଥ ବ୍ୟବସ୍ଥା ଗଢ଼ି ତୋଳିବୁଁ, ଯାହା ଶୋଷଣରୁ ମୁକ୍ତ ଏବଂ ସଂତୁଳିତ ବିକାଶ ସହିତ ଯୁକ୍ତ ହୋଇ ରହିବ ।

ଭାରତୀୟ ଜନତା ପାର୍ଟି ପନ୍ଥ-ନିରପେକ୍ଷ ଶାସନର ଆଦର୍ଶରେ ବିଶ୍ୱାସ କରେ । ଆମେ ଦେଶରେ ଏପରି ଏକ ଶାସନ ବ୍ୟବସ୍ଥା ଗଢ଼ି ତୋଳିବୁଁ, ଯେଉଁଥିରେ କୌଣସି ପ୍ରକାର ଭେଦଭାବ ଅଥବା ପକ୍ଷପାତ ରହିବ ନାହିଁ । ଯେଉଁ ଯେଉଁ ରାଜ୍ୟରେ ଆମ ଦଳର ସରକାର ରହିଛି, ସେଠାରେ ସାଂପ୍ରଦାୟିକ ଦଙ୍ଗା ଓ ଉତ୍ତେଜନା ଅନ୍ୟାନ୍ୟ ରାଜ୍ୟ ତୁଳନାରେ କମ୍ ହୋଇଛି, ଜାତିଆଣ ସଂଘର୍ଷ ବିଲୋପ କରାଯାଇଛି, ସମାଜରେ ଶାନ୍ତି ଓ ଭାଇଚାରାର ଭାବନା ବଢ଼ିଛି । ଏହି ପ୍ରକାର ରାଜଧର୍ମ ସର୍ବତ୍ର ପାଳନ କରିବା ଲାଗି ଆମେ ଅଙ୍ଗୀକାରବଦ୍ଧ ।

**॥ ସମୟର ଆହ୍ୱାନ ॥**

ଆମ ପାଇଁ ଏ ଲଢ଼ାଇ କ୍ଷମତାର ଲଢ଼ାଇ ନୁହେଁ । କ୍ଷମତାକୁ ଆମେ ଏକ ସାଧନ ରୂପେ ସ୍ୱୀକାର କରୁଁ, କିନ୍ତୁ ସାଧ ନୁହେଁ । ଆମ ପାଇଁ ଏହା ଏକ ମାର୍ଗ, କିନ୍ତୁ ଲକ୍ଷ୍ୟ ନୁହେଁ । ଗତ ପାଞ୍ଚ ଦଶକ ଧରି ଆମେ ମାତୃଭୂମିର ସାଧନାରେ ବ୍ୟାପୃତ ରହି ଆସିଛୁଁ । ଆମ ଦୃଷ୍ଟିରେ ଏକ ମହାନ ଭାରତର ସ୍ୱପ୍ନ ରହି ଆସିଛି— ଏପରି ଏକ ଦେଶ, ଯେଉଁଠି ଲୋକେ ଭୟମୁକ୍ତ ରହିବେ; କିନ୍ତୁ କ୍ଷୁଧାରେ ପୀଡ଼ିତ ହେବେ ନାହିଁ ।

ଆସନ୍ତୁ.... ଭବିଷ୍ୟତ୍‌ର ଆହ୍ୱାନଗୁଡ଼ିକୁ ମୁକାବିଲା କରିବା ଏବଂ ବର୍ତ୍ତମାନକୁ ସୁସଂବଦ୍ଧ କରିବା ଲାଗି ଆମେ କାନ୍ଧକୁ କାନ୍ଧ ଆଉ ପାଦକୁ ପାଦ ମିଳାଇ ଆଗେଇ

ଚାଲିବା । ଏହା ହିଁ ଆଜି ସମୟର ଆହ୍ୱାନ । ଏକ ପରିବର୍ତ୍ତନର ଲଗ୍ନ ଆଜି ଉପଗତ ହୋଇଛି । ଭାରତ ମହାସାଗରରୁ ଉଠୁଥିବା ଲହରଗୁଡ଼ିକୁ ଆଜି ଆମକୁ ହିମାଳୟ ପର୍ଯ୍ୟନ୍ତ ନେଇ ଯିବାକୁ ହେବ । ଲୋକସଭାରେ ସଂପୂର୍ଣ୍ଣ ବହୁମତ ହାସଲ କରି ଦେଶର ପୁନଃନିର୍ମାଣ କାର୍ଯ୍ୟକୁ ଆଜି ଆମକୁ ସଂପୂର୍ଣ୍ଣ କରିବାକୁ ପଡ଼ିବ । ଭାଜପାର ଏହି ମହାନ କାର୍ଯ୍ୟରେ ଆପଣମାନଙ୍କର ସହଯୋଗ ଲୋଡ଼ା ।''

**॥ ଉଭୟ ଆସନରୁ ବିଜୟ ॥**

ଅଟଳଜୀଙ୍କୁ ଏହି ନିର୍ବାଚନରେ ହରାଇବା ପାଇଁ କଂଗ୍ରେସ, ଜନତାଦଳ, ଦୁଇ କମ୍ୟୁନିଷ୍ଟ ଦଳ, ସମାଜବାଦୀ ଦଳ ତଥା ଅନ୍ୟମାନେ ସବୁ ପ୍ରକାର କୌଶଳ ଓ ଷଡ଼ଯନ୍ତ୍ର ପ୍ରୟୋଗ କରିଥିଲେ । କିନ୍ତୁ ଶେଷରେ ସେ ଉଭୟ ସ୍ଥାନରୁ ବିପୁଳ ଭୋଟାଧିକ୍ୟରେ ବିଜୟୀ ହେଲେ । ଲକ୍ଷ୍ନୌରେ ସେ ତାଙ୍କର ନିକଟତମ ପ୍ରତିଦ୍ୱନ୍ଦ୍ୱୀଙ୍କୁ ୧ଲକ୍ଷ ୧୮ହଜାର ଭୋଟରେ ପରାସ୍ତ କଲେ । ଗାନ୍ଧିନଗରରୁ ମଧ୍ୟ ସେ ଲକ୍ଷାଧିକ ଭୋଟରେ ଜୟଲାଭ କଲେ । ତାଙ୍କ ବିଜୟ ଯୋଗୁ ଏଣେ ଭାରତୀୟ ଜନତା ପାର୍ଟି ଓ ତାର ସହଯୋଗୀ ତଥା ବନ୍ଧୁ ମହଲରେ ବ୍ୟାପକ ଉତ୍ସାହ ଓ ଉଲ୍ଲାସର ଲହରୀ ଖେଳିଗଲା ବେଳେ ତେଣେ ଭାଜପାବିରୋଧୀ ଶିବିରରେ ଆତଙ୍କର ଛାୟା ଘୋଟିଯାଇଥିଲା ।

**॥ ଭାଜପା ବୃହତ୍ତମ ଦଳ ॥**

ଏକାଦଶ ଲୋକସଭା ନିର୍ବାଚନରେ ଭାରତୀୟ ଜନତା ପାର୍ଟି ଲୋକସଭାର ସବୁଠାରୁ ବଡ଼ ଦଳ ରୂପେ ହିଁ ନିର୍ବାଚିତ ହୋଇଥିଲା । ଭାଜପାର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ କଂଗ୍ରେସ ଦଳ ତାର ବହୁ ପଛରେ ପଡ଼ି ଯାଇଥିଲା । ନିର୍ବାଚନର ଦୀର୍ଘ ୪୫ବର୍ଷ-ବ୍ୟାପୀ ଇତିହାସରେ ଭାଜପା ଏଥର ଏକ ନୂତନ ଶକ୍ତି ଓ ସାମର୍ଥ୍ୟର ପରିଚୟ ଦେଇ ପାର୍ଲିଆମେଣ୍ଟରେ ଉପସ୍ଥିତ ହେଲା । କେବଳ ୧୯୭୭ ନିର୍ବାଚନକୁ ଛାଡ଼ି ଦେଲେ କଂଗ୍ରେସ ଦଳ ଅନ୍ୟ ସବୁ ଥର ନିର୍ବାଚନରେ ସବୁଠାରୁ ବଡ଼ ଦଳ ରୂପେ ନିର୍ବାଚିତ ହୋଇ ଆସୁଥିଲା । ତାର ସେ ଆଧିପତ୍ୟକୁ ଖର୍ବ କରି ଭାଜପା ଏଥର ନୂତନ ଇତିହାସ ସୃଷ୍ଟି କଲା । ୧୯୭୭ରେ ଜନତା ପାର୍ଟି ସବୁଠାରୁ ବଡ଼ ଦଳ ରୂପେ ନିର୍ବାଚିତ ହୋଇଥିଲେ ମଧ୍ୟ, ଏହା ବସ୍ତୁତଃ ଗୋଟିଏ ଦଳ ନଥିଲା ; ଜନସଂଘ, ସୋସିଆଲିଷ୍ଟ ପାର୍ଟି, ସଂଗଠନ କଂଗ୍ରେସ, ଭାରତୀୟ କ୍ରାନ୍ତି ଦଳ, ସି.ଏଫ୍.ଡ଼ି. ଇତ୍ୟାଦି ଦଳର ଏକ ଗଠ-ବନ୍ଧନ ଥିଲା । ସେ ଦୃଷ୍ଟିରୁ ୧୯୯୬ ନିର୍ବାଚନରେ ଭାଜପାର ସାଫଲ୍ୟ ଐତିହାସିକ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା ।

ଏକାଦଶ ଲୋକସଭାରେ ଭାରତୀୟ ଜନତା ପାର୍ଟିର ସଦସ୍ୟ ସଂଖ୍ୟା ୧୬୧ ହୋଇଥିବା ବେଳେ କଂଗ୍ରେସ ଦଳର ସଭ୍ୟ ସଂଖ୍ୟା ମାତ୍ର ୧୩୬ରେ ସୀମିତ ରହିଥିଲା ।

## ।। କ୍ଲାଇମେକ୍ସ : ଆଣ୍ଟି କ୍ଲାଇମେକ୍ସ ।।

ଏକାଦଶ ଲୋକସଭାର ନିର୍ବାଚନ ପ୍ରକ୍ରିୟା ଶେଷ ହେବା ପରେ ଗୃହର ବୃହତ୍ତମ ଦଳ ଭାରତୀୟ ଜନତା ପାର୍ଟିର ନବନିର୍ବାଚିତ ସାଂସଦମାନଙ୍କର ବୈଠକ ବସି ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀଙ୍କୁ ହିଁ ସର୍ବ ସମ୍ମତିକ୍ରମେ ପୁର୍ନବାର ନେତା ନିର୍ବାଚିତ କରାଗଲା। ପୂର୍ବ ସଦନରେ ମଧ୍ୟ ସେ ମୁଖ୍ୟ ବିରୋଧୀ ଦଳ ଭାଜପାର ସଂସଦୀୟ ଦଳ ନେତା ରୂପେ ଲୋକସଭାର ବିରୋଧୀ ଦଳ ନେତା ହୋଇଥିଲେ। ଏଥର ତାଙ୍କର ପ୍ରଧାନମନ୍ତ୍ରୀ ହେବାର କଥା। କାରଣ ତାଙ୍କ ଦଳ ନିର୍ବାଚନରେ ପୂର୍ଣ୍ଣ ବା ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ କରି ନଥିଲେ ମଧ୍ୟ ଏକକ ବୃହତ୍ତମ ଦଳ ରୂପେ ନିର୍ବାଚିତ ହୋଇଛି। ତେଣୁ ନ୍ୟାୟ ଓ ପରମ୍ପରା ଦୃଷ୍ଟିରୁ ରାଷ୍ଟ୍ରପତି କେନ୍ଦ୍ରରେ ମନ୍ତ୍ରିମଣ୍ଡଳ ଗଢ଼ିବା ନିମନ୍ତେ ତାଙ୍କୁ ହିଁ ପ୍ରଥମ ନିମନ୍ତ୍ରଣ କରିବା କଥା। କିନ୍ତୁ କଂଗ୍ରେସ, ଜନତା ଦଳ, ଦୁଇ କମ୍ୟୁନିଷ୍ଟ ଦଳ ଏବଂ ମିଳିତ ସାମ୍ମୁଖ୍ୟର ଅନ୍ୟ କେତେକ ଦଳ ତାହା କରାଇ ଦେବାକୁ ଚାହାନ୍ତି ନାହିଁ। ସମସ୍ତଙ୍କର ଦୃଷ୍ଟି ଏବେ ରାଷ୍ଟ୍ରପତି ଭବନ ଉପରେ : ସେ କ'ଣ ଏହି ଦଳଗୁଡ଼ିକର ନେତାମାନଙ୍କ ଚାପର ଶିକାର ହେବେ ନା ନ୍ୟାୟ ଓ ପରମ୍ପରାର ଖାତିରରେ ଅଟଳଜୀଙ୍କୁ ସରକାର ଗଢ଼ିବା ପାଇଁ ଡାକିବେ ? ସାରା ଦେଶରେ ସର୍ବତ୍ର ପ୍ରବଳ ଉତ୍କଣ୍ଠା ଓ ସଂଶୟ। ନୂଆ ଦିଲ୍ଲୀର ରାୟସୀନା ରୋଡ଼ ସ୍ଥିତ ୬ନମ୍ବର ବଙ୍ଗଳା ଅର୍ଥାତ୍ ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ସରକାରୀ ବାସଭବନ ବି ସେଥିରୁ ମୁକ୍ତ ନୁହେଁ।

୧୯୯୬ ମସିହା ମେ'ମାସ ୧୫ତାରିଖ– ଦିନ ଦି'ଟା ବାଜିବାକୁ ଯାଉଛି। ଅଟଳଜୀଙ୍କ ପି.ଏ ଶିବକୁମାରଜୀ ବସିଛନ୍ତି ନିଜ ପ୍ରକୋଷ୍ଠରେ; ମୁଖମଣ୍ଡଳରେ ଉତ୍କଣ୍ଠାର ଚିହ୍ନ ସୁସ୍ପଷ୍ଟ; ପାଖରେ ଉତ୍କଣ୍ଠିତ ଟେଲିଫୋନ୍। ଚାରିଆଡ଼େ ଗୁମ୍‌ସୁମ୍ ପରିସ୍ଥିତି। ହଠାତ୍ ଟେଲିଫୋନ୍ ବାଜି ଉଠିଲା...... କିଛି କଥାବାର୍ତ୍ତା... ପରେ ପରେ ଅନ୍ୟ ଟେଲିଫୋନ୍‌ଗୁଡ଼ିକ ମଧ୍ୟ ବାଜି ଉଠିଲେ ଅଧୀର ଭାବରେ...ବାହାରୁ କୋଠରୀ ଭିତରକୁ ପଶି ଆସିଲା ଖୁସୀରେ ଅଧୀର ଜୟପ୍ରକାଶ, ଖବର ଦେଲା- ''ସାହେବ ଆଗୟେ ହେଁ। ହାଥ୍ ମେ ଫୁଲମାଲାଏଁ ଲିଏ ହେଁ।''

ତା' ପରେ ପରେ ଜଣାଗଲା ଯେ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମା ଅଟଳଜୀଙ୍କୁ ସରକାର ଗଢ଼ିବା ପାଇଁ ନିମନ୍ତ୍ରଣ ଦେଇଛନ୍ତି-- ଆସନ୍ତା କାଲି ଦିନ ବାରଟା ବେଳେ ସେ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କରିବେ।

ଚାରିଆଡ଼େ ଆରମ୍ଭ ହୋଇଗଲା ବିପୁଳ ଆନନ୍ଦ-ଉଲ୍ଲାସର ମହାପର୍ବ। ରାସ୍ତାରେ ରାସ୍ତାରେ ଆତସବାଜୀ, ମିଠେଇ ବଣ୍ଟା, ନାଚ, ଗୀତ, ବାଦ୍ୟରୋଳ, ଅଭିର ବୋଳାବୋଳି, ଫୁଲ ଦିଆ-ନିଆ ଏବଂ ଆନନ୍ଦଉଚ୍ଛୁଳା କୋଳାକୋଳି ଇତ୍ୟାଦି କେତେ କ'ଣ ! ମୁହୂର୍ତ୍ତକ ମଧ୍ୟରେ ସମଗ୍ର ଦିଲ୍ଲୀ ଏବଂ ପରେ ପରେ ସମଗ୍ର ଦେଶର ପୁର-ପଲ୍ଲୀ ସବୁ ଆଡ଼କୁ

ସଂଚାରିତ ହୋଇଗଲା ସେହି ମହା ଉଲ୍ଲାସର କଳରୋଳ..... ସେହି ଆନନ୍ଦ-ଉଚ୍ଛୁଳା ବାତାବରଣ ।

ମାତ୍ର କେତେ ମିନିଟ୍ ମଧ୍ୟରେ ଅଟଳଜୀଙ୍କ ବାସଭବନ ପରିସର ମଧ୍ୟରେ ଏସ୍.ପି.ଜି. ବ୍ୟବସ୍ଥା ସହିତ ଲନ୍‌ରେ ଧାଡ଼ି ଧାଡ଼ି ସୋଫା ଓ ଚୌକି, ବିଶାଳ ସାମିଆନା, ତମ୍ବୁ, ମାଇକ୍ ଇତ୍ୟାଦିର ବ୍ୟବସ୍ଥା ହୋଇଗଲା ।

✠ ✠ ✠ ✠ ✠

ସେଦିନ ପୂର୍ବାହ୍ଣରେ ରାଷ୍ଟ୍ରପତି ଡଃ ଶର୍ମା କେତେକ ପରାମର୍ଶ ପାଇଁ ଅଟଳଜୀଙ୍କୁ ଡକାଇଥାନ୍ତି । ତାଙ୍କୁ ଦିଆଯାଇଥିବା ପତ୍ରରେ କେବଳ ଏତିକି ଲେଖାଯାଇଥିଲା ଯେ ନିର୍ବାଚନ ଫଳାଫଳ ସଂକ୍ରାନ୍ତରେ ପରାମର୍ଶ ପାଇଁ ରାଷ୍ଟ୍ରପତି ଡାକିଛନ୍ତି । ଯଥା ସମୟରେ ଅଟଳଜୀ ପହଞ୍ଚିଲେ ରାଷ୍ଟ୍ରପତି ଭବନରେ । ଚାରିଆଡ଼େ ସଂଶୟପୂର୍ଣ୍ଣ ଗୁମସୁମ ବାତାବରଣ ରହିଥିଲେ ମଧ୍ୟ ଅଟଳଜୀଙ୍କ ମୁଖମଣ୍ଡଳ ଥିଲା ଯୋଗୀସୁଲଭ ବା ଭାବଲେଶହୀନ । ସେଠାରେ ପହଞ୍ଚି ସେ ରାଷ୍ଟ୍ରପତିଙ୍କୁ କହିଲେ: ''ପରାମର୍ଶ ଆଉ କ'ଣ ? ବର୍ତ୍ତମାନ୍ ତ କେବଳ ସରକାର ଗଢ଼ିବା ପାଇଁ ନିମନ୍ତ୍ରଣ ଦେବାକୁ ଡକାଇବାର କଥା ।'' ତାଙ୍କ ମୁହଁରୁ କଥା ନ ସରୁଣୁ ରାଷ୍ଟ୍ରପତି ଡଃଶର୍ମା ନିଜ ପକେଟରୁ ତାଙ୍କର ଚିଠି ସମ୍ବଳିତ ଏକ ଲଫାପା ଅଟଳଜୀଙ୍କ ହାତକୁ ବଢ଼ାଇ ଦେଇ କହିଲେ : ''ଏଇ ନିଅନ୍ତୁ ଆପଣଙ୍କର ଚିଠି -- ସରକାର ଗଢ଼ିବା ପାଇଁ ନିମନ୍ତ୍ରଣ ।'' ଲଫାପା ଖୋଲି ଅଟଳଜୀ ଚିଠି ପଢ଼ିଲେ ଏବଂ ରାଷ୍ଟ୍ରପତିଙ୍କୁ କହିଲେ : ''ମୁଁ ଆପଣଙ୍କର ଏହି ନିମନ୍ତ୍ରଣକୁ ସ୍ୱୀକାର କରୁଛି ।'' (ସ୍ୱୀକାର ହୈ)

**॥ ହୋଲି ଓ ଦିଆଲି - ଏକା ସାଙ୍ଗରେ ॥**

ଅଟଳଜୀଙ୍କ ପ୍ରଧାନମନ୍ତ୍ରିତ୍ୱର ନୂଆ ସରକାର ଗଠିତ ହେଉଥିବା ଖବର ପ୍ରଚାରିତ ହୋଇଯିବା ମାତ୍ରେ ଦେଶର ପ୍ରତ୍ୟେକ କୋଣ ଅନୁକୋଣରେ ବିପୁଳ ଆନନ୍ଦ-ଉତ୍ସାହର ଲହରୀ ଖେଳିଗଲା । ଚାରିଆଡୁ ତାଙ୍କୁ ସ୍ୱାଗତ ଜଣାଇ ଟେଲିଫୋନ୍, ଟେଲିଗ୍ରାମ, ଫାକ୍ସ ଯୋଗେ ବାର୍ତ୍ତାମାନ ଆସି ପହଞ୍ଚିବାରେ ଲାଗିଲା । ଅଟଳଜୀଙ୍କ ବାସଭବନ ସାମ୍ନା ରାସ୍ତାରେ ପ୍ରବଳ ଲୋକଭିଡ଼ ଏବଂ ତାକୁ ନିୟନ୍ତ୍ରଣ କରିବା ପାଇଁ ବ୍ୟାପକ ଟ୍ରାଫିକ୍ ବନ୍ଦୋବସ୍ତ । ସବୁଠି ବିପୁଳ ଆନନ୍ଦ-ଉତ୍ସାହର ବାତାବରଣ । ଘରର ଡ୍ରଇଂରୁମରେ ଅଟଳଜୀ ଶ୍ରଦ୍ଧାଳୁ ଲୋକମାନଙ୍କର ଅଭିନନ୍ଦନ ଗ୍ରହଣ କରିବା ଓ କୃତଜ୍ଞତା ଜଣାଇବାରେ ବ୍ୟସ୍ତ । ଘର ଭିତରେ, ବାରଣ୍ଡାରେ, ଲନରେ ଉପସ୍ଥିତ ଅଛନ୍ତି ଏବଂ ପ୍ରତି ମୁହୂର୍ତ୍ତରେ ଆସି ପହଞ୍ଚୁଛନ୍ତି ଭାଜପା ତଥା ଏହାର ସହଯୋଗୀ ଦଳଗୁଡ଼ିକର ନେତୃବୃନ୍ଦ- ଲାଲକୃଷ୍ଣ ଆଡଭାନି, ମୁରଲୀ ମନୋହର ଯୋଶୀ, ବିଜୟାରାଜେ ସିନ୍ଧିଆ, ସୁନ୍ଦର ସିଂହ ଭଣ୍ଡାରୀ, ମଦନଲାଲ ଖୁରାନା, ସୁଷମା ସ୍ୱରାଜ, ପ୍ରମୋଦ ମହାଜନ, ଜର୍ଜ ଫର୍ଣ୍ଣାଣ୍ଡେଜ, ପ୍ରକାଶ

ସିଂହ ବାଦଲ, ନୀତିଶ କୁମାର, ଗୋବିନ୍ଦାଚାର୍ଯ୍ୟ, କଲ୍ୟାଣ ସିଂହ, ବିଜୟ କୁମାର ମାଲହୋତ୍ରା, କେ. ଆର. ମାଲକାନି, କୁଶାଭାଉ ଠାକରେ, ଭେଙ୍କିଆ ନାଇଡୁ, ବିଷ୍ଣୁକାନ୍ତ ଶାସ୍ତ୍ରୀ ପ୍ରମୁଖ। ହସ ଖୁସିରେ ଉଜ୍ଜ୍ୱଳ ସବୁରି ମୁଖମଣ୍ଡଳ। କେତେକଙ୍କ ଆଖିରେ ଆନନ୍ଦାଶ୍ରୁ।

ହତା ଭିତରେ ଚାଲିଛି ସାମ୍ବାଦିକ ଓ କ୍ୟାମେରାମ୍ୟାନମାନଙ୍କ ଧାଁ ଦଉଡ଼। ହତା ବାହାରେ ରାସ୍ତା ଉପରେ ଚାଲିଛି ଅଗଣିତ ଜନତାର ନିରବଚ୍ଛିନ୍ନ ଜୟଧ୍ୱନି ଏବଂ ଗୀତ,ନାଚ ବାଦ୍ୟ, ବାଣଫୁଟା ଓ ଅବିର ବୋଳାବୋଳିର ମହୋତ୍ସବ, ତା'ରି ଭିତରେ କେତେବେଳେ ନଇଁ ଆସିଲା ସଂଧ୍ୟାର ଅନ୍ଧକାର.... ଦିଲ୍ଲୀ, ମହାନଗରୀର ବିଭିନ୍ନ ରାସ୍ତାରେ ଓ ବହୁ କୋଠାଘରେ ଜଳି ଉଠିଲା ରଙ୍ଗ ବେରଙ୍ଗର ଆଲୋକମାଳା, ସ୍ଥାନେ ସ୍ଥାନେ ରଙ୍ଗ ବେରଙ୍ଗର ଆତସବାଜି। ସତେ ଯେମିତି ଆଜି ହଠାତ୍ ଦିଲ୍ଲୀର ଲୋକେ ଏକାସାଙ୍ଗରେ ହୋଲୀ ଓ ଦିଆଲି ମନାଉଛନ୍ତି। ଅତୀତରେ ବହୁ ବାର ନୂଆ ସରକାର ଗଠନର ଆନନ୍ଦମୟ ଅବସର ଦେଖିବାକୁ ମିଳିଛି। କିନ୍ତୁ ଏପରି ଏକ ସ୍ୱତଃସ୍ଫୂର୍ତ୍ତ ଉତ୍ସାହ ଓ ଉଲ୍ଲାସର ବାତାବରଣ ଇତିପୂର୍ବରୁ କେବେ ଦେଖିବାକୁ ମିଳି ନଥିଲା। ସେଦିନ ବହୁ ସଂବାଦପତ୍ରର ସାଂଧ୍ୟ ତଥା ପ୍ରଭାତୀ ସଂସ୍କରଣରେ ଏହାର ବିସ୍ତାରିତ ବିବରଣୀ ଚିତ୍ର ସହ ପ୍ରକାଶ ପାଇଥିଲା। କେବଳ ଦିଲ୍ଲୀ ନୁହେଁ, ଲକ୍ଷ୍ନୌ, ଜୟପୁର, ମୁମ୍ବାଇ, ଭୋପାଳ, ଅହମ୍ମଦାବାଦ, କଲିକତା ପ୍ରଭୃତି ସହରରେ ମଧ ଅନୁରୂପ ଉତ୍ସାହ ଓ ଉଲ୍ଲାସର ଦୃଶ୍ୟ ଦେଖିବାକୁ ମିଳିଥିଲା। ପରଦିନ ସକାଳେ ମଧ ଅଟଳଜୀଙ୍କ ବାସଭବନର ପରିସର ଭିତରେ ତଥା ବାହାରେ ଅଗଣିତ ଶ୍ରଦ୍ଧାଳୁ ଜନତାର ଅସମ୍ଭବ ଭିଡ଼। କେବଳ ଲକ୍ଷ୍ନୌରୁ ପ୍ରାୟ ୫ହଜାର ଲୋକ ଆସି ପହଞ୍ଚିଥିଲେ ନିଜର ପ୍ରିୟ ପ୍ରତିନିଧିଙ୍କୁ ହୃଦୟର ସଦିଚ୍ଛାଭରା ଅଭିନନ୍ଦନ ଜଣାଇବାକୁ।

**॥ ଶପଥ ଗ୍ରହଣ ସମାରୋହ ॥**

୧୯୯୬ ମେ ୧୬ତାରିଖ ମଧ୍ୟାହ୍ନ ବାରଟା..... ଦେଶର ନୂଆ ପ୍ରଧାନମନ୍ତ୍ରୀ ରୂପେ ଶ୍ରୀଯୁକ୍ତ ଅଟଳବିହାରୀ ବାଜପେୟୀ ତଥା ତାଙ୍କ ମନ୍ତ୍ରିମଣ୍ଡଳର ଶପଥ ଗ୍ରହଣ ପାଇଁ ନିର୍ଦ୍ଧାରିତ ସମୟ। ରାଷ୍ଟ୍ରପତି ଭବନର ଅଶୋକା ହଲ ଭରପୁର। ଭିତରେ ତଥା ବାହାରେ କଡାକଡ଼ି ନିରାପତ୍ତା ବ୍ୟବସ୍ଥା।

ଏକାଦଶ ଲୋକସଭା ନିର୍ବାଚନ ପରେ ଦେଶର ଏକାଦଶ ପ୍ରଧାନମନ୍ତ୍ରୀ ରୂପେ ଅଟଳଜୀଙ୍କ ଶପଥ ଗ୍ରହଣ ବାସ୍ତବିକ୍ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା ଥିଲା।

ଶପଥ ପତ୍ର ପାଠ କରାଇବା ଲାଗି ମହାମହିମ ରାଷ୍ଟ୍ରପତି ଯଥା ସମୟର ପହଞ୍ଚିଗଲେ। ପୂର୍ବରୁ ପ୍ରଧାନମନ୍ତ୍ରୀ ଅଟଳଜୀ ଓ ଅନ୍ୟାନ୍ୟ ନବନିଯୁକ୍ତ ମନ୍ତ୍ରୀମାନଙ୍କ ସହ ଉପରାଷ୍ଟ୍ରପତି ଶ୍ରୀ କେ.ଆର.ନାରାୟଣନ, ପୂର୍ବତନ ପ୍ରଧାନମନ୍ତ୍ରୀ ପି.ଭି.ନରସିଂହ ରାଓ,

ରାଜମାତା ବିଜୟାରାଜେ ସିନ୍ଧିଆ, ଭାଜପା ଅଧକ୍ଷ ଏଲ.କେ.ଆଡଭାନୀ, ଅଟଳଜୀଙ୍କ ବଡ଼ଭାଇ ପଣ୍ଡିତ ଅବଧବିହାରୀ ତଥା ଅନ୍ୟାନ୍ୟ ଗଣ୍ୟମାନ୍ୟ ରାଜନେତା ଓ ବିଶିଷ୍ଟ ବ୍ୟକ୍ତିମାନେ ଉପସ୍ଥିତ ଥିଲେ । ଠିକ୍ ସମୟରେ ଆରମ୍ଭ ହେଲା ଶପଥ ଗ୍ରହଣ ପର୍ବ । ଅଟଳଜୀଙ୍କ ପରେ ପରେ ଅନ୍ୟ ଯେଉଁ ମନ୍ତ୍ରୀମାନେ ଶପଥ ନେଲେ, ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ସିକନ୍ଦର ବଖତ, ଡକ୍ଟର ମୁରଲୀ ମନୋହର ଯୋଶୀ, ଏସ୍.ଏସ୍. ବର୍ଣ୍ଣାଲା, ସୁରଜ ଭାନ, ଯଶୋବନ୍ତ ସିଂହ, ଜର୍ଜ ପର୍ଣ୍ଣାଣ୍ଡିଜ୍, ସରତାଜ ସିଂହ, ପ୍ରମୋଦ ମହାଜନ, ରାମଜେଠମଲାନି, ସୁଷମା ସ୍ୱରାଜ, କରିଆ ମୁଣ୍ଡା, ବି.ଧନଞ୍ଜୟ କୁମାର, ସୁରେଶ ପ୍ରଭାକର ପ୍ରଭୁ ପ୍ରମୁଖ । ଅଳ୍ପ ସମୟ ମଧ୍ୟରେ ହିଁ ଶପଥ ଗ୍ରହଣ ପର୍ବ ଶେଷ ହୋଇଗଲା । ତା' ପରେ କିଛି ସମୟ ପାଇଁ ଚାଲିଲା ପାରସ୍ପରିକ ବଧାଇ ଆଦାନ ପ୍ରଦାନ, ମିଳିତ ଫଟୋଗ୍ରାଫ୍ ଗ୍ରହଣ, ଚା' ପର୍ବ ଇତ୍ୟାଦି । ଶେଷରେ ବିଶେଷ ସୁରକ୍ଷା କର୍ମୀଙ୍କ ଗହଣରେ ଅଟଳଜୀ ଫେରିଲେ ନିଜର ବାସଭବନକୁ । ସେଠାରେ ଶ୍ରଦ୍ଧାଳୁ ଜନତାର ପ୍ରବଳ ଭିଡ଼ । ବହୁ ସମୟ ଧରି ଚାଲିଲା ଅଭିନନ୍ଦନ ପର୍ବ ।

**।। ପ୍ରଧାନମନ୍ତ୍ରୀ ଆସନରେ ।।**

ସେହି ଦିନ ଅପରାହ୍ନରେ ହିଁ ଅଟଳଜୀ ସାଉଥ ବ୍ଲକସ୍ଥିତ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ ଯାଇ ନିଜର ଆସନରେ ବସିଲେ । ଅଟଳଜୀ ହୁଏତ ଜାଣିଥିଲେ: ଲକ୍ଷ୍ୟ ଏବେ ବି ବହୁତ ଦୂରବର୍ତ୍ତୀ, ତଥାପି ଯିବାକୁ ପଡ଼ିବ । ଯାତ୍ରାପଥ କଣ୍ଟକାକୀର୍ଣ୍ଣ, ଆଗରେ ନାନା ବାଧା ବା ଅବରୋଧର ସଂକେତ । ତଥାପି ସାହସର ସହ ଆଗେଇଯିବାକୁ ପଡ଼ିବ । ତାହାହିଁ ତ ଜୀବନର ଧର୍ମ.... ଦିଗନ୍ତରେ ପରସ୍ତ ପରସ୍ତ କୁହୁଡ଼ିର ଭୟରେ ସୂର୍ଯ୍ୟ କ'ଣ ଉଦିତ ହୁଏ ନାହିଁ ? ଗ୍ରହଣର ଭୟରେ ଚନ୍ଦ୍ର କ'ଣ ଆକାଶରେ ଉଠେ ନାହିଁ ? ଅତଏବ ଚରୈବେତି..... ଚରୈବେତି ।

ହୁଏତ ଏଇ କଥାକୁ ମନରେ ରଖି ଅଟଳଜୀ ସେଦିନ କହିଥିଲେ: "କେହି କେବେ ଭାବିବା ଉଚିତ ନୁହେଁ ଯେ, ଆମେ ଲକ୍ଷ୍ୟସ୍ଥଳରେ ପହଞ୍ଚିଯାଇଛେଁ । ଆମର ପଥ ବହୁତ ଦୀର୍ଘ, ମାର୍ଗ ବି ବହୁତ କଠିନ । ହିନ୍ଦୁତ୍ୱବିରୋଧୀ ଶକ୍ତିମାନେ ଏବେ ଅଧିକ ତତ୍ପର ହୋଇ ଉଠିଲେଣି । ଜନାଦେଶକୁ ଭଣ୍ଡୁର କରି କ୍ଷମତା ଅଧିକାର କରିବା ପାଇଁ ସେମାନଙ୍କର ଷଡ଼ଯନ୍ତ୍ର ଏବେ ଆହୁରି ବ୍ୟାପକ, ଆହୁରି ତୀବ୍ର ହେବ । ସେ ଯାହା ହେଉ, ପରିଣାମ ପ୍ରତି ଦୃଷ୍ଟି ନ ଦେଇ, ସବୁ ପ୍ରକାର ପରିସ୍ଥିତିକୁ ସାମନା କରି ସଂଗ୍ରାମ ଚାଲୁ ରଖିବାକୁ ପଡ଼ିବ । ଆସନ୍ତା ୩୧ ତାରିଖର ଶକ୍ତି-ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବାରେ ଆମେ ଯଦି ସଫଳ ହୋଇ ପାରିବା, ତେବେ ତ ଜନାଦେଶ ଅନୁଯାୟୀ ଦେଶର ଶାସନ ଦାୟିତ୍ୱ ନିର୍ବାହ କରିବା; ନଚେତ ପରବର୍ତ୍ତୀ ନିର୍ବାଚନରେ ଦେଶବାସୀ ଷଡ଼ଯନ୍ତ୍ରକାରୀମାନଙ୍କୁ ସମୁଚିତ ଜବାବ ଦେଇ ଦ୍ୱିଗୁଣ ସଂଖ୍ୟାରେ ଭାଜପାକୁ ନିର୍ବାଚତ କରାଇବେ । ସୁତରାଂ ମାଭୈଃ ।"

ଅଟଳଜୀଙ୍କ ମନ୍ତ୍ରିମଣ୍ଡଳ ଶପଥ ଗ୍ରହଣ କରିବା ପରେ ପରେ ଦେଶ-ବିଦେଶର ବହୁ ନେତା, ବୁଦ୍ଧିଜୀବୀ ଓ ଗଣ୍ୟମାନ୍ୟ ବ୍ୟକ୍ତି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ ମଧ୍ୟ, ଦେଶର ଭାଜପାବିରୋଧୀ ଦଳଗୁଡ଼ିକର କେତେକ ନେତା ଖୋଲାଖୋଲି ଭାବରେ ଭାଜପାକୁ ଗାଳିଗୁଲଜ କରିବା ସଙ୍ଗେ ସଙ୍ଗେ ଶପଥ ଗ୍ରହଣ ଉତ୍ସବକୁ ମଧ୍ୟ ବର୍ଜନ କରିଥିଲେ ଏବଂ କେତେକ ନେତା, ରାଷ୍ଟ୍ରପତିଙ୍କ ଉଦ୍ଦେଶ୍ୟରେ (ସରକାର ଗଢ଼ିବା ପାଇଁ ଅଟଳଜୀଙ୍କୁ ନିମନ୍ତ୍ରଣ କରିଥିବା କାରଣରୁ) ମଧ୍ୟ ଅଭଦ୍ରୋଚିତ ବାକ୍ୟବାଣ ପ୍ରୟୋଗ କରିଥିଲେ । ସେ ଯାହା ହେଉ ରାଜଧାନୀ ଦିଲ୍ଲୀ ସହିତ ଲକ୍ଷ୍ନୌ, ଗ୍ୱାଲିୟର ପ୍ରଭୃତି ସ୍ଥାନରେ ତାଙ୍କ ପାଇଁ ଅଭିନନ୍ଦନ ସମାରୋହର ଆୟୋଜନ କରଯାଇଥିଲା ଏବଂ ବହୁ ପତ୍ର-ପତ୍ରିକାରେ ମଧ୍ୟ ତାଙ୍କୁ ସ୍ୱାଗତ - ଅଭିନନ୍ଦନ ଜଣାଇ ଅଗ୍ରଲେଖ ଓ ବିଶେଷ ନିବନ୍ଧମାନ ପ୍ରକାଶ କରାଯାଇଥିଲା ।

**ଦ୍ୱାଦଶ ଲୋକସଭା ନିର୍ବାଚନର ପଳଶ୍ରୁତି**

୧୯୯୬ ର ଏକାଦଶ ଲୋକସଭା ନିର୍ବାଚନ ପରେ ପରେ ଗଠିତ ପ୍ରଥମ ବାଜପେୟୀ ସରକାର ଆବଶ୍ୟକୀୟ ସଂଖ୍ୟାଗରିଷ୍ଠତା ଅଭାବରୁ ମାତ୍ର ୧୨ ଦିନ ପରେ ଇସ୍ତଫା ଦେବାରୁ କଂଗ୍ରେସର ସମର୍ଥନ କ୍ରମେ ମିଳିତ ସାମ୍ମୁଖ୍ୟ ପକ୍ଷରୁ ପ୍ରଥମେ ଶ୍ରୀ ଏଚ୍.ଡ଼ି. ଦେବଗୌଡ଼ାଙ୍କ ପ୍ରଧାନମନ୍ତ୍ରିତ୍ୱରେ ଏକ ମିଳିତ ସରକାର ଗଢ଼ାଯାଇଥିଲା । କିନ୍ତୁ କଂଗ୍ରେସର ସମର୍ଥନ ପ୍ରତ୍ୟାହାର କାରଣରୁ ଅଳ୍ପକାଳ ମଧ୍ୟରେ ହିଁ ତାର ପତନ ଘଟିଥିଲା ଏବଂ ତାପରେ ପୁଣି ସେହି କଂଗ୍ରେସ ଦଳର ସମର୍ଥନ କ୍ରମେ ଶ୍ରୀ ଇନ୍ଦ୍ରକୁମାର ଗୁଜୁରାଲଙ୍କ ପ୍ରଧାନମନ୍ତ୍ରିତ୍ୱରେ ମିଳିତ ସାମ୍ମୁଖ୍ୟର ଆଉ ଏକ ସରକାର ଗଢ଼ାଯାଇଥିଲା । ପୁଣି ଅନୁରୂପ ଭାବରେ କଂଗ୍ରେସର ସମର୍ଥନ ପ୍ରତ୍ୟାହାର ଯୋଗୁ ତାର ମଧ୍ୟ ପତନ ଘଟିଥିଲା । ଏହାପରେ କଂଗ୍ରେସ ପକ୍ଷରୁ ଏକ ସରକାର ଗଠନ ପାଇଁ ଉଦ୍ୟମ କରାଗଲେ ମଧ୍ୟ ତାହା ସଫଳ ହୋଇ ନ ପାରିବାରୁ ଲୋକସଭା ନିମନ୍ତେ ଏକ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ କରାଯିବା ବ୍ୟତୀତ ଅନ୍ୟ ପନ୍ଥା ରହିଲା ନାହିଁ । ଶେଷରେ ୧୯୯୮ ଫେବୃଆରୀ- ମାର୍ଚ୍ଚ ମାସରେ ଦ୍ୱାଦଶ ଲୋକସଭା ନିର୍ବାଚନ କରାଯିବା ପାଇଁ ନିଷ୍ପତ୍ତି ଘୋଷଣା କରାଗଲା ।

ଏହି ନିର୍ବାଚନରେ ଭାରତୀୟ ଜନତା ପାର୍ଟି ଅଟଳଜୀଙ୍କୁ ପ୍ରଧାନମନ୍ତ୍ରିତ୍ୱ ପ୍ରାର୍ଥୀ ରୂପେ ପ୍ରକଳ୍ପିତ କରିବା ସଙ୍ଗେ ସଙ୍ଗେ କେତେକ ରାଜ୍ୟରେ ଶିବସେନା, ଅକାଳୀ ଦଳ, ସମତା ପାର୍ଟି, ହରିଆନା ବିକାଶ ପାର୍ଟି ପ୍ରଭୃତି ନିଜର ପୂର୍ବ ସହଯୋଗୀ ଦଳଗୁଡ଼ିକ ସମେତ ଆନ୍ନା ଡ଼ି.ଏମ୍.କେ, ଜନଶକ୍ତି, ତୃଣମୂଳ କଂଗ୍ରେସ ଓ ବିଜୁ ଜନତା ଦଳ ପ୍ରଭୃତି ଅନ୍ୟ କେତେକ ରାଜ୍ୟସ୍ତରୀୟ ଦଳ ସହିତ ପ୍ରାକ୍ ନିର୍ବାଚନ ବୁଝାମଣା ଓ ଆସନ ବଣ୍ଟନ ରାଜିନାମା କରି ନିର୍ବାଚନ ଲଢ଼ିଥିଲା । ଏଥିରେ ବିଜେପି କେବଳ ମହାରାଷ୍ଟ୍ର, ହରିଆନା ଓ ହିମାଚଳ ପ୍ରଦେଶ ପ୍ରଭୃତି କେତେକ ରାଜ୍ୟ ବ୍ୟତୀତ ଦେଶର ଅନ୍ୟାନ୍ୟ ଅଞ୍ଚଳରେ

ଆଶାଜନକ ସଫଳତା ଲାଭ କରି ପୂର୍ବାପେକ୍ଷା ଅଧିକ ଶକ୍ତି ସହ ପୁଣି ଥରେ ଲୋକସଭାର ଏକକ ବୃହତ୍ତମ ଦଳ (ମୋଟ ସଦସ୍ୟ ସଂଖ୍ୟା ୧୮୦) ରୂପେ ନିର୍ବାଚିତ ହେଲା । ଏ ଦଳ ଗୃହରେ ନିରଙ୍କୁଶ ସଂଖ୍ୟାଗରିଷ୍ଠତା ହାସଲ କରି ପାରି ନଥିଲେ ମଧ୍ୟ, ବିଜେପି ତଥା ତାର ମିତ୍ର ଦଳଗୁଡ଼ିକ ସପକ୍ଷରେ ତଥା ଅଟଳଜୀଙ୍କ ପ୍ରଧାନମନ୍ତ୍ରିତ୍ୱ ସପକ୍ଷରେ ହିଁ ସ୍ପଷ୍ଟ ଜନାଦେଶ ମିଳିଥିଲା । ତା ସତ୍ତ୍ୱେ ଏହି ଜନାଦେଶକୁ ଭଣ୍ଡୁର କରି ବିଜେପିକୁ ସରକାର ଗଢ଼ାଇ ନ ଦେବା ଉଦ୍ଦେଶ୍ୟରେ ମିଳିତ ସାମ୍ମୁଖ୍ୟର କେତେକ ନେତାଙ୍କ ପକ୍ଷରୁ ପ୍ରାଣମୂର୍ଚ୍ଛା ଉଦ୍ୟମ କରାଯାଇଥିଲେ ମଧ୍ୟ ତାହା ସଫଳ ହୋଇ ପାରି ନଥିଲା । କଂଗ୍ରେସ ଦଳର ନେତାମାନେ ସାମ୍ମୁଖ୍ୟ ଓ କମ୍ୟୁନିଷ୍ଟ ନେତାମାନଙ୍କ ଷଡ଼ଯନ୍ତ୍ରର ଜାଲରେ ପଡ଼ିବାକୁ ଭୟ କରିବା କାରଣରୁ ହିଁ ସେମାନଙ୍କର ସେ ଉଦ୍ୟମ ବ୍ୟର୍ଥ ହୋଇଗଲା । ଶେଷରେ ରାଷ୍ଟ୍ରପତି ଶ୍ରୀଯୁକ୍ତ କେ.ଆର.ନାରାୟଣନ୍ ଭାଜପା ସଂସଦୀୟ ଦଳର ନେତା ଶ୍ରୀଯୁକ୍ତ ବାଜପେୟୀଙ୍କୁ ଦେଶର ନୂତନ ସରକାର ଗଢ଼ିବାକୁ ନିମନ୍ତ୍ରଣ ଦେଲେ ।

**।। ଅଟଳଜୀଙ୍କ ଦ୍ୱିତୀୟ ମନ୍ତ୍ରିମଣ୍ଡଳ ।।**

ସବୁ ଷଡ଼ଯନ୍ତ୍ର, ଆଶଙ୍କା, ଦ୍ୱନ୍ଦ୍ୱ ଓ ଅନିଶ୍ଚିତତାର ଅବସାନ ଘଟାଇ ୧୯୯୮ ମାର୍ଚ୍ଚ ମାସ ୧୯ ତାରିଖ ଗୁରୁବାର ଦିନ ଅଟଳଜୀ ଦ୍ୱିତୀୟ ଥର ପାଇଁ ଦେଶର ଚତୁର୍ଦ୍ଦଶ ପ୍ରଧାନମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । ତାଙ୍କ ସହିତ ଅନ୍ୟ ଯେଉଁ କେନ୍ଦ୍ର ମନ୍ତ୍ରୀମାନେ ଶପଥ ନେଲେ, ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ଲାଲକୃଷ୍ଣ ଆଡ଼ଭାନୀ, ଡ଼ଃ ମୁରଲୀ ମନୋହର ଯୋଶୀ, ମଦନଲାଲ ଖୁରାନା, ସିକନ୍ଦର ବଖତ, ଯଶୋବନ୍ତ ସିହ୍ନା, ସୁଷମା ସ୍ୱରାଜ, ଜର୍ଜ ଫର୍ଣ୍ଣାଣ୍ଡିଜ୍, ନୀତିଶ କୁମାର, ରାମକୃଷ୍ଣ ହେଗଡ଼େ, ସୁରଜିତ ସିଂହ ବର୍ଣ୍ଣାଲା, ରାମ ଜେଠ ମଲାନୀ, ପି.ଆର. କୁମାର ମଙ୍ଗଲମ୍, ନବୀନ ପଟ୍ଟନାୟକ, ରାମ ନାୟକ, ଡ଼ଃ ଦେବେନ୍ଦ୍ର ପ୍ରଧାନ, ଦିଲ୍ଲୀପ ରାୟ ପ୍ରମୁଖ ।

ରାଷ୍ଟ୍ରପତିଙ୍କ ନିର୍ଦ୍ଦେଶକ୍ରମେ ଅଟଳଜୀ ସେହି ମାସ ୨୬ ତାରିଖରେ ଆହୂତ ଲୋକସଭାର ଏକ ସ୍ୱତନ୍ତ୍ର ଅଧିବେଶନରେ ତାଙ୍କ ମନ୍ତ୍ରିମଣ୍ଡଳ ସପକ୍ଷରେ ଏକ ଆସ୍ଥା ପ୍ରସ୍ତାବ ଆଗତ କରିଥିଲେ ଏବଂ ମାର୍ଚ୍ଚ ୨୮ ତାରିଖ ଦିନ ଏହା ବେଶ୍ ସୁରୁଖୁରୁରେ ସଦନ ଦ୍ୱାରା ବହୁମତରେ ଅନୁମୋଦିତ ହେଲା । ପୂର୍ବରୁ ମିଳିତ ସାମ୍ମୁଖ୍ୟର ଅଂଶୀଦାର ଥିବା ତେଲୁଗୁ ଦେଶମ୍ ପାର୍ଟି ଓ ନ୍ୟାସନାଲ୍ କନ୍‌ଫରେନ୍‌ସ ଏବଂ ଉତ୍ତର ପୂର୍ବାଞ୍ଚଳରୁ ନିର୍ବାଚିତ ସାଂସଦମାନେ ବାଜପେୟୀ ସରକାରଙ୍କ ପ୍ରତି ପରୋକ୍ଷ ସମର୍ଥନ ଦେବା ଫଳରେ ହିଁ ଏହା ସମ୍ଭବ ହୋଇ ପାରିଥିଲା । ତା ପୂର୍ବରୁ ଲୋକସଭାର ବାଚସ୍ପତି ନିର୍ବାଚନରେ ମଧ୍ୟ ସରକାରୀ ପକ୍ଷର ପ୍ରଥମ ବିଜୟ ସଂଘଟିତ ହୋଇଥିଲା, ଯେଉଁଥିରେ ଟି.ଡ଼ି.ପି. ସାଂସଦ ଶ୍ରୀ ବାଲଯୋଗୀ ଦ୍ୱାଦଶ ଲୋକସଭାର ବାଚସ୍ପତି ରୂପେ ବହୁମତରେ ନିର୍ବାଚିତ ହୋଇଥିଲେ ।

॥ ଉପସଂହାର ॥

ଭାରତୀୟ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମ୍ବତ୍ସର (ଅର୍ଦ୍ଧଶତ ବର୍ଷ ପୂର୍ତ୍ତି) ଏବେ ପାଳନ କରାଯାଉଥିବା ଅବସରରେ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀଙ୍କ ପ୍ରଧାନମନ୍ତ୍ରିତ୍ୱରେ ଗଠିତ ସାଂପ୍ରତିକ ମିଳିତ ସରକାରର ଦାୟିତ୍ୱ ଗ୍ରହଣ ନାନା ଦୃଷ୍ଟିରୁ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏକ ଐତିହାସିକ ଘଟଣା ରୂପେ ଚିହ୍ନିତ ହୋଇ ରହିବ। ଦେଶର ରାଜନୀତିକ ତଥା ପ୍ରଶାସନିକ ବ୍ୟବସ୍ଥାର ବହୁବାଂଛିତ ପୁନର୍ବିନ୍ୟାସ ପାଇଁ ଏହି ସରକାର ଏକ ଭିତ୍ତି ଭୂମି ପ୍ରସ୍ତୁତ କରି ପାରିବ ବୋଲି ସୂକ୍ଷ୍ମଦର୍ଶୀ ରାଜନୀତିକ ପର୍ଯ୍ୟବେକ୍ଷକ ଏବଂ ଶୁଭେଚ୍ଛା -ସଂପନ୍ନ ବୁଦ୍ଧିଜୀବୀ ମହଲରେ ଗଭୀର ଆଶା ଓ ବିଶ୍ୱାସ ପୋଷଣ କରାଯାଉଛି। ମିଳିତ ସରକାର ପକ୍ଷରୁ ଘୋଷିତ ହୋଇଥିବା ଜାତୀୟ କାର୍ଯ୍ୟ-ସୂଚୀରୁ ଏବଂ ପରବର୍ତ୍ତୀ ବିଭିନ୍ନ ଘଟଣାରୁ ତାର ସଂକେତ ମିଳୁଛି। ବିଶେଷ କରି ୧୯୯୮ ମଇ ୧୧ ଓ ୧୩ ତାରିଖରେ ରାଜସ୍ଥାନର ପୋଖରାନ୍‌ରେ ଯେଉଁ ପାଞ୍ଚଟି ଗୁରୁତ୍ୱପୂର୍ଣ୍ଣ ପରମାଣୁବୋମାର ବିସ୍ଫୋରଣ ସଂଘଟିତ ହୋଇଛି, ତାହାର ପ୍ରଭାବ କେବଳ ଏସିଆ ମହାଦେଶରେ ନୁହେଁ, ସମଗ୍ର ପୃଥିବୀରେ ଯେ ଅତ୍ୟନ୍ତ ସୁଦୂରପ୍ରସାରୀ ହେବ ଏଥିରେ ସନ୍ଦେହ ନାହିଁ। ଏହି ପରୀକ୍ଷା ପରେ ପରେ ଭାରତପ୍ରତି ଈର୍ଷ୍ୟା-ପ୍ରଣୋଦିତ ଆମେରିକା, ଚୀନ୍ ପ୍ରଭୃତି କେତେକ ରାଷ୍ଟ୍ର ପକ୍ଷରୁ ଭାରତ ବିରୁଦ୍ଧରେ ନାନା ଅର୍ଥନୈତିକ କଟକଣା ଜାରି କରିବା ସହ ନାନା ପ୍ରକାର ବିଷୋଦ୍‌ଗାର କରାଯାଉଥିଲେ ମଧ ଭବିଷ୍ୟତରେ ସେସବୁର ଯେ କୌଣସି ମୂଲ୍ୟ ବା ପ୍ରଭାବ ରହିବ ନାହିଁ, ଏହା ମଧ ନିଃସନ୍ଦେହ। ଆମ ଦେଶର କଥାକଥିତ ଧର୍ମନିରପେକ୍ଷତାବାଦୀ ରାଜନୀତିକ ଦଳ ଓ ନେତାମାନେ ସେ ନେଇ ବିଜେପି ସରକାର ବିରୁଦ୍ଧରେ ଏକଜୁଟ୍ ହୋଇ ବ୍ୟାପକ ପ୍ରଚାର ଅଭିଯାନ ଚଳାଇଛନ୍ତି ଏବଂ ଏ ସରକାରର ପତନ ଘଟାଇବାକୁ ମଧ ଜୋର୍‌ସୋର୍‌ରେ ଉଦ୍ୟମ ଚଳାଇଛନ୍ତି। ସେ ଦୃଷ୍ଟିରୁ ଏ ସରକାରର ସ୍ଥାୟିତ୍ୱ ଘେନି ବିଭିନ୍ନ ମହଲରେ ସଂଶୟ ସୃଷ୍ଟି ହୋଇଥିଲେ ମଧ, ସବୁ ସଂଶୟ ଓ ଆଶଙ୍କାର କଳା ମେଘକୁ ଅତିକ୍ରମ କରି ଆକାଶ ବକ୍ଷରେ ଯେ ସମୁଜ୍ଜ୍ୱଳ ସୂର୍ଯ୍ୟଶିଖାର ପ୍ରକାଶ ମଧ ସମ୍ଭବ ହୋଇପାରେ— ଏହି ବହୁପୋଷିତ ଆଶା ଓ ବିଶ୍ୱାସକୁ କଦାପି ଅବାସ୍ତବ ବୋଲି ମନେ କରାଯାଇ ନପାରେ। ଯଦି ବା ଶେଷକୁ ବାଜପେୟୀ- ସରକାରଙ୍କୁ ଇସ୍ତଫା ଦେବାକୁ ପଡ଼େ, ତେବେ ବର୍ତ୍ତମାନ ଅନ୍ୟ କୌଣସି ବିକଳ୍ପ ସରକାର ଗଠିତ ହେବାର ସମ୍ଭାବନା ନାହିଁ। ବରଂ ପୁଣି ନିର୍ବାଚନ ହୋଇପାରେ। ସେ କ୍ଷେତ୍ରରେ ବିଜେପିର ଶକ୍ତିବୃଦ୍ଧି ହେବାର ସମ୍ଭାବନା ଅଧିକ ବୋଲି ମନେକରାଯାଉଛି।

ଅତଏବ : ଅୟମାରମ୍ଭ ଶୁଭାୟ ଭବତୁ।

॥ ବନ୍ଦେ ମାତରମ୍ ॥